# ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ ସଂସ୍କୃତି



ସଂକଳକ : ଡ଼ଃ ବ୍ରଜମୋହନ ମହାନ୍ତି

# ଜଗନ୍ନାଥ ଦାସ
# ଓ
# ଓଡ଼ିଆ ଭାଗବତ ସଂସ୍କୃତି

( ପଞ୍ଚଶତ ବର୍ଷ ଜୟନ୍ତୀ ଅବସରରେ ପ୍ରକାଶିତ )

ସଂକଳିକ :
ଡ଼ଃ ବ୍ରଜମୋହନ ମହାନ୍ତି

ପ୍ରାପ୍ତିସ୍ଥାନ :
ଓଡ଼ିଶା ବୁକ୍ ଷ୍ଟୋର୍

# ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ ସଂସ୍କୃତି

ସଂକଳକ :

**ଡଃ ବ୍ରଜମୋହନ ମହାନ୍ତି**

ସହଯୋଗୀ :

ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି   ଶ୍ରୀ ପରମେଶ୍ୱର ତ୍ରିପାଠୀ
ଶ୍ରୀ ଅର୍ଜୁନ ଦାଶ   ଶ୍ରୀ ପ୍ରସନ୍ନକୁମାର ଦାଣ୍ଡି
ଶ୍ରୀ ସୁବ୍ରତ ମହାନ୍ତି

ପ୍ରକାଶକାଳ :
୧୦-୧୧-୯୦   ପ୍ରଥମାଷ୍ଟମୀ

ପ୍ରକାଶକ :
ବିଜୟ ଶଙ୍କର ପାତ୍ର
**ବିଶ୍ୱ ବୁକ୍ସ**
ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଚ୍ଛଦ ଶିଳ୍ପୀ :
**ଶ୍ରୀ ଅସିତ୍ ମୁଖାର୍ଜୀ**

ମୁଦ୍ରଣ
**ରେଖା ପ୍ରେସ**
ବାଙ୍କି ସାହି, କଟକ-୭୫୩୦୦୯

ମୂଲ୍ୟ : ଟ ୩୫-୦୦

ଶୋଭନ : ଟ ୪୦-୦୦

**JAGANNATHA DAS O' ORIYA BHAGABAT SANSKRUTI**

Compiled by
**Dr. Brajamohan Mohanty**

Published by
Sri Bijayasankar Patra
**BISWA BOOKS**
Binodbehari, Cuttack-753002

First Edition 1990

Printed at
**REKHA PRESS**
Cuttack-753009

Price : Rs. 40·00

# ଜଗନ୍ନାଥ ଓ ଭାଗବତ ସଂସ୍କୃତି

ପଞ୍ଚଦଶ ଶତାବ୍ଦୀ ପୂର୍ବରୁ କେବଳ ଶତ୍ରୁ ଆକ୍ରମଣ, ତରବାରିର ଝନତ୍କାର, ରକ୍ତସ୍ରୋତ ଏବଂ ଅନ୍ୟର ସୀମା ଲଙ୍ଘନ କରି ଧନ-ଜୀବନ ଲୁଣ୍ଠନ କରାଯିବା ଯୋଗୁ ଓଡ଼ିଆ ଗଣଜୀବନରେ ବିପର୍ଯ୍ୟୟ ସୃଷ୍ଟି ହୋଇ ସମଗ୍ର ସାଂସ୍କୃତିକ ମାନଚିତ୍ର ବିକଳାଙ୍ଗ ରୂପ ଧାରଣ କରିଥିଲା ଓ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକେ କ୍ଷୁଦ୍ର କ୍ଷୁଦ୍ର ଦେଶୀୟ ରାଜ୍ୟରେ ବିଭକ୍ତ ହୋଇ ପରସ୍ପର ମଧ୍ୟରେ ସମରସଜ୍ଜା ତଥା ବହିରାଗତ ରାଜା-ମାନଙ୍କର ବର୍ବରୋଚିତ ଅତର୍କିତ ଆକ୍ରମଣ ଫଳରେ ଉତ୍କଳ ଖଣ୍ଡରେ ଏକ ଅଶାନ୍ତ ବାତାବରଣ ସୃଷ୍ଟି କରିଥିଲା । ଏହି ଦୂଷିତ ପରିବେଶ ମଧ୍ୟରେ ଓଡ଼ିଶାର ସଂସ୍କୃତି ଏକ ସ୍ୱତନ୍ତ୍ର ରୂପ ଗ୍ରହଣ କରିବା ଥିଲା କଷ୍ଟସାଧ୍ୟ । ଏପରି ଏକ ସାଂସ୍କୃତିକ ଦୁର୍ଦ୍ଦିନ ପରେ ଉତ୍କଳର ସିଂହାସନ ଆରୋହଣ କଲେ ରାଜା ପ୍ରତାପରୁଦ୍ର । ସେ ରାଜ୍ୟ ଜୟ ଏବଂ ଶତ୍ରୁ କ୍ଷୟ ପାଇଁ ଶକ୍ତିଶାଳୀ ଜମ୍ବା ବଳିଷ୍ଠ ସମ୍ରାଟ ନଥିଲେ ମଧ୍ୟ ଜଣେ ସାହିତ୍ୟ, ସଂସ୍କୃତି, କଳା ଓ ଆଧ୍ୟାତ୍ମ୍ୟ-ବାଦୀ, ବୈଷ୍ଣବଧର୍ମପ୍ରେମୀ ଶାନ୍ତିପ୍ରିୟ ରାଜା ଭାବରେ ଥିଲେ ସର୍ବବନ୍ଦିତ । "ଜୟ ଉତ୍କଳ ମାତାର ଜୟ—ଉତ୍କଳୀ ସେନାର ଜୟ" ପରିବର୍ତ୍ତେ ସେ କହିଲେ—"ହରେ କୃଷ୍ଣ ହରେ ରାମ । ନିତାଇଗୌର ରାଧେଶ୍ୟାମ ।" ଫଳରେ ହଜାର ହଜାର ପାଇକ ଓ ରାୟ ରାମାନନ୍ଦଙ୍କ ପରି କ୍ଷୁଦ୍ର କରଦ ରାଜ୍ୟର ପୁରୋଧାମାନେ ତରବାରୀକୁ ଠାକୁରଙ୍କ ଆସ୍ଥାନ ଉପରେ ପୂଜାପାଇଁ ସଜ୍ଜିତ ରଖି, କାନ୍ଧରେ ମୃଦଙ୍ଗ ପକାଇ ଏବଂ କରତାଳ ହାତରେ ଧରି ଜମ୍ବା ଉର୍ଦ୍ଧ୍ୱବାହୁ ହୋଇ ନୃତ୍ୟକଲେ ଅପୂର୍ବ ଭାବାବେଶରେ ନାମ ସଂକୀର୍ତ୍ତନ କରି କରି ।

ଏ ସମୟରେ ଗୋପାଳ ଖଣ୍ଡକଙ୍କ ପରି ସନ୍ଥ, ସାଧୁ ଓ ଧର୍ମ—ପରାୟଣ ବ୍ୟକ୍ତିମାନେ କହିଲେ—

କଳି ଯୁଗରେ ଗତି ଶୁଣ ନିୟମ ନାମ ସଂକୀର୍ତ୍ତନ ।
ସତ୍ୟ ସଙ୍ଗତ କ୍ଷମା ଶାନ୍ତି ଦୟା ନିଜନ ଯେ ବନ୍ଧୁତି ॥

ତେଣୁ ଆଉ ଯୁଦ୍ଧବିଗ୍ରହ କାମ୍ନା ରାଜ୍ୟ ଜୟ ପ୍ରତି ଆକର୍ଷଣ ରହିବ କାହାର ! ଏପରି ଏକ ସମୟରେ ହୃଦୟ ଜୟ ଓ ନୂତନ ସଂସ୍କୃତିର ବୀଜ ବପନ କରିବା ହେଲା ମୁଖ୍ୟ ଉଦ୍ଦେଶ୍ୟ । ଇତିହାସର ଏହି ବହି ଗତିରୁ ସ୍ପଷ୍ଟ ପ୍ରତୀୟମାନ ହେଲା ଯେ—ଏକ ନବଯୁଗ ନୂତନ ସନ୍ଦେଶ ନେଇ ଆଗତପ୍ରାୟ । ଏଥିପାଇଁ ପ୍ରତ୍ୟେକଙ୍କୁ କିଛି ତ୍ୟାଗ ସ୍ୱୀକାର କରିବାକୁ ହେବ ସତ କିନ୍ତୁ ନିଶ୍ଚୟ ଦିନେ ଧର୍ମ, ସାହିତ୍ୟ, ତ୍ୟାଗ ଓ ସଂସ୍କୃତିର ଜୟ ଜୟ କାରରେ ପ୍ରକମ୍ପିତ ହେବ ଧରଣୀ ।

ଇତିହାସର ଏପରି ଏକ ଆବେଗମୟ ଆହ୍ୱାନରେ ଭାରତର ବିଭିନ୍ନ ପ୍ରାନ୍ତରେ ମାତ୍ର ଅଳ୍ପ ବର୍ଷର ସମୟ ସୀମା ମଧ୍ୟରେ ଜନ୍ମ ହୋଇଥିଲେ ଅସଂଖ୍ୟ ମହାନ ସାରସ୍ୱତ ସାଧକ, ଧର୍ମପ୍ରଚାରକ, ସନ୍ଥ, ଭକ୍ତ ଓ ଆଚାର୍ଯ୍ୟବୃନ୍ଦ । ଏହି ଆଚାର୍ଯ୍ୟମାନଙ୍କ ମଧ୍ୟରେ କବୀର—(୧୪୩୦) ତୁକାରାମ, (୧୫୯୮), ତୁଳସୀ ଦାସ, (୧୫୩୨), ଗୁରୁନାନକ-(୧୪୬୯) ଶ୍ରୀଚୈତନ୍ୟ, (୧୪୮୬) ମୀରାବାଈ, (୧୪୩୬) ତୈଲଙ୍ଗ୍ୟ ସ୍ୱାମୀ, (୧୬୦୭) ଗୁରୁ ଗୋବିନ୍ଦ ସିଂ, (୧୪୬୦) ସୁରଦାସ, (୧୪୭୮) ଶଙ୍କରଦେବ, (୧୪୪୯) ଏବଂ ଓଡ଼ିଶାର ପଞ୍ଚସଖା ଯଥା—ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ, ଅନନ୍ତ, ଯଶୋବନ୍ତ ଇତ୍ୟାଦି ସ୍ମରଣୀୟ ।

ଓଡ଼ିଶାର ପଞ୍ଚସଖାଙ୍କ ମଧ୍ୟରେ ନବଯୁଗର ବାସ୍ତବ ବାର୍ତ୍ତାବହ ହେଲେ ଧାର୍ମିକପ୍ରବର ଯୋଗୀ ଜଗନ୍ନାଥ ଦାସ । ସେ ସଂସ୍କୃତ ଭାଗବତର ଅନୁବାଦ କରି ଓଡ଼ିଆ ଶ୍ରୀମଦ୍ଭାଗବତ ରଚନା କଲେ । ଏହି ଭାଗବତରେ ଏପରି ପାଣ୍ଡିତ୍ୟ, ସାହିତ୍ୟିକ ଶୈଳୀ, ପ୍ରଭାବଶାଳୀ ଉପଦେଶ ଓ ଚିତ୍ତାକର୍ଷକ ଛନ୍ଦ ବ୍ୟବହାର କଲେ—ଯାହା ପ୍ରତ୍ୟେକଙ୍କ ପ୍ରାଣରେ ଏକ ନୂତନ ଆଧ୍ୟାତ୍ମିକ ଚେତନା ସୃଷ୍ଟି କଲା । ଯେଉଁମାନେ ସଂସ୍କୃତ ଭାଗବତ ବୁଝି ପାରୁନଥିଲେ—ସେମାନେ ତାହା ବୁଝିଲେ ଏବଂ ଏକ ସାର୍ବଭୌମ

ଆବେଗ ଦ୍ୱାରା ଏ ଗ୍ରନ୍ଥ ଘରେ ଘରେ ଆଦୃତ ହୋଇ ଗୋଟିଏ ନୂତନ ସଂସ୍କୃତିର ଭିତ୍ତି ପ୍ରସ୍ତର ସ୍ଥାପନ କଲା । ଫଳତଃ ପ୍ରତ୍ୟେକ ଗ୍ରାମରେ ଗଢ଼ି ଉଠିଲା ଭାଗବତ ଟୁଙ୍ଗୀ । ଗ୍ରାମାଞ୍ଚଳରେ ନିତ୍ୟ ସନ୍ଧ୍ୟାରେ ଭାଗବତ ପଠିତ ହେଲା ଏବଂ ବ୍ୟାଖ୍ୟାକାରମାନେ ତାହା ବୁଝାଇବା ଦ୍ୱାରା ଲୋକଶିକ୍ଷା ସମ୍ଭବପର ହେଲା ଏବଂ ସମାଜ ଶୃଙ୍ଖଳିତ ହୋଇଗଲା । ବର୍ଷକୁ ଥରେ ପ୍ରତ୍ୟେକ ଗ୍ରାମରେ ଭାଗବତ ସପ୍ତାହ, ଭାଗବତ ପ୍ରବଚନର, ଆୟୋଜନ କରି ଗାଁର ସବୁଜାତିର ଲୋକେ ଏକାଠି ହୋଇ ଭନ୍ଦାଳ (ଏକତ୍ର ଭୋଜନ) କରିବା ଦ୍ୱାରା ଏବଂ ନୂତନ ଦର୍ଶନ ପ୍ରତି ଲୋକେ ଆକୃଷ୍ଟ ହେଲେ ଏବଂ ନୀତିବାଣୀ ପ୍ରଚାରିତ ହେବା ଦ୍ୱାରା - ପାପ, ଅନ୍ୟାୟ, ତଥା ପରକୁ ଦୁଃଖ ଦେବାକୁ ଲୋକେ ପସନ୍ଦ କଲେ ନାହିଁ । ଭାଗବତ କହିଲା—

'ସକଳ ଘଟେ ନାରାୟଣ, ଅନାଦି ପରମ କାରଣ ॥' ପଶୁପକ୍ଷୀ ଜୀବଜନ୍ତୁଙ୍କ ଦେହରେ ମଧ୍ୟ ପରମେଶ୍ୱର ବିରାଜିତ । ପ୍ରତ୍ୟେକ ପ୍ରାଣରେ ତ ଭଗବାନ, ଆଉ ଜାତିଭେଦ ରହିଲା କେଉଁଠି ? ପୁଣି ଭାଗବତ କହିଲା ଯେ—ବିପ୍ର ତଥା ଜ୍ଞାନୀ ଓ ବୟସ୍କମାନଙ୍କୁ ନିଜେ ଭଗବାନ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ନମସ୍କାର ଜଣାଇଥିଲେ ।

"ବିପ୍ରଙ୍କୁ ଦେଖି ରଘୁନାଥ । ଶିରେ ଲଗାଇଲେ ବେନି ହସ୍ତ ॥
ବିପ୍ରଙ୍କୁ ନମସ୍କାର କଲେ । ସୀତା ଲକ୍ଷ୍ମଣ ଭ୍ରାତା ଭୁଲେ ॥"

ତେଣୁ ଭଗବାନ ତାଙ୍କ ଆସନରୁ ଓହ୍ଲାଇ ଆସିଲେ ଜ୍ଞାନୀ ଓ ବୟସ୍କଙ୍କୁ ସମ୍ମାନ ଜଣାଇବା ପାଇଁ । ଭଗବାନ ଜ୍ଞାନୀ ଲୋକଙ୍କ ଠାରୁ ଦୂରେଇ ଉଚ୍ଚପାରିଲେ ନାହିଁ । ଭାଗବତ ପୁଣି କହିଲା—

"ସୁପଥ୍ୟ ଗ୍ରାସ ଯେ ନକରେ । ତାହାକୁ ବ୍ୟାଧି ପୀଡ଼ା କରେ ॥
ଏହି ନିୟମ ଯେ କରନ୍ତି । କର୍ମେ କଲ୍ୟାଣ ସେ ଲଭନ୍ତି ॥
ତପସ୍ୟା ଯମ ନିୟମରେ । ଶମ ଦମ ଶୌଚ ତ୍ୟାଗରେ ॥
ସତ୍ୟ ବ୍ରହ୍ମଚର୍ଯ୍ୟ ରକ୍ଷାରେ । ଜ୍ଞାନୀ ଚରିତ ନିରନ୍ତରେ ॥"

ତେଣୁ ଭାଗବତ ଲୋକ ଶିକ୍ଷା ଦେଲା ଯେ— ସୁପଥ୍ୟ ଭୋଜନ ନକଲେ, ନିୟମ ଅନୁସାରେ ଜୀବନ ନକାଟିଲେ, ଏପରିକି ଶୌଚ ଇତ୍ୟାଦି କର୍ମ ନିୟମ ଅନୁଯାୟୀ ନକଲେ, ମନୁଷ୍ୟ ଦୁଃଖ ଭୋଗ କରିବା ଅସମ୍ଭବ ନୁହେଁ ।

ଏହା ବ୍ୟତୀତ ପୁଣି ଭାଗବତ ଗ୍ରନ୍ଥ କହିଲା—ଲୋକ ପାପକର ଅନୁତାପ କଲେ ଓ ଯଜ୍ଞାଦ ଅନୁଷ୍ଠାନ କରି ଚରିତ୍ର ପରିବର୍ତ୍ତନ କଲେ ମୁକ୍ତିଲାଭ କରିପାରେ ।

"ମରଣ କାଳେ ଅଜାମିଳ । ପୁତ୍ର ନାରାୟଣ ଆଦ୍ୟମୂଳ ॥
ନାମକୁ ଆକୁଳେ ଉଚ୍ଚାରି । ଭବସାଗରୁ ହେଲା ପାରି ॥"

ତେଣୁ ଏତିକି କହୁଁ ବେଶ୍ ଅନୁମେୟ ଯେ—ଭାଗବତ ଓଡ଼ିଆ ସଂସ୍କୃତି ତଥା ଜନଜୀବନରେ ନବ ଜାଗରଣ ସୃଷ୍ଟି କରି ଏକ ନୂତନ ସମାଜର ପ୍ରତିଷ୍ଠା କରିବା ପାଇଁ ସମର୍ଥ ହୋଇଥିଲା ।

ସମସ୍ତ କ୍ରମେ ଶ୍ରୀ ଶ୍ରୀ ଜଗନ୍ନାଥ ଦାସଙ୍କ ଅନୁଦିତ ଶ୍ରୀମଦ୍ ଭାଗବତ ଏତେ ଲୋକପ୍ରିୟ ହୋଇ ଉଠିଲା ଯେ—ପଡ଼ୋଶୀ ଭାଷାର ଜ୍ଞାନୀ ଏବଂ ପଣ୍ଡିତମାନେ ଏହି ସଂସ୍କୃତ ଓଡ଼ିଆ ଅନୁବାଦକୁ ଶ୍ରେଷ୍ଠ ଅନୁବାଦ ହେଲା ଗ୍ରହଣ କରି ନିଜ ନିଜ ଭାଷାରେ ତାହାର ଅବିକଳ ଅନୁକରଣ କଲେ ଓ ସ୍ଥାନ ବିଶେଷରେ ସେହି ଓଡ଼ିଆ ଅନୁବାଦକୁ କେବଳ ନିଜ ଭାଷାର ଅକ୍ଷରରେ ଲିପି ଦେଲେ । ଏଠାରେ ବଙ୍ଗଳା ଭାଷାର ପ୍ରଥମ—ଭାଗବତ ଲେଖକ ବିପ୍ର ସନାତନ ବିଦ୍ୟାବାଗୀଶଙ୍କ ମନ୍ତବ୍ୟ ଉଦ୍ଧାର କରିଯାଇ ସେ ଉଲ୍ଲେଖ କରିଛନ୍ତି ।

"ଶୁନ ଶୁନ ଶ୍ରୋତାଗଣ କରି ନିବେଦନ
ପ୍ରଥମ ହଇତେ ଗ୍ରନ୍ଥ ଦେଖିଲୁ ଆପନ ॥

ଦଶମେର ଶେଷ ଖଣ୍ଡ ଭାଖା ନା ପାଇନ
ଅନେକତ ପାଣି ଗ୍ରାମେ ଗ୍ରାମେ ବେଡ଼ାଇନ ॥

ଏ ହେତୁ ଉତ୍କଳ ଭାଷା କରିଲ କୀର୍ତ୍ତନ
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ॥

ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହାଇୟା
ବଙ୍ଗଜ ଭାଷାୟ ଉତ୍କଳ ମିଶାଇୟା ॥

ଦଶମ ସ୍କନ୍ଧ ଭାଗବତ ସମ୍ପୂର୍ଣ୍ଣ ହଇତେ
ଷଡ଼ ଅଧା ଲେଖିଲାମ ଶ୍ରୀଗୁରୁ ଇଚ୍ଛାତେ ॥"

ଶ୍ରୀ ଜଗନ୍ନାଥ ଦାସଙ୍କ ଓଳସ୍ତ ଭାଗବତ ରଚନାରେ ଟ୍ରପ କେବଳ ବଙ୍ଗବାସୀ ପଣ୍ଡିତମାନେ ପ୍ରଭାବିତ ହୋଇଥିଲେ—ତାହା ନୁହେଁ, ଭାରତର ଅନ୍ୟାନ୍ୟ ଭାଷାର ସନ୍ଥମାନେ ମଧ୍ୟ ଏହି ଗ୍ରନ୍ଥ ଓ ଭଗବତ ଦର୍ଶନ ପ୍ରତି ଆକର୍ଷିତ ହୋଇଥିଲେ । ଉଦାହରଣ ସ୍ୱରୂପ ଆସାମର ପ୍ରାତଃସ୍ମରଣୀୟ ସନ୍ଥ ଶଙ୍କରଦେବଙ୍କ କଥା ଦେଖାଯାଉ । ସେ ପ୍ରଥମେ ଓଡ଼ିଆ ପଣ୍ଡିତ ଜଗଦୀଶ ମିଶ୍ରଙ୍କ ଠାରୁ ଭାଗବତ ତତ୍ତ୍ୱ ସମ୍ପର୍କରେ ଅବଗତ ହୋଇଥିଲେ । ଜଗଦୀଶ ମିଶ୍ର ଶ୍ରୀମନ୍ଦିରର ବଟମୂଳେ ବସି ଜଗନ୍ନାଥ ଦାସଙ୍କ ନିକଟରୁ ଭାଗବତ ତତ୍ତ୍ୱ ଶ୍ରବଣ କରିବା ପରେ ତୀର୍ଥ ପର୍ଯ୍ୟଟନରେ ଯାଇ ଭେଟିଥିଲେ ସନ୍ଥ ଶଙ୍କରଦେବଙ୍କୁ । କିନ୍ତୁ ଶଙ୍କରଦେବ କେବଳ ଜଗଦୀଶ ମିଶ୍ରଙ୍କ ଠାରୁ ଭାଗବତ ତତ୍ତ୍ୱ ଓ ଦର୍ଶନ ଶ୍ରବଣ କରି ସନ୍ତୁଷ୍ଟ ହେଲେ ନାହିଁ । ସେ ନିଜେ ଶ୍ରୀକ୍ଷେତ୍ରକୁ ଆଗମନ କରି ଜଗନ୍ନାଥଙ୍କ ନିକଟରୁ ଭାଗବତ ତତ୍ତ୍ୱ ଶ୍ରବଣ ପରେ ଆସାମକୁ ପ୍ରତ୍ୟାବର୍ତ୍ତନ କଲେ ଓ ସତ୍ର ବା ନାମ ଘର ପ୍ରତିଷ୍ଠା ପୂର୍ବକ ଭାଗବତ ଦର୍ଶନର ପ୍ରଚାର ଅଭିଯାନ ଆରମ୍ଭ କଲେ ।

ଜଗନ୍ନାଥ ଦାସ ନିଜ ଭାଗବତ ରଚନା ପାଇଁ ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ (ରେମୁଣା) ଶ୍ରୀମଦ୍‌ଭାଗବତ ଟୀକାକୁ ଗ୍ରହଣ କରିଥିଲେ ପ୍ରାମାଣିକ ଟିକା ଭାବେ । ଏହି ଟୀକା ଦ୍ୱାରା ପ୍ରଭାବିତ ହୋଇ ପ୍ରଭୁ ଶ୍ରୀ ଚୈତନ୍ୟ ଶ୍ରୀଧର ସ୍ୱାମୀଙ୍କୁ ମଧ୍ୟ ଗୁରୁ ରୂପେ ଗ୍ରହଣ କରିଥିବାର କେତେକ ଦୃଷ୍ଟାନ୍ତ ମିଳିଥାଏ । ଶ୍ରୀ ଚୈତନ୍ୟ ମହାପ୍ରଭୁ କହିଛନ୍ତି—

"ଜଗଦ୍‌ଗୁରୁ ଶ୍ରୀଧରକେ ଆମି ଗୁରୁ କରେମାନି
ତାହାର ପ୍ରସାଦେ ଶ୍ରୀ ଭାଗବତ ତତ୍ତ୍ୱ ଜାନି ।
ଶ୍ରୀଧର ଅନୁଗତ ହୟ କର ଭାଗବତ ଗାନ
ଦମ୍ଭ ଅଭିମାନ ତେଜି ଭଜ ଶ୍ରୀକୃଷ୍ଣ ଭଗବାନ ।"

ତେଣୁ କୁହାଯାଇପାରେ ଯେ—ରେମୁଣାର ଭାରତ ବିଖ୍ୟାତ ସୁପଣ୍ଡିତ ଓ ବ୍ୟାଖ୍ୟାକାର ଶ୍ରୀଧର ସ୍ୱାମୀ ଥିଲେ ଭାଗବତ ବ୍ୟାଖ୍ୟା ଓ ଦର୍ଶନରେ ଅଦ୍ୱିତୀୟ ପ୍ରତିଭାଶାଳୀ ବ୍ୟକ୍ତି । ତାଙ୍କ ଭାଗବତ ବ୍ୟାଖ୍ୟା ହିଁ ସେସମୟରେ ଲୋକପ୍ରିୟତା ଅର୍ଜନ କରିଥିଲା । ପଞ୍ଚଦଶ ଶତାବ୍ଦୀର ଆରମ୍ଭ ସମୟରୁ ବୈଷ୍ଣବଧର୍ମର ପ୍ରଚାର ଓ ପ୍ରସାର କ୍ଷେତ୍ରରେ ଏହି ବ୍ୟାଖ୍ୟା ଥିଲା ସହାୟକ ଗ୍ରନ୍ଥ ।

ଜଗନ୍ନାଥ ଦାସ ଏବଂ ପଞ୍ଚସଖା ଏହି ବୈଷ୍ଣବଧର୍ମକୁ ଆଧାର ରୂପେ ଗ୍ରହଣ କରି ନିଜର ଧର୍ମ ଏବଂ ସାରସ୍ୱତ ସାଧନା କରିଥିଲେ ।

ଏପରି ଏକ ଶୁଭ ମୁହୂର୍ତ୍ତରେ ଯୋଗୀ ଜଗନ୍ନାଥ ଦାସଙ୍କ ଜନ୍ମ ଓଡ଼ିଶାରେ ବୈଷ୍ଣବଧର୍ମ ଓ ଭାଗବତ ଶିକ୍ଷାକୁ କରିଥିଲା ଉଜ୍ଜୀବିତ । କେତେକ ସମାଲୋଚକଙ୍କ ମତରେ ଜଗନ୍ନାଥ ୧୪୯୦ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଅନ୍ୟ କେତେଜଣ ବରେଣ୍ୟ ସମାଲୋଚକ ଜଗନ୍ନାଥ ଚରିତାମୃତର ପଂକ୍ତି ଉଦ୍ଧାର କରି ୧୪୯୦ ମସିହାର ଗଣନାକୁ ଭ୍ରମାତ୍ମକ ବୋଲି ପ୍ରମାଣ କରନ୍ତି ।

| | | |
|---|---|---|
| "ଅଷ୍ଟାଦଶ ବରଷ ଠାରେ | । ଶ୍ରୀ ଚୈତନ୍ୟ ଭେଟ ହେଲେ | ॥ |
| ଷଡ଼ ବରଷ ନିରନ୍ତର | । ସେବିଲେ ଚୈତନ୍ୟ ପୟର | ॥ |
| ଏ ଅନ୍ତେ ଚବିଶ ବରଷ | । ପ୍ରେମ ସାଗରେ ଅହର୍ନିଶ | ॥ |
| ଷାଠିଏ ବର୍ଷ ସମୟରେ | । ପ୍ରେମ ସ୍ଥାପି ସ୍ଥାନେ ଗମିଲେ | ॥ |

ତେଣୁ କେତେକ ଆଲୋଚକଙ୍କ ମତରେ ୧୫୧୫ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ଶ୍ରୀ ଚୈତନ୍ୟଙ୍କୁ ଭେଟିଥିଲେ । ସେତେବେଳେ ତାଙ୍କ ବୟସ ମୋଟେ ୧୮ ବର୍ଷ ହୋଇଥିଲା । ତେଣୁ ତାଙ୍କର ଜନ୍ମ ୧୪୯୭-୯୮ ମସିହାରେ । ଏପରି ମନ୍ତବ୍ୟକୁ ସିଧାସଳଖ ମୋଟେ ଗ୍ରହଣ କରି ହୁଏନାହିଁ । କାରଣ ମତାନ୍ତରେ ୧୫୧୦ ମସିହାରେ ଶ୍ରୀଚୈତନ୍ୟ ଓଡ଼ିଶା ଆଗମନ କରିଥିଲେ । ସେତେବେଳକୁ ଜଗନ୍ନାଥ ଦାସ ଅନ୍ୟାନ୍ୟ ରଚନା ଶେଷ କରି ଭାଗବତ ଅନୁବାଦ ମଧ୍ୟ ଶେଷ କରିଥିଲେ । ଭାଗବତ ତାଙ୍କୁ ଯଥେଷ୍ଟ ଲୋକପ୍ରିୟତା ଆଣି ଦେଇଥିଲା ।

ବସ୍ତୁତଃ ପ୍ରଭୁ ଶ୍ରୀଚୈତନ୍ୟ ତାହା ଶ୍ରବଣ କଲେ ଓ ଜଗନ୍ନାଥ ଦାସଙ୍କୁ ସାକ୍ଷାତ କଲେ ଓ ତାଙ୍କ ଭାଗବତ ବ୍ୟାଖ୍ୟା ଏବଂ ଦାର୍ଶନିକ ତତ୍ତ୍ୱ ଶ୍ରବଣ କରି ତାଙ୍କୁ ଅତିବଡ଼ୀ ଉପାଧି ପ୍ରଦାନ କରିଥିଲେ । ଏଥିରୁ ମନେହୁଏ, ଶ୍ରୀମଦ୍‌ଭାଗବତ ଭଳି ଏକ ମହାନ ଦାର୍ଶନିକ ଗ୍ରନ୍ଥର ରଚନା ଏବଂ ସେଥିପାଇଁ ଉପାଧି ପ୍ରାପ୍ତି ଜଣେ ଅଷ୍ଟାଦଶ ବର୍ଷର ଯୁବକ ପକ୍ଷରେ କଦାପି ସମ୍ଭବପର ନୁହେଁ । ଏଣେ ଶ୍ରୀମଦ୍ ଭାଗବତ ଦ୍ୱାଦଶ ସ୍କନ୍ଧର ଲେଖକ ମହାଦେବ ଦାସଙ୍କ ମତରେ ଭାଗବତ ଜଗନ୍ନାଥ ଦାସଙ୍କ ଶେଷ ଏବଂ ଶ୍ରେଷ୍ଠ

ରଚନା । ସେ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ରଚନା କରି ଇହଲୀଳା ସାଙ୍ଗ କରିଥିଲେ । ତାଙ୍କ ଶେଷ ଆଶା ପୂରଣ ପାଇଁ ନଟେ ମହାଦେବ ଦାସ ରଚନା କଲେ ଦ୍ୱାଦଶ ସ୍କନ୍ଧ ।

"କୃଷ୍ଣ ସଙ୍ଗତେ ଜଗନ୍ନାଥ । ଚଳିଲେ ଗୋଲକ ସେ ପଥ ॥
ଜଗନ୍ନାଥ ଦାହିଁ ପ୍ରକାଶି । କରି ତ ଲେଉ ଅଛି ଆଶ ॥

ଅନ୍ୟକେତେକ ସମାଲୋଚକ ଉଦଧୃ କାହାଣୀକୁ ଆଧାର ରୂପେ ଗ୍ରହଣ କରି କହନ୍ତି—ଜଗନ୍ନାଥ ଦାସଙ୍କ ଜନ୍ମ ବର୍ଷ ହେଉଛି ୧୪୭୭ ହସିହା । ଏମାନଙ୍କ ମତରେ—

"ପଣ୍ଡୁରଙ୍କୁ ରାମ ନବମ ଅଙ୍କ,
ଅଡ ହିଁ ଗୃପତ ବଡ଼ ବିବେକ ।
ଡାହାଣ ଅଙ୍କକୁ ଗୁଣିବୁ ଯେବେ,
ବାମ ଅଙ୍କ ଗୋଟି ମିଶାଅ ତେବେ ।
ଏମନ୍ତ ସାଲ ହୋଇବ ନକର,
ଶୁଣ ରାମଚନ୍ଦ୍ର ଏଥି ଉତର ।
ଶତ ଭଜ କରି ମଣି ଉତ୍ତରେ,
ଭୁଗ୍ନ ଘନ ଯେନ୍ନ ଓଡ଼ ରାଷ୍ଟ୍ରରେ ।
ଏହି ଅଙ୍କେ ମୁହିଁ ଜନମ ହେଲି,
ଅଚ୍ୟୁତ ପାମର ନାମ ବହିଲି ।
ତିନି ସତର ପକ୍ଷ ପର ଯେବେ,
ଅନନ୍ତ ଶିଶୁ ଜନମିଛି ତେବେ ।
ତାର ସଙ୍ଗେ ଯେବେ ଭୂଜ ମିଳିଲା,
ଜଗନ୍ନାଥ ଦାସ ଉଦଧୃ ହେଲା ॥"

ଅତଏବ ୧୪୭୭କୁ ଜଗନ୍ନାଥଙ୍କ ଜନ୍ମ ବର୍ଷ ରୂପେ ଗ୍ରହଣ କରିବା ଅଧିକ ଯୁକ୍ତିସଙ୍ଗତ । ତାହେଲେ ଶ୍ରୀଚୈତନ୍ୟଙ୍କ ଆଗମନ ବେଳକୁ ଜଗନ୍ନାଥଙ୍କୁ ୩୪ ବର୍ଷ ହୋଇଥିଲେ ସେ ଶ୍ରୀମଦ୍‌ଭାଗବତର ଓଡ଼ିଆ ଅନୁବାଦ ଶେଷ କରିଥିବା ସମ୍ଭବପର ହୋଇପାରେ । ଏ ବିଷୟରେ ଅନୁସାରେ ଆମେ ୧୯୭୭ ମସିହାରୁ ଜଗନ୍ନାଥ ଦାସଙ୍କ ପଞ୍ଚଶତ ବର୍ଷ ଜନ୍ମ ଜୟନ୍ତୀ ପାଳନ କରିବା ଉଚିତ ଥିଲା । ତେଣୁ ପୂଜ୍ୟପୂଜାରେ ଆମର ବିଳମ୍ବ ଘଟିଛି ।

ତେବେ ସେ ସ୍ୱାହା ହେଉ—ବିଳମ୍ବ ହୋଇଥିଲେ ମଧ୍ୟ ଆମେ ଜୟନ୍ତୀ ପାଳନ କରୁଛୁ । ଜନ୍ମ ଜୟନ୍ତୀ ପାଳନ, ଗୋଟିଏ ଜାତିର ପୂଜ୍ୟ ପୂଜାର ପରିଚୟ ପ୍ରଦାନ କରେ । ସେ କେଉଁ ବର୍ଷ କେଉଁ ଦିନ କେଉଁ ସମୟରେ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ସେ ବିଷୟରେ ଆମେ ମୋଟେ ଚିନ୍ତିତ ନୋହୁଁ । ସେ ଯେ ମୋଟାମୋଟି ପାଞ୍ଚଶତ ବର୍ଷ ତଳେ ଉତ୍କଳ ଭୂମିରେ ଜନ୍ମ ଗ୍ରହଣ କରି ଏ ଜାତିର ସାଂସ୍କୃତିକ ଆକାଶରେ ଏକ ଉଜ୍ଜ୍ୱଳ ତାରକା ପରି ଶୋଭା ପ୍ରକାଶ କରିଥିଲେ—ସେତିକି ଆମର ଯଥେଷ୍ଟ । ସେଥିପାଇଁ ଆମେ ତାଙ୍କୁ ପୂଜା କରୁଛୁ ଏବଂ ଏହି ଅବସରରେ ସେହି ମହାନ ଧର୍ମ ସାଧକ, ଭକ୍ତ କବି, ଉତ୍କଳରେ ଆଧ୍ୟାତ୍ମ୍ୟ ନବଜାଗରଣର ଆନୟନ କର୍ତ୍ତା, ପୁରାଣ ଲେଖକ ପଞ୍ଚସଖାଙ୍କୁ ମଧ୍ୟ ସ୍ମରଣପୂର୍ବକ ତାଙ୍କ ଅନନ୍ୟ ପ୍ରତିଭାକୁ ନମସ୍କାର ଜଣାଇ—ଉତ୍କଳର ସାରସ୍ୱତ ଅଭିବୃଦ୍ଧି ପାଇଁ କୃତାଞ୍ଜଳି ପୁଟରେ ପ୍ରାର୍ଥନା କରୁଛୁ ଓ ଆଶୀର୍ବାଦ ଭିକ୍ଷା କରୁଛୁ ।

॥ ଇତି ॥

ବ୍ରଜମୋହନ ମହାନ୍ତି

# ସୂଚିପତ୍ର



## ପରିଶିଷ୍ଟ





# ପଞ୍ଚସଖା ଓ ଭକ୍ତକବି
# ଜଗନ୍ନାଥ ଦାସ

ଡଃ ହରିହର କାନୁନଗୋ

ଆଜକୁ ପ୍ରାୟ ପାଞ୍ଚ ଶହ ବର୍ଷପୂର୍ବେ ଉତ୍କଳ ଭୂମିରେ ଯେଉଁ ବିରାଟ ଧର୍ମ-ସମନ୍ୱୟ ଆନ୍ଦୋଳନର ଅଭ୍ୟୁଦୟ ହୋଇଥିଲା ତାହାର ପ୍ରଧାନ ସୂତ୍ରଧର ଥିଲେ ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତିମାର୍ଗର ଶ୍ରେଷ୍ଠ ସାଧକ ପାଞ୍ଚଜଣ ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ । ଏମାନେ ସମସ୍ତେ 'ଦାସ' ସଂଜ୍ଞାଧାରୀ। ଏଥିରୁ ଅନୁମିତ ହୁଏ ଯେ, ବୈଷ୍ଣବ ଧର୍ମୋଚିତ ବିନମ୍ରଭାବ ଯୋଗୁଁ ଏମାନେ ସମସ୍ତେ କୁଳୋଚିତ ସଂଜ୍ଞାମାନ ପରିତ୍ୟାଗ କରି 'ଦାସ' ସଂଜ୍ଞା ଧାରଣ କରିଥିଲେ ଏବଂ ଏମାନଙ୍କର ଆରାଧ୍ୟ ଦେବତା ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଦାସାନୁଦାସ ରୂପେ ନିଜକୁ ପରିଚିତ କରାଇଥିଲେ । ଏମାନେ ସମସ୍ତେ ସମସାମୟିକ ଥିଲେ । ଏମାନେ ସମସ୍ତେ ପୁଣି ଶ୍ରୀ ଚୈତନ୍ୟଙ୍କର ସଖା ଥିବାରୁ ପଞ୍ଚସଖା ଭାବରେ ନାମିତ ହୋଇଛନ୍ତି ।

ପୁନଶ୍ଚ ଏମାନେ ପଞ୍ଚସଖା ବା ପଞ୍ଚପ୍ରିୟ ବନ୍ଧୁ ଭାବରେ ମଧ୍ୟ ପଞ୍ଚସଖା ନାମରେ ଅଭିହିତ । ଏମାନଙ୍କର ସମସାମୟିକତା ଓ ସମକାଳୀନ ଆବିର୍ଭାବର ସପକ୍ଷ ଓ ବିପକ୍ଷରେ ନାନା ପ୍ରକାର ମତାମତ ମିଳୁଥିବାରୁ ଏହା ଏକ ବିବଦମାନ ବିଷୟ ହୋଇ ରହିଅଛି । ପୁଣି ଚୈତନ୍ୟଙ୍କ ସମ୍ପର୍କୀୟ ବଙ୍ଗୀୟ ରଚନାମାନଙ୍କରେ ପଞ୍ଚସଖାଙ୍କ ସମ୍ପର୍କରେ କୌଣସି ଆଭାସ ସୁଦ୍ଧା ମିଳୁ ନଥିଲେ ହେଁ, ପଞ୍ଚସଖା ସାହିତ୍ୟରେ ଏହାର

ଯଥେଷ୍ଟ ପ୍ରମାଣ ମିଳେ । ସେମାନେ ନିଜକୁ ଶ୍ରୀ ଚୈତନ୍ୟଙ୍କର ପଞ୍ଚସଖା ବୋଲି ମନେ କରୁଥିଲେ । ତଥାପି, ଏସବୁ ସତ୍ତ୍ୱେ ଷୋଡ଼ଶ ଶତାବ୍ଦୀର ଏହି ଉତ୍କଳୀୟ ପଞ୍ଚ ବୈଷ୍ଣବଙ୍କୁ 'ପଞ୍ଚସଖା' ଭାବେ ଓଡ଼ିଆ ସାହିତ୍ୟର ଐତିହାସିକଗଣ ନିର୍ବିବାଦରେ ଗ୍ରହଣ କରି ନେଇଛନ୍ତି । ଏ ଦେଶର ବଳିଷ୍ଠ ଧାର୍ମିକ ପରମ୍ପରା ଓ ଲୋକବିଶ୍ୱାସରେ ମଧ୍ୟ ଏହା ସ୍ୱୀକୃତି ଲାଭ କରିଅଛି ।

ଏ ପରିପ୍ରେକ୍ଷୀରେ ଅତି ସାବଧାନତା ସହିତ ପରୀକ୍ଷା ନ କରି ଏ ପ୍ରକାର ଏକ ସୁଦୃଢ଼ ପରମ୍ପରାକୁ ଅସ୍ୱୀକାର କରିବା ଏତେ ସହଜ ନୁହେଁ । ପଞ୍ଚସଖାଙ୍କର ବ୍ୟସ୍ତ ସାହିତ୍ୟ ସୃଷ୍ଟି ଓ ବ୍ୟସ୍ତ ଜୀବନ ଯାପନକୁ ଲକ୍ଷ୍ୟକରି ସେମାନେ ସମକାଳୀନ ନୁହନ୍ତି ବୋଲି ମତ ପ୍ରକାଶ କରିବା ସତ୍ୟଠାରୁ ଦୂରେଇ ଯିବା ବ୍ୟତୀତ ଆଉ କିଛି ନୁହେଁ । କାରଣ ସେମାନଙ୍କର ପାରିପାର୍ଶ୍ୱିକ ପରିସ୍ଥିତି ସେମାନଙ୍କୁ ଏପରି ହେବାକୁ ବାଧ୍ୟ କରିଥିଲା । ନିପୀଡ଼ନର ତଥା ପ୍ରେମଭକ୍ତିର ପ୍ରବଳ ସ୍ରୋତମୁଖରୁ ନିଜକୁ ରକ୍ଷା କରିବା ନିମନ୍ତେ ସେମାନେ ଆପ୍ରାଣ ଉଦ୍ୟମ କରିଥିଲେ । ଆତ୍ମରକ୍ଷା ଓ ସ୍ୱମତବାଦ ରକ୍ଷା ପାଇଁ ସେମାନେ କେତେବେଳେ ଶ୍ରୀ ଚୈତନ୍ୟଙ୍କର ସ୍ତାବକ ସାଜିଛନ୍ତି ତ କେତେବେଳେ ମହାପ୍ରଭୁ ଜଗନ୍ନାଥଙ୍କ ସେବାରେ ଆତ୍ମବିଭୋର ହୋଇ ପଡ଼ିଛନ୍ତି । ସବୁ ଦୃଷ୍ଟିରୁ ବିଚାର କରି କୁହାଯାଇପାରେ ଯେ, ପଞ୍ଚସଖାଙ୍କ ସମକାଳୀନତା ଏବଂ ଶ୍ରୀ ଚୈତନ୍ୟଙ୍କ ପଞ୍ଚସଖା ପ୍ରସଙ୍ଗ ଆଦୌ ଅଳୀକ ନୁହେଁ; ଏହା ପୂରାପୂରି ସତ୍ୟ ଓ ଅଭ୍ରାନ୍ତ । ଅନ୍ୟ ଭାଷାରେ କହିଲେ, ପଞ୍ଚସଖା-ପରିକଳ୍ପନା ଏକ ଭାବ ପ୍ରବଣତାଜନିତ କଳ୍ପନା ନୁହେଁ, ଏହା ଏକ ଐତିହାସିକ ସତ୍ୟ ।

ସର୍ବଦାସ ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତଙ୍କୁ ପଞ୍ଚସଖା ଭାବରେ ପରିକଳ୍ପିତ କରାଯାଇ ଥିଲେ ହେଁ, ସେମାନଙ୍କ ମନ୍ତ୍ର, ଜପ, ଧ୍ୟାନ, ସମାଧି, ବର୍ଣ୍ଣ ଶଚା ଇତ୍ୟାଦିରେ ପାର୍ଥକ୍ୟ ବା ବିଭେଦ ଦେଖିବାକୁ ମିଳେ । ବୃକ୍ଷର ଶାଖାଗୁଡ଼ିକ ପ୍ରତ୍ୟେକ ପ୍ରତ୍ୟେକଙ୍କଠାରୁ ଭିନ୍ନ ହେଲେ ମଧ୍ୟ ଗୋଟିଏ ଅଙ୍ଗହେତୁ ଏମାନେ ଏକ ଓ ଅଭିନ୍ନ । ସେହିପରି, ଏହି ପଞ୍ଚମହାତ୍ମା ପୂର୍ବୋକ୍ତ ଦୃଷ୍ଟିରୁ ପୃଥକ ହେଲେ ହେଁ ଶ୍ରୀ ଚୈତନ୍ୟଙ୍କ କଳ୍ପବୃକ୍ଷର ପଞ୍ଚସଖା ରୂପେ ଏକ ଅଭିନ୍ନ ଭାବରେ ପରିକଳ୍ପିତ ।

ପୂର୍ବୋକ୍ତ ଭିନ୍ନତା ସତ୍ତ୍ୱେ ସେମାନଙ୍କ ମଧ୍ୟରେ କେତେକ ସାମଞ୍ଜସ୍ୟ ମଧ୍ୟ ଲକ୍ଷ୍ୟ କରାଯାଏ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ମନ୍ତ୍ର ଯଥାକ୍ରମେ କୃଷ୍ଣମନ୍ତ୍ର, ରାଧାମନ୍ତ୍ର, ରାଜମନ୍ତ୍ର, ଶ୍ୟାମମନ୍ତ୍ର ଓ ଗୋପାଳ ମନ୍ତ୍ର, ସ୍ୱତନ୍ତ୍ର ହେଲେ ହେଁ ଏମାନେ ଯେଉଁ ମନ୍ତ୍ରରେ ଜପକରୁଥିଲେ, ସେ ଗୁଡ଼ିକ ହେଉଛି ସମାନ ଅର୍ଥଦ୍ୟୋତକ । ଏମାନଙ୍କ ଜପିତ ମନ୍ତ୍ର ଯଥାକ୍ରମେ ଅଜପା, ଅଣାକାର, ଶୂନ୍ୟ ଅବନା ଓ ଏକାକ୍ଷର । ଏ ସମସ୍ତ ଶୂନ୍ୟବ୍ୟଞ୍ଜନ ଓ ଶୂନ୍ୟର 'ବିଭିନ୍ନ ପରିଭାଷା' ମାତ୍ର । ପୁନଶ୍ଚ ସେମାନଙ୍କ ଇଷ୍ଟ ଦେବତା, ଦୀକ୍ଷା ଆଦି ଉପାସନା ପ୍ରଣାଳୀର କେତେକ ବଶିଷ୍ଟ ସ୍ୱଭାବରେ ଐକ୍ୟ ପରିଲକ୍ଷିତ ହୁଏ । ଏଣୁ ଏହି ପଞ୍ଚସାଧକ ବାହ୍ୟ ଦୃଷ୍ଟିରେ ପଞ୍ଚଶାଖା ହେଲେ ହେଁ, ମର୍ମରେ ଅଭିନ୍ନ ପଞ୍ଚସଖା ।

ପଞ୍ଚସଖା ବିଭିନ୍ନ କୁଳରେ ଜାତ ହୋଇଥିଲେ ହେଁ ସେମାନେ ଇଷ୍ଟଦେବତା ଭାବେ ଶ୍ରୀ ଜଗନ୍ନାଥ ବିଷ୍ଣୁଙ୍କୁ ହିଁ ବାଛି ନେଇଛନ୍ତି । ଏହି ପଞ୍ଚସଖା ସାହିତ୍ୟରେ ଶ୍ରୀ ଜଗନ୍ନାଥଙ୍କ ନାମ ଧାମ, ମନ୍ତ୍ର ଇତ୍ୟାଦିରେ ପ୍ରତିଧ୍ୱନି ଶୁଣାଯାଏ । ଏମାନେ ସମସ୍ତେ ବୈଷ୍ଣବ ଭାବରେ ପରିଚିତ ଥିଲେ । ବର୍ଣ୍ଣ, ଗୁରୁ ସମ୍ପ୍ରଦାୟ, ମନ୍ତ୍ର ସମାଧି ପ୍ରଭୃତି ଦୃଷ୍ଟିରୁ ଏମାନଙ୍କ ମଧ୍ୟରେ ଭିନ୍ନତା ପରିଲକ୍ଷିତ ହେଲେ ବି ଏମାନେ ସମସ୍ତେ 'ଦାସ' ସଂଜ୍ଞାଧାରୀ ପରମ ବୈଷ୍ଣବ । କଥାରେ ଅଛି "ବାରଜାତି ତେର ଗୋଳ, ବୈଷ୍ଣବ ହେଲେ ସବୁ ଗୋଳ" । ସେହିପରି ପଞ୍ଚସଖା ବୈଷ୍ଣବାଲମ୍ବୀ ହୋଇଥିବାରୁ ଏମାନଙ୍କ ମଧ୍ୟରେ ଧର୍ମଗତ ବିବିଧ ପ୍ରଭେଦ ଥିଲେ ହେଁ ଜାତିଗତ ଭେଦାଭେଦ ଆଦୌ ନଥିଲା ।

ପଞ୍ଚସଖା ବୈଷ୍ଣବଗଣ ସାଧାରଣତଃ ଉତ୍କଳୀୟ ବୈଷ୍ଣବ ଭାବରେ ଗୃହୀତ । ପରିମାଣାତ୍ମକ ଦୃଷ୍ଟିରୁ ସେମାନେ ବିପୁଳାୟତନ ସାହିତ୍ୟ କୃତିର ଅଧିକାରୀ ଥିଲେ । ସେ ଗୁଡ଼ିକ ମଧ୍ୟରୁ କେତେକ ଏହି ସତ୍ୟ ଉନ୍ମୋଚନ କରନ୍ତି ଯେ, ସବୁଦାସ ପଞ୍ଚସଖା, ଶ୍ରୀ ଚୈତନ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ପୁନଶ୍ଚ ଏଗୁଡ଼ିକରୁ ମିଳୁଥିବା ସେମାନଙ୍କ ଧର୍ମଧାରଣାରୁ ସେମାନେ ଉତ୍କଳୀୟ ବୈଷ୍ଣବ ଥିବାର ମତ ପଣ୍ଡିତମାନେ ବ୍ୟକ୍ତ କରନ୍ତି । ସମଗ୍ର ଭାରତବର୍ଷରେ ପୂର୍ବବର୍ତ୍ତୀ ସମୟରେ ପ୍ରଚଳିତ ବିଭିନ୍ନ ବୈଷ୍ଣବୀୟ ମତବାଦ ପଞ୍ଚସଖାକାଳୀନ ଉତ୍କଳ ଭୂମିରେ ଚେର ମଡ଼ାଇ ରହିବା ସଙ୍ଗେ ସଙ୍ଗେ ଅବକ୍ଷୟୀ ବୌଦ୍ଧଧର୍ମ ଓ ନାଥଧର୍ମର ପ୍ରଭାବ ସମକାଳୀନ ସମାଜରୁ ସମ୍ପୂର୍ଣ୍ଣ

ଭିତ୍ତିରହିତ ହୋଇ ନଥିଲା । ତତ୍କାଳୀନ ଓଡ଼ିଶାରେ ପ୍ରଚଳିତ, ପ୍ରସାରିତ ଓ ଲୁପ୍ତପ୍ରାୟ ଧର୍ମମାନଙ୍କର କୌଣସି ନିର୍ଦ୍ଦିଷ୍ଟ ମତବାଦକୁ ଗ୍ରହଣ ନକରି ପଞ୍ଚସଖା ବିଭିନ୍ନ ମତବାଦକୁ ସମ୍ମାନ ଦେଖାଇବା ସଙ୍ଗେ ସଙ୍ଗେ ସ୍ୱକୀୟତା ବଳରେ ଯେଉଁ ନୂତନ ମତବାଦକୁ ଜନ୍ମଦେଲେ, ତାହା ସର୍ବଭାରତୀୟ ସ୍ତରରେ ବିକଶିତ ମତବାଦ ଠାରୁ ବହୁ ଭାବରେ ସ୍ୱତନ୍ତ୍ର । ଏହି ଦୃଷ୍ଟିରୁ ପଞ୍ଚସଖାକାଳୀନ ଏହି ସ୍ୱତନ୍ତ୍ର ଉତ୍କଳୀୟ ଧର୍ମଧାରଣାକୁ 'ପଞ୍ଚସଖା-ଧର୍ମ' ନାମରେ ନାମିତ କରିବା ଅତ୍ୟନ୍ତ ସମୀଚୀନ ମନେହୁଏ । ଚୈତନ୍ୟଙ୍କର ପଞ୍ଚସଖା ଥିଲେ ହେଁ, ଏମାନେ ଚୈତନ୍ୟଙ୍କ ପ୍ରଚାରିତ ଧର୍ମତତ୍ତ୍ୱକୁ ସର୍ବସ୍ୱ ନକରି ନିଜସ୍ୱ ଧର୍ମ ଚେତନାରେ ଉତ୍କଳୀୟ ବୈଷ୍ଣବ ଧର୍ମକୁ ଏକ ବିଶିଷ୍ଟ ସ୍ୱରୂପ ପ୍ରଦାନ କରିଥିଲେ ।

ପଞ୍ଚସଖା ଧର୍ମରେ ଶୂନ୍ୟବାଦର ପରିକଳ୍ପନା ମୂଳରେ ପ୍ରାଚୀନ ମହାଯାନ ଓ ହୀନଯାନର ପ୍ରଭାବ ପରିଲକ୍ଷିତ ହୁଏ । ଓଡ଼ିଶା ଭୂଇଁର ସନ୍ତାନ ବୌଦ୍ଧ ଦାର୍ଶନିକ ନାଗାର୍ଜ୍ଜୁନ ହେଉଛନ୍ତି ଏହି ଶୂନ୍ୟବାଦର ଆଦ୍ୟ ପ୍ରବର୍ତ୍ତକ । ମହାଯାନୀମାନଙ୍କ ମତରେ ବୁଦ୍ଧ ନିର୍ବାଣ ପ୍ରାପ୍ତ ହୋଇଥିବାରୁ ସ୍ୱୟଂ ଶୂନ୍ୟ ପୁରୁଷ । ବୁଦ୍ଧ ନିରାକାର ଓ ନିର୍ଗୁଣ; ସେ ଅଲକ୍ଷ୍ୟ ବା ଅଲେଖ, ସେ ପୁଣି ନିରଞ୍ଜନ ଓ ସର୍ବବ୍ୟାପୀ । ଏହି ଭାବରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଆ ସନ୍ଥକବି ପଞ୍ଚସଖା ସେମାନଙ୍କର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କୁ ଶୂନ୍ୟର ପ୍ରତୀକ ରୂପେ ଗ୍ରହଣ କରିଅଛନ୍ତି । ଅବଶ୍ୟ ଏହି ବୌଦ୍ଧ ଶୂନ୍ୟବାଦ ଭାରତରେ ନୂତନ ନୁହେଁ । ବୃହଦାରଣ୍ୟକ ଉପନିଷଦ, କଠୋପନିଷଦ, ଛାନ୍ଦୋଗ୍ୟ ଉପନିଷଦମାନଙ୍କରେ ବହୁ ସ୍ଥଳରେ ଏହାର ସ୍ପଷ୍ଟ ଆଭାସ ମିଳେ । ପୁଣି ଉପନିଷଦର ବ୍ରହ୍ମବାଦ ସହିତ ବୈଷ୍ଣବ ଶୂନ୍ୟବାଦର ଅତି ଘନିଷ୍ଠ ନିବିଡ଼ତା ରହିଅଛି । ଏମାନଙ୍କ ମଧ୍ୟରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏନାହିଁ । ଏହି ଉଭୟ ଦୃଷ୍ଟିରୁ ଶୂନ୍ୟବାଦର ଏକ ସମନ୍ୱିତ ରୂପ ହେଉଛି ପଞ୍ଚସଖା ଶୂନ୍ୟବାଦ । ପଞ୍ଚସଖାଙ୍କ ମତରେ ଶୂନ୍ୟର ଅର୍ଥ ହେଉଛି ସ୍ୱଭାବହୀନତା । ତେଣୁ ସେମାନେ ଶୂନ୍ୟପୁରୁଷଙ୍କୁ ଅଲେଖ, ଅଣାକାର, ଅନାଦି, ଅବର୍ଣ୍ଣ, ନିରଞ୍ଜନ, ନିର୍ଗୁଣ ଇତ୍ୟାଦି ନାମରେ ନାମିତ କରନ୍ତି । ଏ ସମସ୍ତ ପୁଣି ପରମବ୍ରହ୍ମଙ୍କର ନାମାନ୍ତର ମାତ୍ର ।

ପଞ୍ଚସଖା ଏହି ସାଧନା ନିମନ୍ତେ ଯୋଗ ପ୍ରକ୍ରିୟାକୁ ପୁଣି ବିଶେଷ ଭାବରେ ଗ୍ରହଣ କରିଛନ୍ତି । ଏହି ଯୋଗର ଅର୍ଥ ଆତ୍ମା-ପରମାତ୍ମାର ଯୋଗ ।

ଚିତ୍ତକୁ ସଂଯୋଗ କରିବା ହେଉଛି ଯୋଗ । ଚିତ୍ତର ଆଧାର ବା ଭୂମି ହେଉଛି ଶରୀର । ଏଣୁ ଚିତ୍ତକୁ ସଂଯତ କରିବା ପୂର୍ବରୁ ଶରୀରକୁ ଆୟତ୍ତାଧୀନ କରିବା ଏକାନ୍ତ ଆବଶ୍ୟକ । ଶରୀରକୁ ଆୟତ୍ତାଧୀନ ପ୍ରଣାଳୀକୁ କାୟା ସାଧନା କୁହାଯାଏ । ସୁତରାଂ ଯୋଗସାଧନା ଓ କାୟା ସାଧନା ପରସ୍ପର ପରିପୂରକ । କାୟା ସିଦ୍ଧି ପ୍ରାପ୍ତ ହେଲେ ଅନ୍ୟ ସିଦ୍ଧି ସ୍ୱତଃ ଆସିଥାଏ । କାୟାସିଦ୍ଧି ପ୍ରାପ୍ତ ହେବାର ଏକମାତ୍ର ଉପାୟ ହେଉଛି କାୟା ମଧ୍ୟସ୍ଥ ପବନକୁ ଆୟତ୍ତକୁ ଆଣିବା । ଏହି କାୟାସାଧନା ସାରଳା ମହାଭାରତରେ ଦେଖିବାକୁ ମିଳେ । ଏହା ସାରଳା ଦାସଙ୍କ ପୂର୍ବରୁ ପରମ୍ପରାକ୍ରମେ ଚାଲିଆସିଥିବାର ଅନୁମାନ କରାଯାଏ ।

ଯୋଗୋପନିଷଦ ଅନୁଯାୟୀ ମନ୍ତ୍ରଯୋଗ, ଲୟଯୋଗ, ରାଜଯୋଗ ଓ ହଠଯୋଗ ଭେଦରେ ଯୋଗ ଚତୁର୍ବିଧ । ପତଞ୍ଜଳିଙ୍କ ଯୋଗ ଦର୍ଶନରେ ଯମ ନିୟମ, ଆସନ, ପ୍ରାଣାୟାମ ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି— ଏହି ଅଷ୍ଟାଙ୍ଗ ସାଧନାକୁ ସ୍ୱୀକୃତି ଦିଆଯାଇଛି; ମାତ୍ର ଉତ୍କଳୀୟ ବୈଷ୍ଣବ ପଞ୍ଚସଖାଙ୍କ ରଚନାବଳୀରେ ଯୋଗର ଯେଉଁ ବର୍ଗୀକରଣ ଦେଖାଯାଏ ତାହା ହେଉଛି ଅରମ୍ଭ ଯୋଗ, ହଠ ଯୋଗ, ପରଚେ ଯୋଗ ଓ ନିଷ୍କାମ ଯୋଗ—ଏଗୁଡ଼ିକ ମଧ୍ୟରୁ ପଞ୍ଚସଖାଙ୍କ ସାଧନା ପ୍ରଣାଳୀରେ ହଠଯୋଗର ପ୍ରାଧାନ୍ୟ ଦେଖାଯାଏ । ହଠଯୋଗ ଷଡ଼ଚକ୍ର ସାଧନା ମାଧ୍ୟମରେ ସାଧିତ ହୁଏ । ପଞ୍ଚସଖାଧର୍ମୀୟ ଗ୍ରନ୍ଥମାନଙ୍କରେ ଷଡ଼ଚକ୍ର ସାଧନାର ବହୁଳ ବର୍ଣ୍ଣନା ଦେଖାଯାଏ । ଏହି ଷଡ଼ଚକ୍ର ହେଲେ ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ଆଜ୍ଞାଚକ୍ର ଓ ସହସ୍ରାର ଚକ୍ର । ଏଗୁଡ଼ିକ ଯଥାକ୍ରମେ ଶରୀରର ଗୁହ୍ୟ, ଲିଙ୍ଗମୂଳ, ନାଭି, ହୃଦୟ, କଣ୍ଠ ଓ ଲଲାଟ ମଧ୍ୟରେ ଅବସ୍ଥିତ । ସହସ୍ରାର ଚକ୍ରର ସହସ୍ରଦଳ ପଦ୍ମ ମଧ୍ୟରେ ଅବସ୍ଥିତ ଭ୍ରମର ଗୁମ୍ଫାରେ ପରମାତ୍ମା ବିରାଜିତ । ଏଠାରେ ସମ୍ବିତ୍ ବା ଜୀବାତ୍ମାର ପରମାତ୍ମା ସହିତ ମିଳନ ଘଟେ । ସୁଷୁମ୍ନା ନାଡ଼ି ସହିତ ଇଡ଼ା ଓ ପିଙ୍ଗଳା ନାଡ଼ି ସମ୍ପୃକ୍ତ । ଯୋଗୀ ଏ ଦୁଇ ନାଡ଼ୀରେ ପ୍ରାଣବାୟୁ ସଞ୍ଚାରିତ କରି ସୁଷୁମ୍ନାକୁ ଯୋଗାଇ ଦିଏ । ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀତ୍ରୟ ଗଙ୍ଗା, ଯମୁନା ସରସ୍ୱତୀ ଭାବେ ପରିକଳ୍ପିତ । ଏମାନଙ୍କର ସଙ୍ଗମସ୍ଥଳକୁ ତ୍ରିକୂଟ ନାମରେ ଅଭିହିତ କରାଯାଏ ।

ପଞ୍ଚସଖା ସାହିତ୍ୟରେ ପୁଣି ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱର ବିଶଦ ବିବରଣୀ ମିଳେ । ଏହା ପଞ୍ଚସଖା ସାହିତ୍ୟରେ ଅନ୍ୟତମ ଉପାଦେୟ ତତ୍ତ୍ୱ । ପଞ୍ଚସଖା ଅନ୍ତର୍ଗତ ପ୍ରତ୍ୟେକ ସଖାଙ୍କ ଗ୍ରନ୍ଥରେ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ପରିକଳ୍ପନା ପ୍ରାୟ ଏକ ପ୍ରକାର ଏବଂ ଏ ପ୍ରକାର ବିବରଣୀ ବିସ୍ତୃତ ଭାବରେ ପ୍ରଦତ୍ତ । ଏଠାରେ ପାରମାର୍ଥିକ ଶରୀର ବା ପିଣ୍ଡ ବ୍ରହ୍ମାଣ୍ଡ ଭାବରେ ପରିକଳ୍ପିତ । ସକଳ ଭୁବନ, ପର୍ବତ, ଦ୍ୱୀପ, ସମୁଦ୍ର, ନଦ, ନଦୀ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଇତ୍ୟାଦି ଏହି ପିଣ୍ଡ ବ୍ରହ୍ମାଣ୍ଡ ମଧ୍ୟରେ ଅବସ୍ଥିତ । ସାଧକ ପିଣ୍ଡ ଓ ବ୍ରହ୍ମାଣ୍ଡ ମଧ୍ୟରେ କୌଣସି ପାର୍ଥକ୍ୟ ଲକ୍ଷ୍ୟ କରିପାରେ ନାହିଁ । ସେ ପିଣ୍ଡ ଓ ବ୍ରହ୍ମାଣ୍ଡର ଐକ୍ୟ ଭାବନାରେ ରତ ରହି ବିରାଟ ରୂପ ଧ୍ୟାନ କରେ ଏବଂ ଏହି ଧ୍ୟାନବଳରେ ସେହି ବିରାଟ ରୂପରେ ଲୀନ ହୁଏ ।

ଧର୍ମଧାରଣାରେ ପୁଣି ପରମେଶ୍ୱର ବିଷୟକ ଅନୁରକ୍ତିକୁ ଭକ୍ତି କୁହାଯାଏ । ଏହା ପରା, ଅପରା ଭେଦରେ ଦ୍ୱିବିଧ । ଅପରା ଭକ୍ତି ହେଉଛି ସୁଦ୍ଧା ଭକ୍ତି, ଯାହା ଶ୍ରବଣ, କୀର୍ତ୍ତନ ଠାରୁ ଆରମ୍ଭ କରି ଆତ୍ମ ନିବେଦନ ପର୍ଯ୍ୟନ୍ତ ନଅଟି କର୍ମବିଶିଷ୍ଟ, ନବଧାଭକ୍ତି ପର୍ଯ୍ୟାୟଭୁକ୍ତ । ପରାଭକ୍ତି ହେଉଛି, ଜ୍ଞାନ ମିଶ୍ରା ଭକ୍ତି । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଜ୍ଞାନ ମାହାତ୍ମ୍ୟରେ ମୁକ୍ତିଲାଭ କରିବା । ପଞ୍ଚସଖା ଏହି ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ । ସେମାନେ ଯେ ସୁଦ୍ଧାଭକ୍ତିର ବିରୋଧୀ ଥିଲେ ତା' ନୁହେଁ, କିନ୍ତୁ ସେମାନଙ୍କ ମତରେ ଭଗବାନଙ୍କ ରୂପ ଉପଲବ୍ଧି ପାଇଁ ଜ୍ଞାନ ଏକାନ୍ତ ଆବଶ୍ୟକ । ପୁନଶ୍ଚ ଜ୍ଞାନ କହିଲେ ଜ୍ଞାନଯୋଗକୁ ବୁଝାଏ । କେତେକ ସ୍ଥଳରେ ଶୂନ୍ୟ ସାଧନା ମଧ୍ୟ ଜ୍ଞାନଭାବେ ଗୃହୀତ । ପଞ୍ଚସଖାଙ୍କ ମତରେ ଭଗବାନଙ୍କୁ ପାଇବା ପାଇଁ ଭକ୍ତିର ଆବଶ୍ୟକତାକୁ ପଣ୍ଡିତ ସ୍ୱୀକାର କରିବାକୁ ହେବ, ତଥାପି ସେଥି ସହିତ ଜ୍ଞାନ ସମ୍ପୃକ୍ତ କଲେ ବ୍ରହ୍ମୋପଲବ୍ଧି ସହଜ ସାଧ୍ୟ ହୁଏ । ରାଧାକୃଷ୍ଣ ଓ ପ୍ରେମଭକ୍ତିକୁ ପଞ୍ଚସଖା ଗ୍ରହଣ କରିଥିଲେ ହେଁ ରାଧାକୃଷ୍ଣଙ୍କୁ ଏମାନେ ମାନବୀ-ମାନବ ରୂପରେ ନ ଦେଖି ଜୀବାତ୍ମା-ପରମାତ୍ମା ରୂପେ ଦେଖିଛନ୍ତି । ଏମାନଙ୍କର ଆଧ୍ୟାତ୍ମିକ ଦୃଷ୍ଟିରେ ବୃନ୍ଦାବନ ରାଧାକୃଷ୍ଣଙ୍କର ଲୀଳାସ୍ଥଳ ନୁହେଁ, ଲୀଳାସ୍ଥଳ ହେଉଛି ଶୂନ୍ୟ ନିରାକାର ମଣ୍ଡଳ । ଶରୀରରେ ବିଦ୍ୟମାନ ଅଗ୍ରମ ସହସ୍ରାର

ବ୍ରହ୍ମହିଁ ଶୂନ୍ୟ ନିରାକାର ମଣ୍ଡଳରୂପେ ବନ୍ଦିତ । ଏହାହିଁ ରାଧାକୃଷ୍ଣଙ୍କର ନିତ୍ୟଧାମ । ଯୋଗ, ନିରାକାର ଭଜନାଦି ମାଧ୍ୟମରେ କେବଳ ଏହି ନିତ୍ୟକୃଷ୍ଣ ଓ ନିତ୍ୟ ରାଧାଙ୍କର ନିତ୍ୟଧାମ ଓ ନିତ୍ୟଲୀଳାର ଦର୍ଶନ ମିଳିପାରିବ ।

ଜଗତର ସୃଷ୍ଟି ରହସ୍ୟ ସମ୍ବନ୍ଧରେ ହିନ୍ଦୁ ଦର୍ଶନଶାସ୍ତ୍ର ଓ ପୁରାଣମାନଙ୍କରେ ପୁଣି ବିସ୍ତୃତ ବିବରଣୀ ରହିଛି । ସେହିପରି ପଞ୍ଚସଖା ଧର୍ମରେ ଏହି ରହସ୍ୟ ଉଦ୍‌ଘାଟିତ ହୋଇଛି, ଯାହା ପଞ୍ଚସଖା ଧର୍ମର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଶହ ଶହ ଓଡ଼ିଶୀ-ବୈଷ୍ଣବ ଗ୍ରନ୍ଥ ବିଶ୍ୱସୃଷ୍ଟି ରହସ୍ୟର ବିଚିତ୍ର ଆଧ୍ୟାତ୍ମିକ ପରିକଳ୍ପନାରେ ଭରପୂର । ଓଡ଼ିଆ ସନ୍ଥସାଧକମାନଙ୍କର ଏହା ହିଁ ଭାରତୀୟ ତଥା ବିଶ୍ୱ ସଂସ୍କୃତିକୁ ଏକ ମହାନ ଦାନ । ପୁନଶ୍ଚ ପଞ୍ଚସଖା ଧର୍ମରେ ବିନ୍ଦୁ ଶବ୍ଦ ଖୁବ୍ ତତ୍ତ୍ୱପୂର୍ଣ୍ଣ । ଏହାର ଅର୍ଥ ସର୍ଜନଶୀଳ ଶକ୍ତି । ଏହା ଶୂନ୍ୟରୁ ଜାତ । ନିରାକାରଙ୍କ ଅନ୍ୟତମ ରୂପାନ୍ତର ହେଉଛି ଏହି ବିନ୍ଦୁ । କେତେକ ସ୍ଥଳରେ ସୃଷ୍ଟି ରହସ୍ୟ ନୂତନ ନାମରେ ଓ ନୂତନ ଭାବରେ ପରିବେଷିତ ହୋଇଥିଲେହେଁ ମୌଳିକ ଧାରଣାରେ ସାମ୍ୟ ପରିଲକ୍ଷିତ ହୁଏ । ଏହି ମୌଳିକ ଚିନ୍ତାଧାରା ହେଉଛି—ଶୂନ୍ୟହିଁ ମୂଳ ଏବଂ ଏଥିରୁ ପର୍ଯ୍ୟାୟ କ୍ରମେ ସବୁକିଛି ଜନ୍ମଲାଭ କରିଛି ।

ପଞ୍ଚସଖା ଧର୍ମରେ ଅବତାରବାଦର ଭୂମିକାକୁ ଅସ୍ୱୀକାର କରିହେବ ନାହିଁ । ଏହି ତତ୍ତ୍ୱ ହିନ୍ଦୁଧର୍ମର ଅବତାରବାଦ ଉପରେ ପ୍ରତିଷ୍ଠିତ । ଗୀତାର ପ୍ରସିଦ୍ଧ ଶ୍ଳୋକ—"ଯଦା ଯଦା ହି ଧର୍ମସ୍ୟ, ଗ୍ଳାନି ଭବତି ଭାରତ..." ଅନୁସାରେ ସଂସାରରେ ଦୁଷ୍ଟଦଳନ ନିମନ୍ତେ ଭଗବାନ ବିଭିନ୍ନ ଅବତାର ଗ୍ରହଣ କଲାପରି, ଭାରତୀୟ ଏହି ହିନ୍ଦୁତତ୍ତ୍ୱ ଦ୍ୱାରା ପ୍ରଭାବିତ ପଞ୍ଚସଖା ସେମାନଙ୍କ ସାହିତ୍ୟରେ ନିଜକୁ ଭଗବାନଙ୍କର ସହଚର ଭାବେ ଅଭିହିତ କରି ଅନନ୍ତ, ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗରେ ଭଗବାନଙ୍କ ଆଜ୍ଞାରେ ତାଙ୍କ ସହିତ ଜନ୍ମଗ୍ରହଣ କରି ତାଙ୍କ ଲୀଳା ପ୍ରସାରରେ ସାହାଯ୍ୟ କରିଥିଲେ ।

ପୁନଶ୍ଚ ପଞ୍ଚସଖାଙ୍କର ପ୍ରେମଭକ୍ତି ଭୋଗମୁଖୀ ନ ହୋଇ ହୋଇଛି ଯୋଗମୁଖୀ, ଉଚ୍ଛ୍ୱାସଧର୍ମୀ ନ ହୋଇ ହୋଇଛି ଗାମ୍ଭୀର୍ଯ୍ୟଧର୍ମୀ । ଏହି

ଭକ୍ତି ପୁଣି ପ୍ରେମ ଅପେକ୍ଷା ଜ୍ଞାନ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ପ୍ରେମଭକ୍ତିର ପରିବେଶରେ ନିଜର ଉଦ୍ଦେଶ୍ୟ ସାଧନ କରିବା ନିମନ୍ତେ ସଫଳତା ଲାଭ କରିଛି ଜ୍ଞାନଭକ୍ତି । ଏ ସାଧନ ଶ୍ରେଷ୍ଠ ସହଜ ଜଣାଯାଉଥିଲେ ମଧ୍ୟ ଜ୍ଞାନ ଓ ଯୋଗ ମିଶ୍ରିତ ହୋଇଥିବାରୁ ପ୍ରକୃତରେ ଖୁବ୍ ଜଟିଳ । ଏହି ସାଧନ ପଥରେ ଅଗ୍ରସର ହେବା ପାଇଁ ଆବଶ୍ୟକ ଗୁରୁ ବାକ୍ୟ, ଗୁରୁଦୀକ୍ଷା ଓ ଗୁରୁ ଆଶୀର୍ବାଦ । ସୁତରାଂ ପଞ୍ଚସଖା ଧର୍ମ ଓ ସାହିତ୍ୟରେ ବ୍ରହ୍ମଜ୍ଞାନର ସାଧନା ପାଇଁ ସଦ୍‌ଗୁରୁ ସେବାର ପ୍ରୟୋଜନୀୟତା ବହୁଳ ଭାବରେ ଆଲୋଚିତ । ପଞ୍ଚସଖା ସାହିତ୍ୟରେ କେବଳ ନୁହେଁ, ଭାରତୀୟ ଧର୍ମ ଓ ସାଧନ ପରମ୍ପରାରେ ଗୁରୁବାଦ ଏକ ଅବିଚ୍ଛେଦ୍ୟ ଅଙ୍ଗ ।

ପଞ୍ଚସଖାଙ୍କ ଦ୍ୱାରା ତନ୍ତ୍ର, ମନ୍ତ୍ର ଓ ଯନ୍ତ୍ରର ପ୍ରାଧାନ୍ୟ ସ୍ୱୀକୃତ । ପଞ୍ଚସଖାଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସାହିତ୍ୟରେ ଏହାର ବହୁଳ ଉଲ୍ଲେଖ ରହିଅଛି । ଓଡ଼ିଶାରୁ ଏ ସବୁର ଉତ୍ପତ୍ତି ହୋଇଥିଲା । କାରଣ ଓଡ଼ିଶା ଥିଲା ତାନ୍ତ୍ରିକ ବୌଦ୍ଧ, ଶୈବ ଓ ଶାକ୍ତ ଗ୍ରନ୍ଥ ପ୍ରସିଦ୍ଧ ତନ୍ତ୍ର ସାଧନାର ପ୍ରାଚୀନତମ 'ଉଡ୍ଡୀୟାନ ପୀଠ ।' ପଞ୍ଚସଖାଙ୍କ ସାହିତ୍ୟରେ ତନ୍ତ୍ରର ଚଉଷଠି ପୀଠ ଶରୀର ମଧ୍ୟରେ ପରିକଳ୍ପିତ । ଏମାନେ ତନ୍ତ୍ର, ମନ୍ତ୍ର, ଯନ୍ତ୍ରକୁ [illegible] ନିମନ୍ତେ ବାଛି ନେଇଛନ୍ତି । ତନ୍ତ୍ର ବାମାଚାର ଓ ଦକ୍ଷିଣାଚାର ଭେଦରେ ଦ୍ୱିବିଧ । ବାମାଚାର ତାମସିକ ଏବଂ ଦକ୍ଷିଣାଚାର ହେଉଛି ସାତ୍ତ୍ୱିକତନ୍ତ୍ର । ଓଡ଼ିଶାର ପଞ୍ଚସାଧକ ଓ ସେମାନଙ୍କ ଅନୁଚର [illegible] ସାତ୍ତ୍ୱିକ ଦକ୍ଷିଣାଚାର ତନ୍ତ୍ରର ଅନୁସରଣକାରୀ ଥିଲେ ଓ ତାମସିକ ବାମାଚାର ତନ୍ତ୍ରଠାରୁ ଦୂରେଇ ରହୁଥିଲେ । ତନ୍ତ୍ର ଓଡ଼ିଶାର ପାଣି ପବନରେ ଏତେଦୂର ବିସ୍ତାର କରିଥିଲା ଯେ ଏବେବି ଜଗନ୍ନାଥ ଧର୍ମରେ ତନ୍ତ୍ରର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ପଞ୍ଚସଖା ଧର୍ମରେ ନିର୍ଗୁଣ ବା ଶୂନ୍ୟ ଉପାସନାର ପ୍ରାଧାନ୍ୟ ରହିଥିଲେ ହେଁ ସଗୁଣ ଉପାସନା ଏକାବେଳକେ ଅବହେଳିତ ନୁହେଁ । ଏଣୁ ପଞ୍ଚସଖା ସାଧକ ଉଭୟ ସଗୁଣ ଓ ନିର୍ଗୁଣ ଅର୍ଥାତ୍ ସାକାର ଓ ନିରାକାର ଉପାସକ ଥିଲେ । ଈଶ୍ୱରୋପଲବ୍ଧି ନିମିତ୍ତ ମାର୍ଗ ଅନୁସରଣୀୟ; ରୂପରେ ଏହାର ଆରମ୍ଭ, ଅରୂପରେ ଶେଷ । ମନକୁ ସ୍ଥିର

କରିବା ନିମିତ୍ତ ରୂପ ବା ଆକାର ଆଦ୍ୟ ଅବଲମ୍ବନ । ସାଧକ ସାଧନା ପଥରେ ବହୁ ଦୂର ଆଗେଇ ଗଲା ପରେ ଏହାର ପ୍ରୟୋଜନ ଆଦୌ ନଥାଏ । ପଞ୍ଚସଖାଙ୍କର ସଗୁଣରୁ ଓ ନିର୍ଗୁଣରୁ ପ୍ରମାଣ କରିବା ପାଇଁ ଗୋଟାଏ ଶ୍ରେଷ୍ଠ ଉଦାହରଣ ଦିଆଯାଇପାରେ । ଶ୍ରୀଜଗନ୍ନାଥ ସେମାନଙ୍କର ପରମ ଆରାଧ୍ୟ ଦେବତା, ଶ୍ରୀକ୍ଷେତ୍ର ସେମାନଙ୍କର ସର୍ବଶ୍ରେଷ୍ଠ ପବିତ୍ର କ୍ଷେତ୍ର ଏବଂ କୈବଲ୍ୟ ସେମାନଙ୍କର ମୁକ୍ତିର ସୋପାନ । ଏହି ପ୍ରକାର ସଗୁଣ ଉପାସନାରେ ବିଶ୍ୱାସୀ ପଞ୍ଚସଖା ମଧ୍ୟ ନିର୍ଗୁଣ ଉପାସନାରେ ପ୍ରଧାନ ପ୍ରବର୍ତ୍ତୀ । ସେମାନେ ଶ୍ରୀଜଗନ୍ନାଥଙ୍କୁ ମହାଶୂନ୍ୟସ୍ଥ ଜ୍ୟୋତି ଭାବରେ ପରିକଳ୍ପନା କରିଛନ୍ତି । ଶ୍ରୀଜଗନ୍ନାଥଙ୍କୁ ସେମାନେ ଉଭୟ ସଗୁଣ ଓ ନିର୍ଗୁଣ ରୂପରେ ଦେଖିଛନ୍ତି । ସୁତରାଂ ପଞ୍ଚସଖା ଧର୍ମରେ ସଗୁଣ ଓ ନିର୍ଗୁଣ ଉପାସନାର ଏକ ମଧୁର ସମନ୍ୱୟ ଦେଖାଯାଏ । ଅନୁମିତ ହୁଏ, ପଞ୍ଚସଖାଙ୍କ ନିର୍ଗୁଣ ଉପାସନା ପୂର୍ବରୁ ପ୍ରଚଳିତ ବୌଦ୍ଧଶୂନ୍ୟ ଓ ନାଥଶୂନ୍ୟ ଦ୍ୱାରା ପ୍ରଭାବିତ ଏବଂ ସଗୁଣ ଉପାସନା ସମକାଳୀନ ପ୍ରେମଭକ୍ତି ଧର୍ମ ଓ ପୂର୍ବବର୍ତ୍ତୀ ସମୟରେ ପ୍ରଚଳିତ ବିଭିନ୍ନ ବୈଷ୍ଣବୀୟ ମତବାଦ ଦ୍ୱାରା ପରିପୁଷ୍ଟ ।

ଅକ୍ଷରମୟୀ ଆରାଧନା ପୁଣି ପଞ୍ଚସଖା ଧର୍ମର ଅନ୍ୟତମ ବୈଶିଷ୍ଟ୍ୟ । ଏହି ଅକ୍ଷରମୟୀ ଆରାଧନା ତନ୍ତ୍ରଦ୍ୱାରା ବହୁଳ ଭାବରେ ପ୍ରଭାବିତ । ପଞ୍ଚସଖା ସାହିତ୍ୟରେ ନାମ ସହିତ ଅକ୍ଷରକୁ ମଧ୍ୟ ଏକ ସଙ୍ଗରେ ଜପ କରିବା ବିଧି ରହିଛି । ଦୃଷ୍ଟାନ୍ତ ସ୍ୱରୂପ—ଓଁ ହେଉଛି ବ୍ରହ୍ମର ଅତି ନିକଟତମ ନାମ । ହ୍ଲାଂ, ଶ୍ରୀଂ ଓ କ୍ଲୀଂ ସେହିପରି ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ଭାବେ ପରିକଳ୍ପିତ ଏବଂ ଏହି ଅକ୍ଷରମୟୀ ଆରାଧନା ମାଧ୍ୟମରେ ସେମାନେ ଶ୍ରୀଜଗନ୍ନାଥଙ୍କ ଆରାଧନାରେ ତୃପ୍ତିଲାଭ କରନ୍ତି । ଏହି ଅକ୍ଷରମୟୀ ଆରାଧନାରେ ତନ୍ତ୍ରର ପ୍ରଭାବ ଉପଲବ୍ଧି ହେଲେହେଁ ଏହା ଉପନିଷଦୀୟ ଭାବଧାରାଦ୍ୱାରା ପ୍ରଭାବିତ ।

## ଭକ୍ତଙ୍କ ଭଗବାନ ଜଗନ୍ନାଥ ଦାସ

ପଞ୍ଚସଖା ଯୁଗର ଆଧ୍ୟାତ୍ମିକ ପୃଷ୍ଠଭୂମି ତଥା ବିପୁଳ ବିଶେଷତ୍ୱକୁ ଭିତ୍ତିକରି ଏହି ଯୁଗର ସନ୍ଥ ସାଧକ ଭକ୍ତକବି ଜଗନ୍ନାଥ ଦାସଙ୍କ ସିଦ୍ଧି ଓ ସଫଳତା ବର୍ଣ୍ଣନୀୟ । ଉକ୍ତକାଳୀୟ ପଞ୍ଚସଖାଙ୍କ ମଧ୍ୟରେ ଜଗନ୍ନାଥ ଦାସ

ଜଣେ ପ୍ରଧାନ ସନ୍ଥକବି । ଭାରତର ମଧ୍ୟଯୁଗୀୟ ଧର୍ମ ଆନ୍ଦୋଳନରେ ସଂଶ୍ଲିଷ୍ଟ ବହୁ ଉଲ୍ଲେଖଯୋଗ୍ୟ ସନ୍ଥକବି ବିଦ୍ୟାପତି, କବୀର, ନାନକ, ନରସିଂ ମେହେନ୍ତା, ଶଙ୍କର ଦେବ, ତୁଳସୀ ଦାସ, ଏକନାଥ ସ୍ୱାମୀ ଓ ଚୈତନ୍ୟ ପ୍ରମୁଖଙ୍କ ମଧ୍ୟରେ ଉତ୍କଳୀୟ ସନ୍ଥକବି ଜଗନ୍ନାଥ ଦାସ ଏକ ସମ୍ମାନିତ ଆସନର ଅଧିକାରୀ । ଏହି ସନ୍ଥପ୍ରବର ଜଗନ୍ନାଥ ଦାସଙ୍କର ଜନ୍ମ ଚଉଦଶହ ବୟାନବେ ଖ୍ରୀଷ୍ଟାବ୍ଦ ଭାଦ୍ରମାସ ଶୁକ୍ଳ ପକ୍ଷ ରାଧାଷ୍ଟମୀ ତିଥିରେ, ପୁରୀ ସହରର ଅନତିଦୂରର ଉତ୍ତର ପଶ୍ଚିମରେ ଗଜପତି କପିଳେନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ କପିଳେଶ୍ୱରପୁର ଶାସନରେ ହୋଇଥିଲା । କୌଶିକ ଗୋତ୍ରୀୟ ଦାସ ସଂଜ୍ଞକ ସଂସ୍କୃତ ପଣ୍ଡିତ ପିତା ଭଗବାନ ଦାଶ ପ୍ରତ୍ୟହ ଶ୍ରୀମନ୍ଦିରରେ ଶ୍ରୀମଦ୍‌ଭାଗବତ ପୁରାଣ ପାଠକରି କୌଳିକ ବୃତ୍ତି ସୂତ୍ରରେ ଗଜପତି ମହାରାଜାଙ୍କ ଠାରୁ 'ପୁରାଣ ପଣ୍ଡା' ଉପାଧି ପାଇଥିଲେ । ବିବାହିତ ଜୀବନରେ ବହୁ ବର୍ଷ ପରେ ମହାପ୍ରଭୁ ଜଗନ୍ନାଥଙ୍କର ଅପାର କରୁଣାରୁ ଏକମାତ୍ର ପୁତ୍ର-ସନ୍ତାନ ଲାଭକରି ପିତା ଭଗବାନ ଦାଶ ଓ ମାତା ପଦ୍ମାବତୀ ଦେବୀ ନାମ ଦେଇଥିଲେ ଜଗନ୍ନାଥ ।

ଭଗବାନ ଦାସ ନିଜେ ସଂସ୍କୃତରେ ପଣ୍ଡିତ ଥିଲେ ଏବଂ ପୁରାଣ ପାରାୟଣ ହିଁ ତାହାଙ୍କର କୌଳିକ ବୃତ୍ତି ଥିଲା । ତେଣୁ, ନିଜ ପୁଅ ଜଗନ୍ନାଥଙ୍କୁ ନିଜର ସୁଯୋଗ୍ୟ ଦାୟାଦ ରୂପେ ଗଢ଼ିବା ପାଇଁ ବାଲ୍ୟ ବୟସରୁହିଁ ସେ ତାଙ୍କୁ ସଂସ୍କୃତ ପଢ଼ାଇଥିଲେ । ସେତେବେଳର ଶିକ୍ଷା ପଦ୍ଧତିର ଉଚ୍ଚଶିକ୍ଷା ଲାଭପାଇଁ ଯେଉଁସବୁ ଗ୍ରନ୍ଥ ପଢ଼ାଯାଉଥିଲା, ସେ ସମସ୍ତ ଗ୍ରନ୍ଥ ଜଗନ୍ନାଥ ଅଳ୍ପ ବୟସରେ ହିଁ ଆୟତ୍ତ କରିଥିଲେ । ପିଲାଦିନରୁ ଜଗନ୍ନାଥଙ୍କ ଠାରେ ପ୍ରଖର ସ୍ମୃତିଶକ୍ତି ପ୍ରକାଶ ପାଇଥିଲା । ଏଇଥିପାଇଁ ତାଙ୍କର ବୟସ ଅଠର ବର୍ଷ ବେଳକୁ ସୁବିଶାଳ ସଂସ୍କୃତ ସାହିତ୍ୟର ବିଭିନ୍ନ ବିଭାଗରେ ସେ ପ୍ରବୀଣତା ଲାଭକରି ସାରିଥିଲେ; ବାରବର୍ଷ ବୟସ ବେଳେ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ପିତା ଭଗବାନ ଦାଶ ଚେଷ୍ଟା କରିଥିଲେ ମଧ୍ୟ ଜଗନ୍ନାଥ ଅସମ୍ମତ ହେବାରୁ ପିତାଙ୍କର ଇଚ୍ଛା କାର୍ଯ୍ୟକାରୀ ହୋଇପାରି ନଥିଲା ।

ନିଜ ପିତା ଭଗବାନ ଦାଶଙ୍କ ଅନ୍ତେ ଜଗନ୍ନାଥ ପୁରୀ ଦେଉଳ ବେଢ଼ା ଭିତରେ ବସି ପରମ ପବିତ୍ର ଗ୍ରନ୍ଥ ଶ୍ରୀମଦ୍‌ଭାଗବତ ପାରାୟଣ

କରୁଥାନ୍ତି । ଓଡ଼ିଶାର ତଥା ଭାରତର ବିଭିନ୍ନ ଅଞ୍ଚଳରୁ ଯେଉଁମାନେ ମହାପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଯାଉଥିଲେ ସେମାନେ କେତେ ଭିତରେ ବଟଗଣେଶଙ୍କ ନିକଟରେ ଟିକିଏ ଅଟକି ଯାଇ ଜଗନ୍ନାଥଙ୍କ କଣ୍ଠରୁ ଭାଗବତ ଶୁଣୁଥିଲେ । ସେ ସଂସ୍କୃତ ଭାଗବତର ଶ୍ଳୋକଗୁଡ଼ିକୁ ମଧୁର କଣ୍ଠରେ ଆବୃତ୍ତି କରୁଥିଲେ । ଓଡ଼ିଆରେ ଅର୍ଥ ବୁଝାଇ ଦେଉଥିଲେ ଏବଂ ଓଡ଼ିଆ ପଦ୍ୟରେ ଶ୍ଳୋକଗୁଡ଼ିକୁ ଅନୁବାଦ କରି ମଧ୍ୟ ଲୋକମାନଙ୍କୁ ଶୁଣାଉଥିଲେ । ଏଥିରେ ବ୍ୟାଖ୍ୟାନ କରିବାର ଦକ୍ଷତା ଦିନକୁ ଦିନ ବୃଦ୍ଧି ଲାଭ କରୁଥିଲା । ସୁତରାଂ ଅଳ୍ପକାଳ ମଧ୍ୟରେ ତାଙ୍କର ନାମ ଓ ଯଶ ଓଡ଼ିଶାର ପୁରି ପଲ୍ଲୀରେ ବ୍ୟାପି ଯାଇଥିଲା ।

ତରୁଣ ବୟସରୁ ଜଗନ୍ନାଥଙ୍କ ମନରେ ସଂସାର ପ୍ରତି ବୈରାଗ୍ୟଭାବ ଜାଗ୍ରତ ହୋଇଥିଲା । ତେଣୁ ସେହି ବୟସରୁ ସେ ସନ୍ନ୍ୟାସ ଦୀକ୍ଷା ଗ୍ରହଣର ସଙ୍କଳ୍ପ ନେଇଥିଲେ । ଜଗନ୍ନାଥଙ୍କୁ ଯେତେବେଳେ ଚଉଦ-ପନ୍ଦର ବର୍ଷ ବୟସ, ସମ୍ଭବତଃ ସେତିକିବେଳେ ତାଙ୍କର ପିତୃବିୟୋଗ ଘଟିଥିଲା । ପିତାଙ୍କର ମୃତ୍ୟୁପରେ, ନିତ୍ୟନୈମିତ୍ତିକ କୌଳିକ ବୃତ୍ତି ପୁରାଣ ପାଠ, ତାଙ୍କ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଉଠିଥିଲା । ସେହିକାଳରୁ ସେ ସଂସାରତ୍ୟାଗୀ ସନ୍ନ୍ୟାସୀ ଜୀବନଯାପନ କରି ଶ୍ରୀଜଗନ୍ନାଥଙ୍କର ଚରଣାରବିନ୍ଦରେ ଆପଣାର ଭକ୍ତିପୂତ ମନପ୍ରାଣ ଢାଳିଦେଇ ଥିଲେ । ବଟଗଣେଶଙ୍କ ନିକଟରେ ପୁରାଣ ପାଠ କରୁଥିବାବେଳେ ଶ୍ରୀଚୈତନ୍ୟଙ୍କ ସହିତ ଜଗନ୍ନାଥଙ୍କର ଅତି ଆକସ୍ମିକ ଭାବରେ ମିଳନ ହୋଇଥିଲା । ଦୁଇଗୋଟି ଜ୍ୟୋତି ହଠାତ୍ ପରସ୍ପର ସହିତ ମିଳିଗଲେ ଯେପରି ହୁଏ, ଦୁଇ ଦିବ୍ୟ ଶକ୍ତିସମ୍ପନ୍ନ ଯୁବକ ପରସ୍ପରର ଦର୍ଶନ ମାତ୍ରକେ ପରସ୍ପରକୁ ପ୍ରେମାଲିଙ୍ଗନ କରିଥିଲେ । ଭକ୍ତମାନଙ୍କ ମତରେ, ଶ୍ରୀରାଧାଙ୍କର ହାସ୍ୟମୃତରୁ ଜଗନ୍ନାଥ ଏବଂ କୃଷ୍ଣଙ୍କ ହାସ୍ୟମୃତରୁ ଚୈତନ୍ୟ ଦେବ ଜନ୍ମଗ୍ରହଣ କରିଥିଲେ । ଏହାର ଅର୍ଥ ପ୍ରକୃତ ଜନସାଧାରଣରେ ସୁବୋଧ ନହେଲେ ହେଁ ଏଥିରୁ କେବଳ ଏତିକି ଜଣାଯାଏ ଯେ, କୌଣସି ଏକ ଅପୂର୍ବ ଅଲୌକିକ ସମ୍ପର୍କରୁ ଏହି ଉଭୟ ସିଦ୍ଧ ସାଧକ ପରସ୍ପରଙ୍କ ଦର୍ଶନ ମାତ୍ରକେ ପରସ୍ପର ଏକାନ୍ତ ପ୍ରିୟ ହୋଇ ଉଠିଥିଲେ । ଏହାପରେ, ଶ୍ରୀଚୈତନ୍ୟ ଜଗନ୍ନାଥଙ୍କର ଅଲୌକିକ ଭକ୍ତିଭାବ ଓ ଈଶ୍ୱର ନିଷ୍ଠାର ପରିଚୟ ପାଇଥିଲେ ତାଙ୍କର ଭାଗବତ ଅନୁବାଦ

ଓ ବ୍ୟାଖ୍ୟା ପ୍ରଦାନବେଳେ ବଡଦେଉଳର ବେଢ଼ା ଭିତରେ ସେ ପର୍ଯ୍ୟନ୍ତ ଜଗନ୍ନାଥ ମନ୍ତ୍ରଦୀକ୍ଷା ଗ୍ରହଣ କରି ନଥିଲେ ।

ଏହି ଘଟଣାର ଅନ୍ତର୍ଦ୍ଧାନ ପରେ ଚୈତନ୍ୟଙ୍କ ଆଦେଶରେ ମତ୍ତ ବଳରାମ ଦାସ, ଜଗନ୍ନାଥଙ୍କୁ ମନ୍ତ୍ରଦୀକ୍ଷା ଦେଇଥିଲେ । ଦୀକ୍ଷା ଗ୍ରହଣ ପରେ ତାଙ୍କ ନାମରେ ସାମାନ୍ୟ ପରିବର୍ତ୍ତନ ଘଟିଥିଲା । ଦୀକ୍ଷା ଗ୍ରହଣ ପରେ 'ଦାଶ' ଉପାଧିଟି ସେ ବଦଳାଇ ଦେଇ 'ଦାସ' ଉପାଧି ଗ୍ରହଣ କରିଥିଲେ । 'ଦାସ' ଶବ୍ଦର ଅର୍ଥ ଭକ୍ତ, ସେବକ, ଅନୁଗତ । ଜଗନ୍ନାଥଙ୍କର ଭକ୍ତ-ସେବକ-ଅନୁଗତ ବୋଲି ସେ ନିଜକୁ ମନେ କରୁଥିବାରୁ ଏହିପରି ନାମ ତାଙ୍କ ପକ୍ଷରେ ଥିଲା ଯଥାର୍ଥ ।

ଜଗନ୍ନାଥ ଦାସ ନିଜର ଅସାଧାରଣ ପାଣ୍ଡିତ୍ୟ, ଅପୂର୍ବ ଭକ୍ତିମତ୍ତା ଏବଂ ବିରାଟ ବ୍ୟକ୍ତିତ୍ୱ ବଳରେ ଚୈତନ୍ୟଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇପାରି ଥିଲେ । ଦୀକ୍ଷା ଗ୍ରହଣ କରିବା ପରେ ସେ ପୁଣି ବଡ଼ ଦେଉଳରେ ପୂର୍ବପରି ଭାଗବତ ବ୍ୟାଖ୍ୟାନ କରି ଲୋକମାନଙ୍କୁ ଶୁଣାଉଥିଲେ । ତା' ସହିତ ଜଣେ ଅନୁଗତ ଶିଷ୍ୟ ଭାବରେ ଚୈତନ୍ୟ ଦେବଙ୍କର ମଧ୍ୟ ସେବା କରୁଥିଲେ । ଚୈତନ୍ୟ ଏଥିରେ ବିମୋହିତ ହୋଇ ଜଗନ୍ନାଥଙ୍କୁ 'ଅତିବଡ଼' ଉପାଧିରେ ଭୂଷିତ କରିଥିଲେ । ସେହିଦିନ ଠାରୁ ଶ୍ରୀଚୈତନ୍ୟଙ୍କର ପୃଥ୍ୱୀରେ ଦେହାବସାନ ହେବା ପର୍ଯ୍ୟନ୍ତ ଉଭୟଙ୍କ ଭିତରେ ଥିଲା ଅଭେଦ ତାଦାତ୍ମ୍ୟ ।

ଜଗନ୍ନାଥ ଦାସଙ୍କର କେତୋଟି ବିଶିଷ୍ଟ ଘଟଣା ତାଙ୍କର ଜୀବନୀ ଲେଖକମାନେ ଲିପିବଦ୍ଧ କରିଯାଇଛନ୍ତି । ଅଧିକାଂଶ ଘଟଣା ଖାଲି ବିଶିଷ୍ଟ ନୁହେଁ । ଅଲୌକିକ ମଧ୍ୟ । ଦାସଙ୍କ ଜୀବନରେ ଘଟିଥିବା ଅଲୌକିକ ଘଟଣା ମଧ୍ୟରେ ଜଗନ୍ନାଥ ମହାପ୍ରଭୁଙ୍କ ଦେହରେ ଚନ୍ଦନ ଲାଗି ହେବା, ଜଗନ୍ନାଥ ଦାସଙ୍କୁ ଦେବକନ୍ୟାଙ୍କ ସେବା, ଜଗନ୍ନାଥ ଦାସଙ୍କର ଆଠଟି ହାତ, ଅସାଧାରଣ ପାଣ୍ଡିତ୍ୟ ଦ୍ୱାରା ଉତ୍କଳର ଗୌରବ ରକ୍ଷା, ଭାଗବତ ରଚନା ପାଇଁ ମହାପ୍ରଭୁ ଜଗନ୍ନାଥଙ୍କର ଆଶୀର୍ବାଦ, ସାତଲହଡ଼ ମଠ, ପ୍ରତିଷ୍ଠା ପ୍ରଭୃତି ଉଲ୍ଲେଖଯୋଗ୍ୟ । ଜଗନ୍ନାଥଙ୍କର 'ଅତିବଡ଼' ଉପାଧିରୁ ଓଡ଼ିଶାରେ ଅତିବଡ଼ି ବୈଷ୍ଣବ ସମ୍ପ୍ରଦାୟର ଉଦ୍‌ଭବ ଘଟିଥିଲା ଓ ନିଜେ ଜଗନ୍ନାଥ ଦାସ ଥିଲେ ଏହାର ପ୍ରବର୍ତ୍ତକ । ଏହି ସମ୍ପ୍ରଦାୟର ପ୍ରଧାନ

ଯାଠି ଅଦ୍ୟାପି 'ବଡ଼ ଓଡ଼ିଆ ମଠ' ନାମରେ ପୁରୀ ଧାମରେ ରହିଅଛି ଏବଂ ଏହାର ଶାଖାମାନ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସ୍ଥାପିତ ହୋଇଅଛି । ଜଗନ୍ନାଥ ଦାସଙ୍କର ଜୀବନୀ ଏକ ସିଦ୍ଧ ସାଧକର ଜୀବନୀ । ପନ୍ଦରଶହ ବାଉନ ଖ୍ରୀଷ୍ଟାବ୍ଦ ଶୁକ୍ଳ ସପ୍ତମୀ ବା ତଳ ସପ୍ତମୀ ତିଥିରେ, ଷାଠିଏ ବର୍ଷ ବୟସରେ ସେ ତାଙ୍କର ସାତଲହଡ଼ି ମଠରେ ଥାଇ ଜଗନ୍ନାଥଙ୍କ ମନ୍ଦିର ନୀଳଚକ୍ରକୁ ଚାହିଁ ଚାହିଁ ପ୍ରାଣତ୍ୟାଗ କରିଥିଲେ ।

ଜଗନ୍ନାଥ ଦାସ ମୁଖ୍ୟତଃ ତାଙ୍କର ଭାଗବତ, (ଯାହାକି ସଂସ୍କୃତ ଭାଷାରେ ରଚିତ ସୁବିଖ୍ୟାତ ପୁରାଣଗ୍ରନ୍ଥ 'ଶ୍ରୀମଦ୍ ଭାଗବତମ୍'ର, ମୁକ୍ତ ଓ ସ୍ୱଚ୍ଛନ୍ଦ ଅନୁବାଦ) ଲାଗି ଅସାଧାରଣ ଖ୍ୟାତି ଅର୍ଜନ କରିଛନ୍ତି; ତଥାପି ମନେରଖିବାକୁ ହେବ ଯେ, ସେ ସଂସ୍କୃତ, ଓଡ଼ିଆ, ବଙ୍ଗଳା ଓ ବ୍ରଜବୁଲି ଭାଷାରେ ନାନା ଗ୍ରନ୍ଥ ଲେଖିଥିଲେ । ଏହି ଚାରି ଭାଷା ମଧ୍ୟରୁ ପ୍ରଥମ ଦୁଇ ଭାଷା ସଂସ୍କୃତ ଏବଂ ଓଡ଼ିଆ ମୁଖ୍ୟ । ସଂସ୍କୃତ ଗ୍ରନ୍ଥଗୁଡ଼ିକ ହେଉଛି, କୃଷ୍ଣଭକ୍ତି କଳ୍ପଲତା, କୃଷ୍ଣଭକ୍ତି କଳ୍ପଲତା ଫଳମ୍, ନିତ୍ୟଗୁପ୍ତମାଳା, ଉପାସନା ଶତକମ୍, ପ୍ରେମ ସୁଧାନିଧି, ନିତ୍ୟାଚାରଃ, ନୀଳାଦ୍ରି ଶତକମ୍, ଦୀକ୍ଷା ସନ୍ତୋଷୋପାସନା ବିଧିଃ, ଜଗନ୍ନାଥ ଚରିତାମ୍ବୋଧିସରଣୀ, ବୈଷ୍ଣବ-ଚରିତମ୍ ପ୍ରଭୃତି ଏବଂ ଓଡ଼ିଆ ଗ୍ରନ୍ଥଗୁଡ଼ିକ ହେଉଛି ଶ୍ରୀମଦ୍ ଭାଗବତ, ଦାରୁବ୍ରହ୍ମ-ଗୀତା, ତୁଳାଭିଣା, ଅର୍ଥକୋଇଲି, ମୃଗୁଣୀ ସ୍ତୁତି, ଗଜସ୍ତୁତି, ପାଷାଣ୍ଡ ଦଳନ, ଇତିହାସ-ପୁରାଣ, ମନଶିକ୍ଷା, ମହାଭାରତ, ଗୁପ୍ତଭାଗବତ, ଶ୍ରୀନାମ ଚନ୍ଦ୍ରିକା, ଦୀକ୍ଷା ସମ୍ବାଦ, ଅନାମୟ କୁଣ୍ଡଳୀ, ଚନ୍ଦ୍ରପ୍ରାଦ, ସୁଧାନିଧି, ଷୋଳ ଚଉପଦୀ, ଦହିଖେଳ, ଶୂନ୍ୟ ଭାଗବତ, ଭୂଗୋଳ ଏକାଦଶ ସ୍କନ୍ଦ, ନିତ୍ୟ ନୀଳାଦ୍ରି ବିଳାସ, ନିତ୍ୟଗୁପ୍ତ ଚୂଡ଼ାମଣି, ନୀଳଗିରି ଧ୍ୟାନ, ପାହାନ୍ତ୍ର ଅବକାଶ, ଦୃଷ୍ଟିବୋଧ, ପ୍ରମୋଦ ଚିନ୍ତାମଣି, ଉଷା ପରିଣୟ, ସୁଧାରସ, ଅକ୍ରୂର କୋଇଲି, ଉଦ୍ଧବ ଜଣାଣ, ମାଳା ନିର୍ଣ୍ଣୟ, ଗୋପୀଭାଷା ଅର୍ଥ, ଗୁପ୍ତଗୀତା, ଇନ୍ଦ୍ର ମାଳିକା, କଳିମାଳିକା, ଚନ୍ଦ୍ରକଳା, ଭବିଷ୍ୟ ମାଳିକା, ରୁକ୍ମିଣୀ ମାଳିକା, କାଳୀୟ ଦଳନ, ଭକ୍ତି ଚନ୍ଦ୍ରିକା, ଅଙ୍କଙ୍କାର ବୋଲି, ବୋଲେ ହୁଁ ଗୀତ, ପଞ୍ଚଭୂତ ଗୀତା, କଷଣ ସାଗର ଗୀତା, ଗୁଣ୍ଡିଚା ବିଜେ, ସତ୍ୟନାରାୟଣ ପାଲା, ଗୁରୁ ପ୍ରଣାଳୀ, ଗ୍ରନ୍ଥ, ନୀଳଗିରି ଧ୍ୟାନ, ଟୀକା ଭାଗବତ ପ୍ରଭୃତି ।

ଉପରେ ଅଣ୍ଟାବଡ଼ ଜଗନ୍ନାଥ ଦାସଙ୍କର ରଚନା ବୋଲି ଯେଉଁ ଓଡ଼ିଆ ବହିର ତାଲିକା ଦିଆଯାଇଛି, ପ୍ରକୃତରେ ହୁଏତ ଏହାର ଅଧାଅଧି ରଚନା ତାଙ୍କର ହୋଇ ନପାରେ । ଅନେକ 'ଜଗନ୍ନାଥ ଦାସ' ନାମକ କବି ବିଭିନ୍ନ ଶତାବ୍ଦୀରେ ଭିନ୍ନ ଭିନ୍ନ ପୁସ୍ତକ ରଚନା କରିଛନ୍ତି, ମାତ୍ର କେଉଁ ରଚନାଟି କେଉଁ ଜଗନ୍ନାଥ ଦାସଙ୍କର, ତାହା ଏପର୍ଯ୍ୟନ୍ତ ଆଲୋଚିତ ହୋଇ ନାହିଁ । ତେଣୁ ଇତିହାସ ଲେଖକମାନେ 'ଜଗନ୍ନାଥ ଦାସ' ନାମ ଦେଖି ଏସବୁ ବହିର ତାଲିକା ଦେଇଯାଇଛନ୍ତି । ଯେଯାହାହେଉ, ସନ୍ଥ ପ୍ରଧାନ ଭକ୍ତପ୍ରବର ପରମ ବୈଷ୍ଣବ ଜଗନ୍ନାଥ ଦାସଙ୍କର ଜୀବନର ସର୍ବ-ଶ୍ରେଷ୍ଠ କୃତିତ୍ୱ ହେଉଛି ସଂସ୍କୃତ ଭାଗବତ ପୁରାଣର ଓଡ଼ିଆ ଅନୁବାଦ । ଜଗନ୍ନାଥଙ୍କ ଭାଗବତକୁ ଓଡ଼ିଶାର ଜନତା ଦେବତା ଜ୍ଞାନରେ ଅଦ୍ୟାବଧି ଗ୍ରାମେ ଗ୍ରାମେ ପୂଜା କରୁଅଛନ୍ତି । ଓଡ଼ିଆ ଘରେ ଭାଗବତ ପଢ଼ା ହେବା ସେହି କାଳରୁ ହିଁ ଏକ ନିତ୍ୟ ନୈମିତ୍ତିକ ଘଟଣା ହୋଇଅଛି । ଭାଗବତ ଗ୍ରନ୍ଥର ପୂଜା ଲାଗି ଗ୍ରାମେ ଗ୍ରାମେ ଭାଗବତ ଘରମାନ ପ୍ରତିଷ୍ଠିତ ହୋଇ ଅଛି । ଓଡ଼ିଶାର ଜନସାଧାରଣଙ୍କ ଲୌକିକ ଜୀବନ ଧାରାରେ ଜଗନ୍ନାଥ ଦାସଙ୍କ ଭାଗବତର ପ୍ରଭାବ ସର୍ବାଧିକ । ପ୍ରତ୍ୟେକ ଓଡ଼ିଆ ହିନ୍ଦୁ ପରିବାରରେ ଲୋକ ମଲାବେଳେ ମୃତ୍ୟୁଶଯ୍ୟା ନିକଟରେ ଭାଗବତ ପଢ଼ି ଶୁଣାଇ ଦିଆଯାଏ । ସନ୍ତାନ ଜନ୍ମ ହେଲେ ମଧ୍ୟ ସୂତିକା ଗୃହରେ ଦ୍ୱାଦଶ ରାତ୍ର ପର୍ଯ୍ୟନ୍ତ ଭାଗବତ ପାଠ କରାଯାଏ । ସେହି କାଳରୁ ଓଡ଼ିଆ ଲୋକଙ୍କର ଜୀବନ-ମରଣର ସାଥୀ ରୂପରେ ଭାଗବତ ପ୍ରତିଷ୍ଠା ଲାଭ କରି ଆସିଅଛି ।

ସୁତରାଂ ଓଡ଼ିଶାର ସାଂସ୍କୃତିକ, ଆଧ୍ୟାତ୍ମିକ, ନୈତିକ ଜୀବନରେ ଭାଗବତ ଏକାନ୍ତ ଉପାଦେୟ ଗ୍ରନ୍ଥ । ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ । ମୂଳ ସଂସ୍କୃତ ମହା-ଭାରତରୁ ବହୁ ଜଟିଳ ତତ୍ତ୍ୱକୁ ସେ ସରଳ ଭାଷାରେ ପ୍ରକାଶ କରିଛନ୍ତି । ଯାହା ଫଳରେ ମୂଳ ଲେଖା ସମ୍ପୂର୍ଣ୍ଣ ରୂପେ ପାଠକ ପାଇଁ କାଠିକ୍ଲେଶ ଥିଲା ବେଳେ ଅନୁବାଦ ହୋଇଛି ଏକାନ୍ତ ଭାବରେ ବୋଧଗମ୍ୟ । ଜଗନ୍ନାଥ ଦାସଙ୍କ ଅନୁବାଦର ବୈଶିଷ୍ଟ୍ୟ ହେଉଛି, ସେ ମୁଖ୍ୟତଃ ମୂଳ ଲେଖାର ଭାବକୁ ଅନୁସରଣ କରିଛନ୍ତି ଓ ଆବଶ୍ୟକ ସ୍ଥଳେ ମଧ୍ୟ ଜଟିଳତତ୍ତ୍ୱମାନଙ୍କୁ

ପରିହାର କରିଛନ୍ତି । ବହୁ ସ୍ଥଳରେ ଗାଉଁଲି ଭାଷାର ବ୍ୟବହାର ଏହାକୁ ଆକର୍ଷଣୀୟ କରିଅଛି । ଏଥିପାଇଁ କବି ବହୁ ଶ୍ରମ ମଧ୍ୟ ସ୍ୱୀକାର କରିଛନ୍ତି । କବି ମୂଳ ମହାଭାରତର ଏଗାର ଗୋଟି ସ୍କନ୍ଧର ଓଡ଼ିଆ ଭାଷାରେ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ସଂସ୍କୃତ ଦ୍ୱାଦଶ ସ୍କନ୍ଧର ଅନୁବାଦ ତାଙ୍କ ପରେ ଅନ୍ୟ ଜଣେ ଓଡ଼ିଆ କବି ମହାଦେବ ଦାସଙ୍କ ଦ୍ୱାରା ଅନୂଦିତ ହୋଇ ଓଡ଼ିଆ ଭାଗବତ ସହିତ ସଂଯୋଜିତ ହୋଇଅଛି ।

ସଂସ୍କୃତ ଭାଗବତର ଦ୍ୱାଦଶ ସ୍କନ୍ଧଟିରେ କେବଳ ଯଦୁ ବଂଶର ପରିଚୟ ଓ ପରିଣାମ ବର୍ଣ୍ଣିତ ହୋଇଥିବାରୁ କବି ସମ୍ଭବତଃ ତାହାର ଓଡ଼ିଆ ବ୍ୟାଖ୍ୟା ପ୍ରଦାନ କରିବା ଲାଗି ବିଶେଷ ଆଗ୍ରହୀ ନଥିଲେ; ମାତ୍ର ଏହା ଓଡ଼ିଆ ଭାଗବତର ବୋଧହୁଏ ଏକ ଅପୂର୍ଣ୍ଣତା ବୋଲି ମନେକରି ମହାଦେବ ଦାସ ସଂସ୍କୃତ ଭାଗବତର ଶେଷ ସ୍କନ୍ଧକୁ ଓଡ଼ିଆରେ ଅନୁବାଦ କରିଥିଲେ । ଭାଗବତ-ବ୍ୟାଖ୍ୟାରେ କବି ଜଗନ୍ନାଥ ଦାସ ଶ୍ରୀଧର ସ୍ୱାମୀଙ୍କ ଟୀକାକୁ ଅନୁସରଣ କରିଛନ୍ତି । କେତେକ ସ୍ଥଳରେ କବି ପ୍ରାସଙ୍ଗିକ ଭାବରେ ଭଗବତ ସ୍ତୁତିମାନ ପ୍ରୟୋଗ କରିଛନ୍ତି, ଯାହା ମୂଳ ଭାଗବତରେ ଦେଖା ଯାଉନଥାଏ । ଏସବୁ କ୍ଷେତ୍ରରେ କବି ବୋଧ ହୁଏ କୃଷ୍ଣ ଚରିତ ବର୍ଣ୍ଣିତ ହୋଇଥିବା ବିଷ୍ଣୁ-ପୁରାଣ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଏଇଥି ଲାଗି ବୋଧହୁଏ ଜଗନ୍ନାଥ ଦାସଙ୍କର ଦୁଇଶହ ବର୍ଷପରେ ଅନ୍ୟ ଜଣେ ବୈଷ୍ଣବ କବି, ପୁରୀ ଜିଲ୍ଲାର ଘନବନ୍ଧୁ ଖାଡ଼ଙ୍ଗା, ସଂସ୍କୃତ ଭାଗବତକୁ ଆକ୍ଷରିକ ଭାବରେ ଓଡ଼ିଆ ଭାଷାରେ ଅନୁବାଦ କରିଅଛନ୍ତି; ମାତ୍ର ତାହା ସତ୍ତ୍ୱେ ଜଗନ୍ନାଥ ଦାସଙ୍କର ଭାଗବତର ଗୌରବ ଓ ପ୍ରତିପତ୍ତି ଜନସାଧାରଣଙ୍କ ଭିତରେ ଅକ୍ଷୁର୍ଣ୍ଣ ଏବଂ ଅବ୍ୟାହତ ରହିଛି ।

ଚୈତନ୍ୟଙ୍କର ଉତ୍କଳ ଆଗମନ ବେଳକୁ ଜଗନ୍ନାଥ ଦାସ ଓଡ଼ିଆ ଭାଷାରେ ଭାଗବତ ରଚନାର ଅନେକ ଦୂର ଅଗ୍ରଗତି କରି ସାରିଥିବାର ଜଣାଯାଏ । ଜଗନ୍ନାଥ ଦାସଙ୍କର ଭାଗବତ ବ୍ୟାଖ୍ୟାରେ ଚୈତନ୍ୟ ଏତେ ବିମୁଗ୍ଧ ହୋଇ ପଡ଼ିଥିଲେ ଯେ, ଭକ୍ତି ଭାବରେ ବିହ୍ୱଳିତ ହୋଇ ସେ ଜଗନ୍ନାଥଙ୍କୁ ଆଲିଙ୍ଗନ କରିଥିଲେ । ତା ପରେ ଜଗନ୍ନାଥ ଦାସ ନିଜର ସ୍ମାର୍ତ୍ତମତ ପରିତ୍ୟାଗ କରି ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିଲେ । ଶାସନୀ ବ୍ରାହ୍ମଣ ପଣ୍ଡିତ ଜଗନ୍ନାଥ ଦାସଙ୍କର ବୈଷ୍ଣବ ଦୀକ୍ଷା ଗ୍ରହଣ ଫଳରେ

ସେ ସମୟରୁ ଓଡ଼ିଶାର ଉଚ୍ଚବର୍ଣ୍ଣର ବୈଦିକ ବ୍ରାହ୍ମଣ ଗୋଷ୍ଠୀରେ ଜଗନ୍ନାଥ ଦାସ ଓ ତାଙ୍କ ଭାଗବତ ପ୍ରତି ଏକ ତାଚ୍ଛଲ୍ୟଭାବ ରହି ଆସିଅଛି ସତ, ମାତ୍ର ଉତ୍କଳୀୟ ଜନତାର ହୃଦୟରେ ଭାଗବତକାର ଜଗନ୍ନାଥ ଦାସଙ୍କର ଆସନ ଉତ୍ତରୋତ୍ତର ସୁପ୍ରତିଷ୍ଠିତ ହୋଇଅଛି । ଜଗନ୍ନାଥ ଦାସଙ୍କର ଭାଗବତର ଆଦର କେବଳ ଓଡ଼ିଆ ଭାଷାଭାଷୀଙ୍କ ମଧ୍ୟରେ ସୀମିତ ହୋଇ ରହିନାହିଁ—ଏହା ଦେବନାଗରୀ ଅକ୍ଷରରେ ଓ ବଙ୍ଗଳା ଅକ୍ଷରରେ ଲିଖିତ ହୋଇ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ସୁଦ୍ଧା ପ୍ରଚଳିତ ଓ ପ୍ରସାରିତ ହୋଇଅଛି । ଏବେ ମଧ୍ୟ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନ ଅଞ୍ଚଳଗୁଡ଼ିକରେ ଜଗନ୍ନାଥ ଦାସଙ୍କ ଭାଗବତର ପାଠ-ପଠନ ଅଦ୍ୟାପି ଅବ୍ୟାହତ ରହିଅଛି ।

ଭାଗବତର ପ୍ରଚାର ଏବଂ ପ୍ରସାର ମୂଳରେ ଏହାର ସରଳ ଓ ସ୍ୱନପୂର୍ଣ ଛନ୍ଦ-ମାଧୁରୀ ନିହିତ । ଏହା ନବାକ୍ଷରୀ ଖ୍ରତବନ୍ଧ—ବୃତ୍ତ ନାମରେ କଥିତ । ଏଥିରେ ଦୁଇଟି ଚରଣରେ ଗୋଟିଏ ପଦ ଏବଂ ପ୍ରତ୍ୟେକ ପାଦ ନଅ ଅକ୍ଷର ବିଶିଷ୍ଟ । କବିଙ୍କ ଭାଷା ପ୍ରୟୋଗ ରୀତିସ ଅଦ୍ୟାପି ଓଡ଼ିଆ ସାହିତ୍ୟରେ ଅନୁକରଣୀୟ ହୋଇ ରହିଅଛି । ଷୋଡ଼ଶ ଶତାବ୍ଦୀର ମଧ୍ୟ-ଭାଗ ବେଳକୁ ଓଡ଼ିଆ ଭାଷା ସଂସ୍କୃତ ଭାଷାଦ୍ୱାରା ପ୍ରଭାବିତ ହେବା ପାଇଁ ଆରମ୍ଭ କରିଥିଲା । ନରସିଂହ ସେଣ ଓ ବିଷ୍ଣୁ ଦାସ ପ୍ରମୁଖ ଷୋଡ଼ଶ ଶତାବ୍ଦୀର କାବ୍ୟକର୍ତ୍ତାମାନଙ୍କର କୃତିରେ ସେହି ଆଭିମୁଖ୍ୟ ପରିଲକ୍ଷିତ ହୋଇଥାଏ । ଜଗନ୍ନାଥ ଦାସ ତାହାର ପ୍ରବର୍ତ୍ତକ ଥିଲେ । ସଂସ୍କୃତରେ ଜଗନ୍ନାଥ ଦାସ ସୁ-ପଣ୍ଡିତ ଥିବାରୁ ତାଙ୍କ ଭାଷା ସଂସ୍କୃତ ଦ୍ୱାରା ପ୍ରଭାବିତ ହୋଇଥିବା ସ୍ୱାଭାବିକ ।

ଭାଗବତରେ ସାରଳା ଓ ବଳରାମଙ୍କକାଳୀନ ଓଡ଼ିଆ ଶବ୍ଦ ସମ୍ଭାର ସହିତ, ସଂସ୍କୃତ ତତ୍ସମ ଶବ୍ଦାବଳୀର ଯେଉଁ ଅପୂର୍ବ ସମନ୍ୱୟ ସାଧିତ ହୋଇଅଛି; ତାହା ଆଦର୍ଶ ଓଡ଼ିଆ ଭାଷା ରୂପେ, ବହୁ ଶତାବ୍ଦୀର ବ୍ୟବଧାନପରେ ସୁଦ୍ଧା ଅପରିବର୍ତ୍ତିତ ରହିଅଛି । ଏଣୁ ଓଡ଼ିଆ ଭାଷାରୀତି ଜଗନ୍ନାଥଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଆଜିସୁଦ୍ଧା, ଜଗନ୍ନାଥ ଦାସଙ୍କ ଭାଷାରୀତି ଅନୁକରଣୀୟ ହୋଇ ରହିଥିଲେ ହେଁ, ଅନ୍ୟମାନଙ୍କର ରଚନାରେ କ୍ୱଚିତ ସେ ପ୍ରକାର

ଉର୍ଦ୍ଧ୍ୱ ସ୍ପୃଷ୍ଟ ସଫଳତା ପୁଣି ସ୍ୱତନ୍ତ୍ରୀକୃତ ମଧ୍ୟରେ ବ୍ୟାପକ ଭାବବ୍ୟଞ୍ଜନା ସମ୍ଭବ ହୋଇଅଛି । ତେଣୁ ଆଧ୍ୟାତ୍ମିକ ଭାବନା ଓ ଦର୍ଶନ ଦୃଷ୍ଟିରୁ କେବଳ ନୁହେଁ, ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବ୍ୟକ୍ତି ଦୃଷ୍ଟିରୁ ମଧ୍ୟ ଭାଗବତର ଏକ ବିଶିଷ୍ଟ ସ୍ଥାନ ରହିଅଛି ।

ଭାଗବତର ଭାଷା ଶୁଦ୍ଧ, ସଂଯତ, ମାର୍ଜିତ ଓ ଅସଂପୂର୍ଣ୍ଣ ଶବ୍ଦାବଳୀରେ ସୁଗଠିତ । ତତ୍ସମ ଶବ୍ଦ ସହିତ ଦେଶଜ ଶବ୍ଦର ବିଲକ୍ଷଣ ସମତା ସମ୍ପାଦନ କବିଙ୍କ ଭାଷାକୁ ଅଧିକ ଶକ୍ତିଶାଳୀ କରିଅଛି । ଆଧୁନିକ ଭାରତରେ ପ୍ରଚଳିତ ଯେକୌଣସି ଲିପିରେ ଓଡ଼ିଆ ଭାଗବତ ଲିଖିତ ହେଲେ ସୁଦ୍ଧା ଅନ୍ୟ ଭାଷାଭାଷୀମାନଙ୍କ ପକ୍ଷରେ ଅବୋଧ ମନେ ହେବ ନାହିଁ । ଅନେକ ସ୍ଥଳରେ ପୁଣି, ଜଗନ୍ନାଥଙ୍କ ଭାଷା କିପରି ବିବର୍ଜିତ ହୋଇଥିବାରୁ ତାହାର ଏହିଭଳି ଶକ୍ତି ପ୍ରକଟିତ ହୋଇଅଛି । ଉଦାହରଣ ସ୍ୱରୂପ—

"ପ୍ରସନ୍ନ ଶ୍ରୀମୁଖ ମଣ୍ଡଳ । ଲୋଚନ ଅମଳ କୋମଳ ॥
ସୁବର୍ଣ୍ଣ କର୍ଣ୍ଣେ କୁଣ୍ଡଳ । ସୁନ୍ଦର ଅଳକା କପୋଳ ॥
ଅମୂଲ୍ୟ ହାର ବକ୍ଷସ୍ଥଳେ । ରତ୍ନ କେୟୂର ବାହୁମୂଳେ ॥
ଅଙ୍ଗଦ ନୂପୁର କଙ୍କଣ । ବିବିଧ ଅଙ୍ଗ ଆଭରଣ ॥
ଭ୍ରୂଭଙ୍ଗ ଅନୁଗ୍ରହ ସୁଖ । ଭ୍ରୂକୁଟୀ କୁଟିଳ ସୁରେଖ ॥"

ବସ୍ତୁତଃ, ଅଲୌକିକ ସାଧନା ଓ ସିଦ୍ଧି ସମ୍ପନ୍ନ 'ଅତିବଡ଼' ରୂପେ କେବଳ ନୁହନ୍ତି, ଜଗନ୍ନାଥ ଦାସ ନୈସର୍ଗିକ କବିତ୍ୱର ଅଧିକାରୀ ରୂପେ, ପ୍ରତି ଓଡ଼ିଆ ପ୍ରାଣରେ ସୁପ୍ରତିଷ୍ଠିତ । ଓଡ଼ିଆ ସାହିତ୍ୟର ଇତିହାସକାର ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି କହନ୍ତି—"ଏହାର କବିତ୍ୱ ନିଶୀଥର ତାରପ୍ଳୁତ ଆକାଶ ପରି ରହସ୍ୟମୟ, ଶିଶିରସ୍ନାତ ସକାଳପରି ସ୍ନିଗ୍ଧ ଓ ନବୀନ, ଗୋଧୂଳିର ସ୍ତିମିତ ଆଲୋକପରି ଉଦ୍ଗୋତ୍ତୀର୍ଣ୍ଣ । ସ୍ୱତନ୍ତ୍ରୀର ରହସ୍ୟମୟତା ମଧ୍ୟରେ ଭାଗବତର ପଦାବଳୀ, ସବୁବେଳେ ସହଜ ବୋଧଗମ୍ୟ ନୁହେଁ । ତଥାପି ଏହାର ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟ ଓ ରହସ୍ୟମୟ କବିତ୍ୱ ମଧ୍ୟରେ ପୂର୍ଣ୍ଣଭାବ ପୁଷ୍ଟି ସାଧିତ ହୋଇଥାଏ ।" ଓଡ଼ିଆ ଜାତିର ଅବଚେତନାରେ ଭାଗବତ ଏପରି ପ୍ରତିଷ୍ଠା ଲାଭ କରିଅଛି ଯେ ଭାଗବତର

ପଦାବଳୀ ଉଦ୍ଧାର କରି, ସବୁ ଯୁକ୍ତି ଓ ବିତର୍କର ଚରମ ସିଦ୍ଧାନ୍ତ ହୋଇଥାଏ । ଉଦାହରଣ ସ୍ୱରୂପ—

"ଆତ୍ମା କୁଶଳେ ସର୍ବସିଦ୍ଧି । ତରିଇ ସଂସାର ଜଳଧି ॥"
ବା
"ଧନ କାର୍ପଣ୍ୟ ସେବାଫଳେ । କିବା ଅସାଧ୍ୟ ମର୍ତ୍ତ୍ୟତଳେ ॥"

ଭାଗବତରେ ଏହି ସବୁ ପଦାବଳୀ କେବଳ ଆବୃତ୍ତି କରିଦେଲେ, ସବୁ ଯୁକ୍ତି ଓ ବିତର୍କର ସର୍ବସମ୍ମତ ସମାଧାନ ରୂପେ ଗୃହୀତ ହୋଇଥାଏ । ବସ୍ତୁତଃ, ଓଡ଼ିଶାରେ ଭାଗବତର ପଦାବଳୀ, ଆଧ୍ୟାତ୍ମିକ ଓ ଅନାଧ୍ୟାତ୍ମିକ ଉଭୟ ପରିସ୍ଥିତିରେ ଯେତେ ଉଦ୍ଧୃତ ହୋଇଥାଏ, ଇଂରାଜୀରେ ବାଇବେଲ ସୁଦ୍ଧା ସେତେ ଉଦ୍ଧୃତ ହୋଇ ନଥାଏ । ବସ୍ତୁତଃ, ଭାଗବତର ପଦାବଳୀ ଆବୃତ୍ତି କରି ଓଡ଼ିଆ ଜାତିର ପ୍ରାଣସତ୍ତା ଯେପରି ତୃପ୍ତ ହୋଇଥାଏ ।

ଭାଗବତର କବିତ୍ୱ ଅନନ୍ୟ ସାଧାରଣ । ଏଥିରେ ଶବ୍ଦ ସଂଯୋଜନା ଏକ ଐନ୍ଦ୍ରଜାଲିକ ବିଭୂତି ଆହରଣ କରିଅଛି । ସ୍ୱଳ୍ପୋକ୍ତି ମଧ୍ୟରେ ଏଥିରେ ଯେଉଁ ରୂପଲୋକ ଓ ଭାବଲୋକ ସୃଷ୍ଟି ହୋଇ ପାରିଛି, ତାହା ସବୁ ବିଚାର ଓ ବିଶ୍ଳେଷଣର ଊର୍ଦ୍ଧ୍ୱରେ ଏକ ଅପୂର୍ବ କାବ୍ୟ ସୁଷମା ସୃଷ୍ଟି କରିଅଛି । ଭାଗବତ ସଂସ୍କୃତ ମହାଭାରତର ଅନୁସରଣରେ ଲିଖିତ ହୋଇଅଛି ସତ, ମାତ୍ର ଏହାର ମୌଳିକତା ଏହାକୁ ଏକ ଅନନ୍ୟ-ସାଧାରଣ ସ୍ୱକୀୟତା ପ୍ରଦାନ କରିଅଛି । ପ୍ରକୃତି, ମନୁଷ୍ୟ ଓ ଈଶ୍ୱର, କବିତ୍ୱର ଭାବୋଚ୍ଛ୍ୱାସରେ ଏଥିରେ ଏକୀଭୂତ ହୋଇ ଭକ୍ତିକୁ ଏକ ଅପୂର୍ବ କାବ୍ୟମୟ କୋମଳତା ପ୍ରଦାନ କରିଅଛି । ପାଠକର ଭାବଲୋକରେ ତାହା କେବଳ ଉପଲବ୍ଧି କରାଯାଇପାରେ; ମାତ୍ର ସମାଲୋଚକର ବୁଦ୍ଧିଗ୍ରାହ୍ୟ ବିଶ୍ଳେଷଣରେ ନୁହେଁ । ଦଶମ ସ୍କନ୍ଧ-ବର୍ଣ୍ଣିତ 'ଗୋପଲୀଳା'ରେ ଶ୍ରୀକୃଷ୍ଣଙ୍କ ଅନ୍ୱେଷଣରେ ବିରହ ସନ୍ତପ୍ତା ଗୋପାଙ୍ଗନାମାନଙ୍କର ଉଦ୍‌ବେଳନ ଏ ସମ୍ପର୍କରେ ଉଦ୍ଧାର କରାଯାଇପାରେ—

"ହେ କୁରୁବେଲି ନାଗେଶ୍ୱର । ଚମ୍ପା ପୁନ୍ନାଗ କନିଅର ॥
ତୁମ୍ଭ ପୀରତି ଯେନ୍ତେ ଥିବ । ଗୋବିନ୍ଦ ଗଲେ କି ଏ ପଥେ ॥"

× × × ×

"ମାଳତୀ, ମଲ୍ଲୀ ଜାଇ ଯୁଈ । ତୁମ୍ଭେ ଦେଖିଲ ଭବଗ୍ରାହୀ ॥
କୃଷ୍ଣର ନଖଛତ ଲାଗି । ନପୁଣ ହୋଇଛ ସୁଆଗୀ ॥"

ଭାଗବତର ପ୍ରକୃତି, ଶୃଙ୍ଗାରକ୍ରୀଡ଼ିତା ନାୟିକା ବା କାମଦଗ୍ଧ ନାୟକର ଉଦ୍ଘାଟନ ପୃଷ୍ଠଭୂମି ରୂପେ 'ସୁନ୍ଦର'ର ଅଭିବ୍ୟକ୍ତି ପାଇଁ ଏହା ଯେପରି ବର୍ଣ୍ଣିତ ହୋଇଅଛି, ତାହା ଯଥାର୍ଥରେ ଅନୁପମ । ବସ୍ତୁତଃ, ଭାଗବତରେ ଈଶ୍ୱର ଓ ପ୍ରକୃତି, ସୌନ୍ଦର୍ଯ୍ୟର ମହାଲିଙ୍ଗନ ମଧ୍ୟରେ ରମଣୀୟ ଅବସ୍ଥା ପ୍ରାପ୍ତ ହୋଇଅଛି—

"ଜୀମୂତଗଣ ଯାର କେଶ । ସନ୍ଧ୍ୟା ଯାହାର ନିଜ ବାସ ॥
ପ୍ରକୃତି ହୃଦୟ ଯାହାର । ଯାହାର ମନ ନିଶାକର ॥
ବ୍ୟଞ୍ଜନ ଶକ୍ତି ଯା ମହିମା । ଅନ୍ତଃକରଣ ରୁଦ୍ରସୀମା ॥

ସମଗ୍ର ଭାଗବତ ଏହିପରି ଅନବଦ୍ୟ କବିତ୍ୱରେ ପରିପୂର୍ଣ୍ଣ ହୋଇ-ଅଛି । ଭକ୍ତମାନଙ୍କର ଚନ୍ଦନ ଛିଟାତଳେ, ପୁଣି ବଳ୍ମୀକମାନଙ୍କର ଗର୍ଭରେ, ଭାଗବତର ଅନନ୍ଦ୍ୟ ସୁନ୍ଦର କବିତ୍ୱ ଲୁପ୍ତ ହୋଇଅଛି । ତାହାର ପୁନରୁଦ୍ଧାର ହୋଇପାରିଲେ, ସାଙ୍ଗଜଗତ ସାରସ୍ୱତ ଉପବନରେ, ଏହା ପୁଣି ଅମ୍ଳାନ କମଳ ପରି ପ୍ରସ୍ଫୁଟିତ ହୋଇ ରସାମୋଦିମାନଙ୍କୁ ନନ୍ଦିତ କରିପାରିବ । ଭାଗବତର କବିତ୍ୱ ଆଲୋଚନା ପ୍ରସଙ୍ଗରେ, ଏଥିରେ ଉପମା ଓ ଉପମେୟର ବିନ୍ୟାସରେ ଯେଉଁ ବିଚିତ୍ର ରୂପକଳ୍ପନା ପରିଲକ୍ଷିତ ହୁଏ, ତାହା ସମଗ୍ର ମଧ୍ୟଯୁଗୀୟ ସାହିତ୍ୟରେ ମଧ୍ୟ ବିରଳ; ଯଥା—

"ଜୀବନ ବିନୁ ବନେ କ୍ଷୀଣ । ଦରିଦ୍ର କୁଟୁମ୍ବ ଯେସନ ॥
ମଣ୍ଡୂକେ ମେଘନାଦ ଶୁଣି । ଗର୍ଜନ୍ତି ଆବୋରଣ ପାଣି ॥
ଉଜନ୍ମ ଅନ୍ତେ ବିପ୍ରଜନେ । କରନ୍ତି ବେଦଧ୍ୱନି ଯେହ୍ନେ ॥
ତରୁଏ ନବ ପ୍ରାପ୍ତେ ହୋଇ । ରାଜାଙ୍କ ପ୍ରାପ୍ତେ ବିଶେ ମହୀ ॥"

ଭାଗବତର ଭାଷା ସଂସ୍କୃତ-ପ୍ରଭାବିତ ହେଲେହେଁ, ଏହାର ଭାଷାକୁ ଭାବଦ୍ୟୋତକ କରିବା ଉଦ୍ଦେଶ୍ୟରେ ଏଥିରେ ନୂତନ ଶବ୍ଦ ଗଠନରେ ଯେଉଁ କୁଶଳତା ପ୍ରକାଶ ପାଇଅଛି, ତାହା ଜଗନ୍ନାଥ ଦାସଙ୍କ ବଳିଷ୍ଠ ଆତ୍ମପ୍ରତ୍ୟୟ ସମ୍ପନ୍ନ କବିତ୍ୱର ପରିଚୟ ଦିଏ; ଉଦାହରଣ ସ୍ୱରୂପ—'ଖର ଗମିଲେ ଖରପଥେ', 'ଦେବ ହେଳନ ନଷ୍ଟେ କରି', 'ସୁବର୍ଣ୍ଣ ସୂତ୍ରେ ସୁଖଞ୍ଜିଣି', 'ଏହିଟି ଜାଣି ଶିବପଥ ।"

ଶବ୍ଦ ଗଠନରେ ଏକପ୍ରକାର ନମନୀୟତା, ଭାଗବତର ପଦା-ବଳୀକୁ କୋମଳ କରିବା ସଙ୍ଗେ ସଙ୍ଗେ ଭାବଦ୍ୟୋତକ କରିପାରିଅଛି ।

କଳା କୌଣସି କାଳର ନୁହେଁ । ଏହା ଯୁଗାବଧି ପାଇଁ ପ୍ରେରଣାର ଗନ୍ତାଘର । ସବୁଯୁଗକୁ ଏହା ଦେଇଥାଏ ଏକ ଚିରନ୍ତନ ସତ୍ୟ—ଯାହା ଯାହା ହୁଏ ସାର୍ବଜନୀନ ଓ ସାର୍ବମନୀନ । ଏହି ଚିରନ୍ତନ ସତ୍ୟ ପ୍ରଚୁର ପାଇଁ ସାହିତ୍ୟରେ ଏକ ଆଦର-ସମସ୍ତ ପରିବର୍ତ୍ତନ ମଧ୍ୟରେ, ତାର ସ୍ଥାନ ଏତେ ଉଚ୍ଚରେ ଥାଏ । ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଦାସଙ୍କ ଭାଗବତ ଏହିଭଳି ଏକ ଚିରନ୍ତନ ଗ୍ରନ୍ଥ । ଏଥିରେ ବହୁ ଚିରନ୍ତନ ଓ ସାର୍ବଜନୀନ ପଦାବଳୀ ରହିଅଛି—ଯାହା ତାହାର ଲୋକପ୍ରିୟତାର ଅନ୍ୟତମ କାରଣ । ଜଗନ୍ନାଥ ଦାସଙ୍କ ଭାଗବତର ସୂକ୍ତିଗୁଡ଼ିକ ଓଡ଼ିଆ ସାହିତ୍ୟର ପ୍ରବଚନ ହୋଇଗଲେଣି । ଶହ ଶହ ବର୍ଷଧରି ଏହି ସୂକ୍ତିଗୁଡ଼ିକ ଓଡ଼ିଆ ସାମାଜିକ ଜୀବନକୁ ନିୟନ୍ତ୍ରିତ କରୁଅଛି ।

ଓଡ଼ିଶାବାସୀଙ୍କ ଆଧ୍ୟାତ୍ମିକ ଚେତନା ପଛରେ ରହିଛି ଏହି ଅମୂଲ୍ୟ ସୂକ୍ତିଗୁଡ଼ିକର ଅତୁଳନୀୟ ପ୍ରଭାବ । କଥାବାର୍ତ୍ତା, ବିଭିନ୍ନ ସାମାଜିକ ନୀତି ବା ନିୟମ, ଉପଦେଶ ତଥା ସଭାସମିତିରେ ବକ୍ତୃତା ଓ ଅନ୍ୟାନ୍ୟ ସାହିତ୍ୟିକ ଆଲୋଚନାରେ ଏହି ମତବାକ୍ୟ ଓ ସୂକ୍ତିଗୁଡ଼ିକୁ ସ୍ୱତଃ ନିଃସର ଆସି ପ୍ରସର ଯାଇଥାଏ । ପ୍ରାଚୀନ ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ଏଇଥି ପାଇଁ ଭାଗବତ ଥିଲା ପ୍ରଧାନ ପାଠ୍ୟ ବିଷୟ । ପିଲା ଅକ୍ଷର ଶିଖିବା ପରେ ପରେ ଭାଗବତ ପଢ଼ିବା ଥିଲା ଏକ ଦୈନନ୍ଦିନ ରୀତି । ଗ୍ରାମ କୃଷକ ପରିବାରର ଏହା ହେଲା ଅତ୍ୟୁଚ୍ଚ ଓ ମହାନ ଶିକ୍ଷାଗ୍ରନ୍ଥ । ଏହି ପ୍ରକାର ଭାଗବତ ସଂସ୍କୃତି ସମଗ୍ର ଭାରତୀୟ ସଭ୍ୟତାରେ ବିରଳ । ଆଜିର ଜଡ଼ବାଦୀ ବିଂଶ ଶତାବ୍ଦୀରେ ମଧ୍ୟ ପୂରାପୂରି ଏହି ପ୍ରାଚୀନ ସଂସ୍କୃତି ଓଡ଼ିଶାରୁ ଲୋପପାଇ ଯାଇନାହିଁ । ଭାଗବତର ଏହି ସାର୍ବଜନୀନ ପଦାବଳୀର କେତେକ ଉଦାହରଣ ଉଦ୍ଧାର କରାଯାଇ ପାରେ; ଯଥା—

“ସତ୍ୟ ପରମାନନ୍ଦ ହରି । ଯାହା ଭାବିଲେ ଭବୁ ତରି ॥
ତାର ଚରଣେ ନିତ୍ୟେ ଧ୍ୟାନ । କରି ତରନ୍ତି ସୁଜ୍ଞଜନ ॥
କଳି ଆଗମେ ପ୍ରାଣୀଙ୍କର । ଏମନ୍ତ ହୋଇବ ବେଭାର ॥
ଶ୍ରଦ୍ଧା ଛୁଡ଼ିବେ ଅନ୍ତଦୂର । ଦୁର୍ବଳ ହୋଇବ ଶରୀର ॥
ବୁଦ୍ଧି ହୋଇବ ଲୋଭେ ଗ୍ରାସ । ସ୍ୱଭାବେ ଅଳପ ଆୟୁଷ ॥
କୃଷ୍ଣଙ୍କ ଗୁଣଗ୍ରାମ ଯେତେ । ପ୍ରାଣୀଙ୍କି କହି ଭାଟବିବେ ॥

ଝଷପୁ ଖୁଁସେ ପ୍ରାଣୀ ମରେ । ଆତ୍ମାର ଗତି ନ ସୁମରେ ॥
ସେଁ ଯେବେ ଭାଗବତ ଶୁଣି । ତରିବ ଭବ ତରଙ୍ଗିଣୀ ॥
ଯାହାଙ୍କୁ ରଖିବେ ଅନନ୍ତ । କି କରି ପାରେ ବଳବନ୍ତ ॥
ତୁ ନାଥ ଜଗତ ଜୀବନ । ତୁ ଅକିଞ୍ଚନ ଧନ ଜନ ॥
କାଳର ବଂଶ ଏ ଜଗତ । ପ୍ରାଣୀଏ କାଳର ଆୟତ୍ତ ॥
ଜୀବନ ବନ୍ଧ ଏ ଜଗତେ । ସେ ହରି କଥାମୃତ ନଚ୍ୟେ ॥
ଯେ କରେ ଜୀବନ ନିଷ୍ଫଳ । ହାନ ତାହାର ଆତ୍ମବଳ ॥
ଦଣ୍ଡିବା ଶକ୍ତି ଯାର ଥାଇ । ସେ ପୁଣି କ୍ଷମା ଆଚରଇ ॥
ମଞ୍ଚାରୁ ପଡ଼ ମାମୁଁ ମଲ । ମୋତେ ତ ଦଇବ ରଖିଲା ॥
ଆତ୍ମ ପ୍ରଶଂସା ଯେ କରନ୍ତି । ସେ ପ୍ରାଣୀ ନରକେ ପଡନ୍ତି ॥
ଯହିଁ ଆନେକ ଲୋକ ମିଳି । ଅଦର୍ଶ୍ୟ ଜପୂଜଇ କଳି ॥
ସାକ୍ଷାତ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନ ମଣିବ ନର ॥
ମର୍ତ୍ତ୍ୟେ ମନୁଷ୍ୟ ଦେହ ବହି । ଦେବତା ହେଲେ ହେଁ ମରଇ ॥
ଆପଣା ହସ୍ତେ ଜନ୍ମାଇଛନ୍ତି । କେ ତାର ଅଛୁ ପ୍ରତିବାଦୀ ॥
ଏଣୁ ଦୁର୍ଜନ ସଙ୍ଗେ ଦୋଷ । କରେ ସକଳ ଜ୍ଞାନ ଧ୍ୱଂସ ॥"

ଏହିପରି ଶହ ଶହ ଅମୂଲ୍ୟ ମଣିଖଣ୍ଡପରି ଭାଗବତର ଅଜସ୍ର ସୁକ୍ତିରତ୍ନ ମାତିରହି ପୂରି ରହିଛି, ଯାହା ଯୁଗାବଧି ସୃଷ୍ଟିର ଚିରନ୍ତନ ସତ୍ୟରୂପେ ଉଦ୍‌ଘୋଷିତ । ବହୁନ୍ନ ସାଧୁମହାତ୍ମାଙ୍କର ବାଣୀପରି ଏହି ସରଳ ଚିରନ୍ତନ ବାଣୀଗୁଡ଼ିକ ଓଡ଼ିଶାର ଆଧ୍ୟାତ୍ମିକ ପରମ୍ପରାକୁ ଓ ମାର୍ମିକ ଚେତନାକୁ ସୁଦୃଢ଼ କରିଛି । "ସକଳ ଶାସ୍ତ୍ର ଭାଗବତ, ଅଭ୍ୟାସ କରୁଥିବ ନିତ୍ୟ ।"—ଏହା ଥିଲା ପ୍ରାଚୀନ ଓଡ଼ିଶାର ଧର୍ମ, ସାହିତ୍ୟ ଓ ସଂସ୍କୃତି । ଭାଗବତ ପୀଠ ହିଁ ଜଗନ୍ନାଥ ପୀଠ—ଭାଗବତ ହିଁ ଜଗନ୍ନାଥ ଧର୍ମ । ଭାଗବତରେ ଯେଉଁ ଭଗବତ୍‌ପ୍ରାଣତା ଓ ସାମ୍ୟ ମୈତ୍ରୀର ଗାନ ରହିଛି ତାହା ଆମର ଜାଗ୍ରତ୍ପୂତାରେ ହିଁ ହୋଇଛି ମୂର୍ତ୍ତିମନ୍ତ । ଆମର ଭାଗବତ ଓ ଜଗନ୍ନାଥ ଏହି ଦୁଇଟି ବିରାଟ ସାଂସ୍କୃତିକ ଉତ୍ସବରେ ଏହି ଜାତିର ମହନୀୟତା ଓ କମନୀୟତା ପ୍ରତିଫଳିତ ହୋଇଛି ।

ଭାଗବତ ସମ୍ବନ୍ଧରେ ଆଉ କେତୋଟି କଥା ଏଠାରେ ଉଲ୍ଲେଖ କରିବା ଅତ୍ୟନ୍ତ ପ୍ରାସଙ୍ଗିକ ମନେହୁଏ । ମୂଳ ଗ୍ରନ୍ଥ ପାରୁ ଜଗନ୍ନାଥଙ୍କ

ରଚନାର ବହୁ ବ୍ୟତିକ୍ରମ ମଧ୍ୟରେ ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ହେଉଛି 'ରାସଲୀଳା'ରେ ବୃନ୍ଦାବତୀ ନାମ୍ନୀ ଜଣେ ଗୋପାଙ୍ଗନାର ଆବିର୍ଭାବ୍। ମୂଳ ଗ୍ରନ୍ଥରେ ରାସଲୀଳା ପ୍ରସଙ୍ଗରେ ଏହି ଗୋପାଙ୍ଗନାଟିକୁ କେବଳ 'ବଧୂ' ନାମରେ ନାମିତ କରାଯାଇଛି । ପୁଣି, ସମଗ୍ର ଭାଗବତର ରାସଲୀଳା ପ୍ରସଙ୍ଗରେ ଆଲୋଚ୍ୟ କବି ଜଗନ୍ନାଥ ଦାସ କେବଳ ବୃନ୍ଦାବତୀଙ୍କୁ ହିଁ ପ୍ରାଧାନ୍ୟ ଦେଇଛନ୍ତି; ଅଥଚ ରାଧାର ନାମୋଲ୍ଲେଖ ପର୍ଯ୍ୟନ୍ତ କରିନାହାନ୍ତି। ଶ୍ରୀକୃଷ୍ଣ ବୃନ୍ଦାବତୀର ଭକ୍ତି ଭାବରେ ଅନୁପ୍ରାଣିତ ହୋଇ ତାହାକୁ ସଙ୍ଗରେ ନେଇ ରାସଲୀଳାରୁ ଅନ୍ତର୍ଦ୍ଧାନ ହୋଇଗଲେ । କୃଷ୍ଣଙ୍କର ଏକାନ୍ତ ସାନ୍ନିଧ୍ୟ ଲଭିବାର ସୁଯୋଗ ପାଇ ବୃନ୍ଦାବତୀ ମନରେ ଗର୍ବଭାବ ଜାତ ହେବାରୁ ଶ୍ରୀକୃଷ୍ଣ ତାକୁ ନିର୍ଜନରେ ପରିତ୍ୟାଗ କରିଥିବା ବିଷୟଟି କବି ଏହିପରି ବର୍ଣ୍ଣନା କରିଛନ୍ତି—

"ଗୋପୀଏ ବୃନ୍ଦାବତୀ ନାମେ । ଥିଲେ ସେ କୃଷ୍ଣ ସନ୍ନିଧାନେ ॥
ପୂର୍ବେ ସେ ଅଛି ତପ କରି । ଗୋବିନ୍ଦ ତାରି ଭୁଜ ଧରି ॥
ଛନ୍ଦିଲେ ଗୋପୀକାର ମନ । କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ ॥"

ସ୍ପଷ୍ଟ, ଶ୍ରୀ ଜଗନ୍ନାଥଙ୍କର ବୁଦ୍ଧାବତାର ବର୍ଣ୍ଣନା ପ୍ରସଙ୍ଗରେ କବି ଭଗବାନ ବୁଦ୍ଧଙ୍କର ପ୍ରଶସ୍ତି ଯେପରି ବର୍ଣ୍ଣନା କରିଅଛନ୍ତି, ସେଥିରୁ ଉତ୍କଳୀୟ ବୈଷ୍ଣବ ଧର୍ମଧାରାର ବୈଶିଷ୍ଟ୍ୟ ଓ ଅନୁପ୍ରାଣିତ କବି ଜଗନ୍ନାଥ ଦାସଙ୍କର ଉତ୍କଳୀୟତା ହିଁ ପ୍ରମାଣିତ ହୋଇଅଛି । ଆହୁରି ମଧ୍ୟ ସଂସ୍କୃତ ଭାଗବତରେ ଥିବା କେତେକ ଆଖ୍ୟାନକୁ କବି ଭିନ୍ନ ଭାବରେ ଚିତ୍ରଣ କରି-ଥିବା ଜଣାଯାଏ । ଜଗନ୍ନାଥଙ୍କର ଅବଧୂତ ଯେଉଁ ଚବିଶ ଗୁରୁ କରିଥିଲେ, ସେମାନଙ୍କ ମଧ୍ୟରେ ଶାଳୀଭଞ୍ଜନକାରୀ କୁମାରୀ ସମ୍ପର୍କରେ ଜଗନ୍ନାଥ ଦାସଙ୍କ ବର୍ଣ୍ଣନାଟି ମୂଳଠାରୁ ବହୁ ପରିମାଣ ଭିନ୍ନଥିବା ଦେଖାଯାଏ ।

ଜଗନ୍ନାଥ ଦାସଙ୍କ ଭାଗବତରେ ଯେଉଁ ଧର୍ମ ମତବାଦ ଓ ଦାର୍ଶନିକ ସିଦ୍ଧାନ୍ତର ପ୍ରତିଫଳନ ଘଟିଅଛି, ତାହାର ଯଥାଯଥ ବିଚାର ଏପର୍ଯ୍ୟନ୍ତ ହୋଇ ନଥିଲେ ହେଁ, କେତେକଙ୍କ ମତରେ ଜଗନ୍ନାଥ ଦାସ 'ବିଶିଷ୍ଟା ଦ୍ୱୈତବାଦୀ' ଥିଲେ ବୋଲି ଜଣାଯାଏ । ଓଡ଼ିଆ ଭାଗବତରେ କବି ଭକ୍ତି ସାଧନାର ପରିଚୟ ବ୍ୟାପକ ଭାବରେ ପ୍ରଦାନ କରିବା ସଙ୍ଗେ ସଙ୍ଗେ କୃଷ୍ଣ ଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଉଦାହରଣ ସ୍ୱରୂପ—

"ତାହାରି ନାମ ଉଚ୍ଚାରିଲେ । ଭ୍ରମ ନଥାଇ ଆତ୍ମା ଭୁଲେ ॥
କହିଲ ଏ ପରମ ତତ୍ତ୍ୱ । କୃଷ୍ଣ ସେବକ ବଳବନ୍ତ ॥
ରେ ମନ କୃଷ୍ଣ ଆଶ୍ରେ କର । ସର୍ବ ଭୟରୁଁ ହେବୁ ପାର ॥"

ଭଗବତ୍ ଭକ୍ତିର ପରମତତ୍ତ୍ୱ ନାମ ଉଚ୍ଚାରଣରେ ନିହିତ ଅଛି ବୋଲି କବି ଏ ଦେଶର ସାଧାରଣ ଜନତାକୁ ବାର ବାର ଉଦ୍‌ବୋଧିତ କରିଅଛନ୍ତି । ଯଥା—

"ଗୋବିନ୍ଦ ନାମ ହେଳା କରି । ହେଲେ ତରିବ ଭବବାରି ॥
ଦ୍ୱିଜ ଜଗନ୍ନାଥ ବୋଲଇ । ନାମରେ ସର୍ବସିଦ୍ଧି ହୋଇ ॥"

କବି ଭାବରେ ଜଗନ୍ନାଥ ଦାସ ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ଧାରାକୁ ଯେପରି ପ୍ରଭାବିତ କରି ଯାଇଅଛନ୍ତି, ଭଗବଦ୍ ଭକ୍ତି ମାର୍ଗରେ ଉତ୍କଳୀୟ ଜନତାକୁ ସେହିପରି ସଙ୍ଗଠିତ କରି ଉତ୍କଳୀୟ ବୈଷ୍ଣବଧର୍ମର ଆନ୍ଦୋଳନକୁ ଏକ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଅଭିମୁଖ୍ୟ ପ୍ରଦାନ କରିଅଛନ୍ତି । କବିଙ୍କ ଭାଗବତ ଗ୍ରନ୍ଥର ଜନ୍ମୋତ୍ସବ ଏବେ ବି ଓଡ଼ିଶାର ଗ୍ରାମେ ଗ୍ରାମେ ସାଧାରଣ ଜନତା ପାଳନ କରୁଛନ୍ତି ।

ଷାଠିଏ ବର୍ଷ ବୟସରେ କବି ଜଗନ୍ନାଥ ଦାସ ଇହଧାମ ତ୍ୟାଗ କରିଥିବାର ଜଣାଯାଏ । ଓଡ଼ିଆ ଭାଗବତର ଶ୍ରଦ୍ଧାଳୁ ରଚୟିତା ଭାବରେ ଜଗନ୍ନାଥ ଦାସଙ୍କର ସମ୍ମାନିତ ଆସନ ଓଡ଼ିଆ ଲୋକଙ୍କର ଅନ୍ତରରେ ଆଜିଯାଏ ସୁରକ୍ଷିତ ରହିଅଛି । ଅତୀତରେ ଏ ଦେଶର ନିରକ୍ଷର ଗ୍ରାମୀଣ ଜନତା କେବଳ ଜଗନ୍ନାଥ ଦାସଙ୍କ ଭାଗବତ ପାଠକରି ସାକ୍ଷର ହେଉଥିଲେ । ଗାଁ ଗହଳରେ ଭାଗବତ ଟୁଙ୍ଗୀ ପ୍ରତିଷ୍ଠିତ ହୋଇ ଗ୍ରାମ୍ୟ ବିଚାର ଓ ହାନିଲାଭର ମୀମାଂସା ଅତିଥି ସେବା ଓ ଅବଧାନମାନଙ୍କର ଚାଟଶାଳୀ ରୂପରେ ବ୍ୟବହୃତ ହୋଇ ଆସୁଥିଲା । କାଳର ପ୍ରଭାବରେ ଓଡ଼ିଆ ଜାତିର ଜୀବନଧାରାରେ ବହୁ ବିପର୍ଯ୍ୟୟ ଦେଖା ଦେଇଅଛି, କିନ୍ତୁ ଭାଗବତର ପ୍ରଭାବ ଜନସାଧାରଣଙ୍କ ମଧ୍ୟରୁ ଆଦୌ ଲୋପ ପାଇନାହିଁ । ଏବେବି ଓଡ଼ିଆଙ୍କ ମୁଖରୁ ଭାଗବତର ବାଣୀ, ନ୍ୟାୟ ଅନ୍ୟାୟରେ, ଜନ୍ମ-ମୃତ୍ୟୁରେ, ଏପରିକି ଜୀବନର ପ୍ରତ୍ୟେକ ଘଟଣାରେ ଭାଗବତର ଆଧ୍ୟାତ୍ମିକ ବାଣୀ ଓଡ଼ିଆ ଜୀବନରେ ଆଧ୍ୟାତ୍ମିକ ଭାବ ସଙ୍କେତରେ ଶାନ୍ତି-ଲାଭର ପରମ ନିର୍ଦ୍ଦେଶକ ହୋଇଅଛି—

"ମୋ ଭାବେ ଚିତ୍ତ ପାର ନାହିଁ । ସଂସାରେ ତରନ୍ତି ସେହି ॥
କୃଷ୍ଣ ଚରିତ ଭାଗବତ । କହଇ ବିପ୍ର ଜଗନ୍ନାଥ ॥"

ଓଡ଼ିଶାର ଜାତୀୟ ଜୀବନ ତଥା ସାହିତ୍ୟର ଇତିହାସରେ ଭାଗବତର ସ୍ଥାନ, ପର୍ଯ୍ୟାପ୍ତ ଭାବରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଭାଗବତର ବହୁ ପଦ, ସଦୁକ୍ତି ବା ସୁଭାଷିତ ଭାବରେ ଓଡ଼ିଶାର ଜନ-ସମାଜରେ ଜୀବନର ବହୁ ଦୈନନ୍ଦିନ ପରିସ୍ଥିତିରେ ଉଚ୍ଚାରିତ ହୋଇଥାଏ । ଓଡ଼ିଶାର ଜାତୀୟ ଚରିତ୍ର ଗଠନ କରିବାରେ ଏହା ଏକ ନିର୍ଭର ଯୋଗ୍ୟ ଭିତ୍ତିଭୂମି ନିର୍ମାଣ କରିଅଛି । ଓଡ଼ିଶାର ଜନସମାଜରେ ଭାଗବତର ଲୋକ-ପ୍ରିୟତା ଓ ସ୍ଥାନ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏହି ମହାନ ଗ୍ରନ୍ଥର ପ୍ରଭାବରେ ଓଡ଼ିଶାରୁ ଲୋପପାଇଥିଲା ଜୈନ, ବୌଦ୍ଧ, ଶୈବ, ଶାକ୍ତ ପ୍ରଭୃତି ବହୁ ପ୍ରତିଷ୍ଠିତ ଧାର୍ମିକ ସମ୍ପ୍ରଦାୟ—କେବଳ ହିଁ ରହିଅଛି ଜଗନ୍ନାଥ ମନ୍ଦିର ତୁଲ୍ୟ ଭାଗବତର ଆଶ୍ରୟ, ଅବଶ୍ୟ ଭାଗବତ ସ୍ତମ୍ଭ । ଯେଉଁଠି ଦେଖିବ ସେଠାରେ କେବଳ ଭାଗବତ ପାରାୟଣ, ଭାଗବତ ଜନ୍ମ, ହରିହାଟ, ଦାଣ୍ଡି ଭାଗବତ, ହରିଜନ୍ମ, ଭାଗବତ ପ୍ରତିଷ୍ଠା, ଶରଦରାସ ଓ ବସନ୍ତରାସ—ସବୁଥିରେ ଏହି ଭାଗବତ । ଓଡ଼ିଆ ଶିଶୁର ଜନ୍ମରେ ଭାଗବତ, ତା'ର କର୍ମମୟ ଜୀବନର ପ୍ରତ୍ୟେକ ସନ୍ଧ୍ୟାରେ ଭାଗବତ ଏବଂ ଶେଷନିଃଶ୍ୱାସ ସମୟରେ ମଧ୍ୟ ଏହି ଭାଗବତ ଗତ ଚାରି ପାଞ୍ଚଶହ ବର୍ଷ ଧରି ଏହି ଜାତିର ସାମାଜିକ ଓ ଧାର୍ମିକ ଭାବଧାରାକୁ ନିୟନ୍ତ୍ରିତ କରି ଆସୁଅଛି ।



# ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ

ଶ୍ରୀ ଦୁଃଖୀଶ୍ୟାମ ମହାପାତ୍ର

ବୈଷ୍ଣବକବି ଜଗନ୍ନାଥ ଦାସ ଥିଲେ ପଞ୍ଚସଖା ଯୁଗର ଶ୍ରେଷ୍ଠ ସାଧକ । ତାଙ୍କ ରଚିତ ଶ୍ରୀମଦ୍ ଭାଗବତ ଗ୍ରନ୍ଥ ଯାହା ସଂସ୍କୃତ ଭାଷାରୁ ଅନୁବାଦିତ ତାହା ଓଡ଼ିଆ ଜାତିର ପ୍ରାଣରେ ଧର୍ମ, ଦର୍ଶନ ନୈତିକତା ଓ ସାଙ୍ଗିତିକତା ଯେ ଭରିଦେଇଛି ଏଥିରେ ଟିକେ ହେଲେ ସନ୍ଦେହ ନାହିଁ । ଷୋଡ଼ଶ ଶତାବ୍ଦୀର ଧର୍ମଧାରଣାକୁ ନିୟନ୍ତ୍ରିତ କରିଛି ଶ୍ରୀମଦ୍ ଭାଗବତ । ଏହି ଗ୍ରନ୍ଥ ଓଡ଼ିଆ ଜାତିର ଏକ ପୂର୍ଣ୍ଣାଙ୍ଗ ବେଦ କହିଲେ ଠିକ୍ ହେବ । ଶ୍ରୀମଦ୍ ଭାଗବତ ଜନମାନସକୁ ମନ୍ଥନ କରି ଏକ ଅପୂର୍ବ ପରିବେଶ, ଶାନ୍ତି ଓ ଆନନ୍ଦ ଭରିଦେବା ସହିତ ପ୍ରାଣକୁ ପ୍ରେମରସରେ ବିଧୌତ କରିଛି । ଭାଗବତ ବ୍ୟତୀତ ସେ ଅନେକଗୁଡ଼ିଏ ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ଯଥା—ଶୂନ୍ୟଭାଗବତ, ତୁଳାଭିଣା, ଅର୍ଥକୋଇଲି, ଗଜସ୍ତୁତି, ମୃଗୁଣୀ ସ୍ତୁତି, ଗଜନିସ୍ତାରଣ ଇତ୍ୟାଦି । ଏହି ରଚନାଗୁଡ଼ିକ ମଧ୍ୟରେ ଭାଗବତ ହିଁ ଶ୍ରେଷ୍ଠ ଗ୍ରନ୍ଥ । ଏ ରଚନାରେ ଯେଉଁ କବିତ୍ୱ, ପାଣ୍ଡିତ୍ୱ ପ୍ରତିଭା ଓ ଦର୍ଶନର ପରିପ୍ରକାଶ ଘଟିଛି ତାହା ଅନ୍ୟତ୍ର ଦୃଷ୍ଟିଗୋଚର ହୁଏନାହିଁ ।

ଓଡ଼ିଆ ଶ୍ରୀମଦ୍ ଭାଗବତ ଏ ଜାତିର ଭାଷା-ଭଣ୍ଡାରକୁ ପୁଷ୍ଟିତ କରିଥିଲା । ଭାଗବତ ଥିଲା ଅପାଠୁଆ ନିରକ୍ଷର ପଲ୍ଲୀବାସୀର ଚକ୍ଷୁସଦୃଶ ଗ୍ରନ୍ଥ । ଏହି ଗ୍ରନ୍ଥରୁ ଭଲମନ୍ଦ, ହିତ ଅହିତ, ଧର୍ମ ଅଧର୍ମ କଥା ଅବଗତ ହୋଇ ଓଡ଼ିଶାବାସୀ ନିଜ ସମାଜକୁ ଶୃଙ୍ଖଳିତ କରୁଥିଲେ ।

ପଞ୍ଚସଖା ଯୁଗକୁ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ଯୁଗ ବୋଲି କୁହାଯାଏ । ଏହି ସମୟର ସାମାଜିକ, ରାଜନୈତିକ, ଅର୍ଥନୈତିକ ଆଧାରରେ ବିଚାର କଲେ ଏହା ଥିଲା ସମୟର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରେ । ଏହି ସମୟର ସାଧକମାନେ ଗଭୀର ସଂସ୍କୃତ ଜ୍ଞାନ ଲାଭକରି ନିଜର ପାଣ୍ଡିତ୍ୟ ବଳରେ ସେଗୁଡ଼ିକୁ ଅନୁବାଦିତ କରିବାଦ୍ୱାରା ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ରୂପ ନେଇଥିଲା । ପଞ୍ଚମହାପୁରୁଷ ପଞ୍ଚସଖା ସଂସ୍କୃତ ଭାଷାରୁ ଅନୁବାଦ କ୍ଷେତ୍ରରେ ଅଗ୍ରଣୀ ଥିଲେ । ଏହି ପଞ୍ଚସଖାଙ୍କ ମଧ୍ୟରେ ଥିଲେ ମତ୍ତବଳରାମ ଦାସ, ଅତିବଡ଼ ଜଗନ୍ନାଥ ଦାସ, ଯଶୋବନ୍ତ ଦାସ, ଶିଶୁ ଅନନ୍ତ ଦାସ ଓ ଅଚ୍ୟୁତାନନ୍ଦ ଦାସ । କେତେକ ସମାଲୋଚକଙ୍କ ମତରେ ଏହି ପଞ୍ଚସଖାଗଣ ସମସାମୟିକ ସମ୍ପୂର୍ଣ୍ଣ କିବା ନଥିଲେ । ଏମାନଙ୍କ ମଧ୍ୟରେ ସମନ୍ୱୟ ନଥିଲା । ଧର୍ମଧାରଣାରେ ମଧ୍ୟ ସାମ୍ୟ ନଥିଲା । ଏମାନେ ବିଭିନ୍ନ ସମୟରେ ଜନ୍ମ ହୋଇଥିବା ହେତୁ ପରସ୍ପର ମଧ୍ୟରେ ବନ୍ଧୁତ୍ୱ କିମ୍ବା ଭାବର ଆଦାନ ପ୍ରଦାନ କରିବାର ସୁଯୋଗ ନଥିଲା । କିନ୍ତୁ ଅନ୍ୟ କେତେକ ସମାଲୋଚକ ଏମାନଙ୍କୁ ସମସାମୟିକ ବୋଲି ଗ୍ରହଣ କରି ତାଙ୍କ ଭିତରେ ଭାବର ଆଦାନ ପ୍ରଦାନ ଥିଲା ବୋଲି ଯୁକ୍ତି କରନ୍ତି । ଏମାନେ କହନ୍ତି ସିଦ୍ଧକବି ଜଗନ୍ନାଥ ଦାସ ବ୍ରହ୍ମଗିରି ନିକଟବର୍ତ୍ତୀ କପିଳେ-ଶ୍ୱରପୁର ଶାସନରେ ୧୪୯୦ ଖ୍ରୀଷ୍ଟାବ୍ଦ ଭାଦ୍ରବ ମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥି ବୁଧବାର ଦିନ ଅନୁରାଧା ନକ୍ଷତ୍ରରେ ଅର୍ଥାତ୍ ରାଧାଷ୍ଟମୀ ଦିନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଭଗବାନ ଦାସ ଓ ମାତା ପଦ୍ମାବତୀ । ଭଗବାନ ଦାସ ପୁରୀଠାରେ ଶ୍ରୀମନ୍ଦିର ନିକଟରେ ପୁରାଣପଣ୍ଡା ଭାବରେ କାର୍ଯ୍ୟ କରି ସଂସ୍କୃତ ଭାଗବତ ପାଠକରି ଭକ୍ତମାନଙ୍କୁ ଶୁଣାଉଥିଲେ ଓ ଅର୍ଥ ବୁଝାଉଥିଲେ । ତାଙ୍କର ପ୍ରଭାବରେ ପ୍ରଭାବିତ ହୋଇ ଶିଶୁ ଜଗନ୍ନାଥ ଦାସ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଲାଭ କଲେ ଓ ବେଦ, ବେଦାନ୍ତ, ପୁରାଣ ପାଠକରି ଜଣେ ମହାନ ବିଦ୍ୱାନରେ ପରିଣତ ହେଲେ । ତାଙ୍କର ଯେ କେବଳ ସଂସ୍କୃତ ଭାଷାରେ ପାଣ୍ଡିତ୍ୟ ଥିଲା ତାହା ନୁହେଁ ପୁରାଣ ପାଠ କରୁ କରୁ ସେ ଜଣେ ସ୍ୱଭାବକବି ଭାବରେ ଓଡ଼ିଆ ଭାଷାରେ ଅପୂର୍ବ କବିତ୍ୱ ଲାଭ କଲେ । ଏହି କବିତ୍ୱହିଁ ତାଙ୍କୁ ବିଭିନ୍ନ ଗ୍ରନ୍ଥ ରଚନା ପାଇଁ ପ୍ରେରଣା ଯୋଗାଇଲା । ସେ ନିଜେ

ଓଡ଼ିଆ ଭାଷାରେ ଭାଗବତ ରଚନା କରିବା ସହିତ ତାକୁ ସମବେତ ଗଣ୍ଡଗୋଳରେ ବଳଗଣେଶଙ୍କ ନିକଟରେ ଶୁଣାଇବାକୁ ଲାଗିଲେ । ଏଥିରେ ସଂସ୍କୃତ ପଣ୍ଡିତମାନେ ଅସୂୟା ପ୍ରକାଶ କରି ତାଙ୍କ ପ୍ରତି ଈର୍ଷା ପରାୟଣ ହୋଇ ଉଠିଲେ । ଏହି ସମୟରେ ମାତ୍ର ୧୮ ବର୍ଷ ବୟସରେ ଭାଗବତ ରଚନା କରିଥିଲେ ବୋଲି ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ସୂଚିତ ହୋଇଛି । ଏଥିରେ ଲେଖାଅଛି—

"ଶ୍ରୀରାମାୟଣ ଗ୍ରନ୍ଥ ସାଧି । ଶ୍ରୀଭାଗବତେ ଦେଲେ ବୁଦ୍ଧି ॥
ଦ୍ୱାଦଶ ସ୍କନ୍ଧ ଭାଗବତ । ଟୀକା ଟିପ୍ପଣୀହିଁ ସହିତ ॥
ଏ ମାନ ସାଧିଲେ ବିଶେଷ । ହୋଇଲା ଅଷ୍ଟାଦଶ ବର୍ଷ ॥
ବଳଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ॥"

—ଜଗନ୍ନାଥ ଚରିତାମୃତ

ଜଗନ୍ନାଥ ଦାସଙ୍କ ପାଣ୍ଡିତ୍ୟ, କବିତ୍ୱ ଓ ଧର୍ମଦର୍ଶନକୁ ଦେଖି ମହାପ୍ରଭୁ ଶ୍ରୀ ଶ୍ରୀଚୈତନ୍ୟ ତାଙ୍କୁ ଅତିବଡ଼ ଉପାଧିରେ ଭୂଷିତ କରିଥିଲେ । ଏ ସମ୍ପର୍କରେ ପଣ୍ଡିତ ସଦାଶିବ ମିଶ୍ର କହନ୍ତି "ଶ୍ରୀ ଜଗନ୍ନାଥ ଦାସ କହିଲେ ମୁଁ ଯେତେବେଳେ ବଗଦ୍ଭସଗୀତା ଲିଖିତ ବସ୍ତୁ ଚହରି ଉପରିସ୍ଥିତ ବୈକୁଣ୍ଠଧାମରେ ସୁବର୍ଣ୍ଣପୀଠସ୍ଥିତ ମଣିମଣ୍ଡିତ ମଣ୍ଡପ ମଧ୍ୟରେ ଶ୍ରୀକୃଷ୍ଣଙ୍କର ମହାରାସଲୀଳା ପ୍ରକାଶର ବିଷୟ ସ୍ମରଣ କରି ଭାବାବିଷ୍ଟ ହୁଅନ୍ତି । ମୋର ବାହ୍ୟଜ୍ଞାନ ଅନ୍ତର୍ହିତ ହୋଇଥିଲା । × × × ଶ୍ରୀଚୈତନ୍ୟ ଏହା ଶୁଣି କହିଲେ ଏ ଅତି ଅପୂର୍ବ ରହସ୍ୟ । × × × × ଏହା କହି ସେ ନିଜର ଉତ୍ତରୀୟ ତାଙ୍କ ମୁଣ୍ଡରେ ବାନ୍ଧି ଦେଲେ । ସେହି ଦିନଠାରୁ ଲୋକେ ତାଙ୍କୁ ଅତିବଡ଼ ଗୋସ୍ୱାମୀ ବୋଲି ଡାକିଲେ ।

ପଣ୍ଡିତ ସଦାଶିବ ମିଶ୍ରଙ୍କ ଆଲୋଚନା ଉପରେ ଦୃଷ୍ଟି ପକାଇବା ବେଳେ କବି ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତ ଚକ୍ଷୁ-ସମ୍ମୁଖରେ ଝଲସି ଉଠେ । ଦିବାକର ଦାସ ମହୋଦୟ ଲେଖିଛନ୍ତି—

"ଶ୍ରୀ ଅତିବଡ଼ ଗୋସାଇଁ । ତାଙ୍କ ଚରିତ ଏବେ କହି ॥
ଶ୍ରୀ ରାଧାଙ୍କ ହାସ୍ୟ ଲଳିତ । ତହିଁରୁ ହୋଇଛନ୍ତି ଜାତ ॥
× × ×

ଦାସଙ୍କ ଶିରେ ବାନ୍ଧଦେଲେ । ଅତିବଡ଼ ବୋଲି ବୋଇଲେ ॥
ଏ ବଡ଼ ଦୁର୍ଲଭ ଚରିତ । ଆଜ କହିଲେ ମୋ ଅଗ୍ରତ ॥୪

ଆଲୋଚକମାନେ ମତ ଦିଅନ୍ତି ଯେ—ଚୈତନ୍ୟଦେବଙ୍କ ସହିତ ତାଙ୍କର ସଙ୍ଗରେ ଆସିଥିବା ନିଷ୍ଠାବାନ ଗୌଡ଼ୀୟ ବୈଷ୍ଣବ ଶିଷ୍ୟମାନେ ଜଗନ୍ନାଥ ଦାସଙ୍କୁ ଏତେବଡ଼ ଉପାଧିରେ ଭୂଷିତ କରିବା ଦେଖି ଶ୍ରୀଚୈତନ୍ୟଙ୍କ ଉପରେ ପରୋକ୍ଷଭାବରେ କ୍ଷୁବ୍ଧ ହୋଇଥିଲେ । ସେମାନଙ୍କ ମନରେ ଈର୍ଷାପରାୟଣର ମୃଦୁଗୁଞ୍ଜନ ସୃଷ୍ଟି ହୋଇଥିଲା । କାରଣ ଯେତେବେଳେ ବଙ୍ଗଦେଶରେ ଅତିବଡ଼ ସମାଜ ନାମରେ ଏକ ଶ୍ରେଷ୍ଠ ସମ୍ପ୍ରଦାୟର ସୃଷ୍ଟି ହୋଇଥାଏ । ସେମାନେ ଥିଲେ ଶ୍ରେଷ୍ଠ ବୈଷ୍ଣବ । ଜଣେ ଓଡ଼ିଆ ଅନାମଧେୟ ସାଧକକୁ ଏତେବଡ଼ ଉପାଧି ସଂପିଦେବା ଫଳରେ ସେମାନଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି ହେବା ସ୍ୱାଭାବିକ । ମାତ୍ର ପରେ ଏସବୁ ଅସୂୟା ବୃଥା ଆସ୍ଫାଳନ ବୋଲି ହୃଦୟଙ୍ଗମ କରି ସେମାନଙ୍କ ମନରେ ଯେଉଁ ଅଶାନ୍ତ ଗୁଞ୍ଜରଣ ଜନ୍ମ ନେଇଥିଲା ତାହା ସ୍ତିମିତ ହୋଇ ଆସିଲା ।

କଥା ପ୍ରସଙ୍ଗରେ କୁହାଯାଇପାରେ ଯେ ପ୍ରଥମେ ଶ୍ରୀଚୈତନ୍ୟ ଯେତେବେଳେ ଜଗନ୍ନାଥ ଦାସଙ୍କୁ ହରେକୃଷ୍ଣ ମନ୍ତ୍ର ଦେବାକୁ ପ୍ରସ୍ତାବ ଦେଲେ ଜଗନ୍ନାଥ ଦାସ ଯଦିବା ବ୍ରହ୍ମଗୃହୀ ଥିଲେ ମନ୍ତ୍ର ଗ୍ରହଣ କରିବାକୁ ଅସ୍ୱୀକାର କଲେ । ତେଣୁ ଶ୍ରୀଚୈତନ୍ୟ ପ୍ରଥମେ ମଉ୍ରବଳରାମ ଦାସଙ୍କୁ ଶିଷ୍ୟରୂପେ ଗ୍ରହଣ କଲାପରେ ସେ ଜଗନ୍ନାଥ ଦାସଙ୍କୁ ମନ୍ତ୍ରରେ ଦୀକ୍ଷିତ କରାଇ ତାଙ୍କ ପରେ ଜଗନ୍ନାଥ ଦାସଙ୍କୁ ଗାଦିନସୀନ କରାଇଥିଲେ ।

ଜଗନ୍ନାଥ ଦାସ ଦେହାବସାନ ପୂର୍ବରୁ ନିଜର ପ୍ରିୟ ଶିଷ୍ୟ ହରିଦାସଙ୍କୁ ପରବର୍ତ୍ତୀ ମଠାଧୀଶ ଭାବରେ ଅବସ୍ଥାପିତ କରାଇଥିଲେ । ଜଗନ୍ନାଥ ଦାସ ନିଜର ଓଡ଼ିଆ ଭାଗବତକୁ ପ୍ରତି ସନ୍ଧ୍ୟାରେ ସ୍ୱଭାବ ସୁଲଭ ମଧୁର ଲଳିତ କଣ୍ଠରେ ଗାନ କରି ଶ୍ରଦ୍ଧାଳୁ ଲୋକଙ୍କୁ ଶୁଣାନ୍ତି । ତାଙ୍କର ଶ୍ରୋତାମାନଙ୍କ ମଧ୍ୟରେ ବେଶି ସଂଖ୍ୟାରେ ଥାଆନ୍ତି ସ୍ତ୍ରୀଲୋକ । ଏଣେ ସଂସ୍କୃତ ଭାଗବତର ଶବ୍ଦ ଓ ନିହିତ ଅର୍ଥ କ୍ଲିଷ୍ଟ ଥିବାରୁ ଏବଂ ଦକ୍ଷିଣା ଦେବାକୁ ପଡ଼ୁଥିବାରୁ ବ୍ୟବସାୟଭିତ୍ତିକ ପୁରାଣ ପଣ୍ଡାମାନଙ୍କର ଆଦର ଓ ଲୋକପ୍ରିୟତା କ୍ରମଶଃ କ୍ଷୀଣତର ହୋଇ ଆସେ । ସେମାନେ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତକୁ ତାଚ୍ଛଲ୍ୟ କରି 'ତେଲି ଭାଗବତ'

ଚବାଲ ପ୍ରଚାର କରନ୍ତି । ସେଥିରେ ସଫଳକାମୀ ନହୋଇ କୁଚକ୍ରୀ ସଂସ୍କୃତ ପଣ୍ଡିତମାନେ ବ୍ରାହ୍ମଣ୍ୟଧର୍ମ ବିଦ୍ୱେଷୀ ବୋଲି ଜଗନ୍ନାଥ ଦାସଙ୍କୁ କୁତ୍ସିତ ସମାଲୋଚନା କରି ବସନ୍ତି । ଏପରିକି ଦାସଙ୍କ ବିରୋଧରେ ଗଜପତିଙ୍କ ସମ୍ମୁଖରେ ନାନା ମିଥ୍ୟା କଥା ପ୍ରକାଶ କରନ୍ତି ।

## ଗଜପତିଙ୍କର ବିଦ୍ୱେଷଭାବ :

ସେମାନେ କହିବାକୁ ଲାଗିଲେ ଯେ ଯୁବକ ବୟସରେ ଜଗନ୍ନାଥ ଦାସ ସଂସ୍କୃତ ଭାଗବତରୁ ବିକୃତ ଓଡ଼ିଆ ଅନୁବାଦ କରିଛନ୍ତି । ଏହି ଅନୁବାଦରେ ପରକୀୟା ପ୍ରେମର ଅଶ୍ଳୀଳ ବର୍ଣ୍ଣନା ହୋଇଥିବାରୁ ଅପ୍ରାପ୍ତ-ବୟସ୍କା ବହୁ ତରୁଣୀ ତାହା ଶୁଣିବାକୁ ସମବେତ ହେଉଛନ୍ତି । ଦେଶକୁ ଘୋର ପାପ ଗ୍ରାସ କରିବାର ରାସ୍ତାକୁ ଦାସେ ହିତାହିତଜ୍ଞାନ ଭୁଲି ପ୍ରଶସ୍ତ କରି ଚାଲିଛନ୍ତି । ଏଥିରୁ ନିଷ୍କୃତି ପାଇଁ ତୁରନ୍ତ ପ୍ରତିକାର କରାଯିବା ଉଚିତ ।

ଗଜପତି ଅସଂଖ୍ୟ ପଣ୍ଡିତଙ୍କର ଆକ୍ଷେପୋକ୍ତିକୁ ବିଶ୍ୱାସ କରି ଦାସଙ୍କ ଉପରେ କୋପାନ୍ୱିତ ହୋଇ ତାଙ୍କୁ ଦରବାରକୁ ଡାକି ଭର୍ତ୍ସନା କରନ୍ତି ଏବଂ କହନ୍ତି, "ତୁମେ ଜଣେ ପୁରୁଷ ହୋଇ ବିକୃତ ଅଶ୍ଳୀଳ ଭାଗବତ ପଠନଦ୍ୱାରା ସ୍ତ୍ରୀଲୋକଙ୍କ ସଙ୍ଗଲାଭ କରିବାର ଚେଷ୍ଟାରେ ମତ୍ତ । ଏହା କି'ଣ ସତ୍ୟ ?" ଦାସେ ତତ୍‌କ୍ଷଣାତ୍ ଉତ୍ତର ଦିଅନ୍ତି—"ମୁଁ ପୁରୁଷ ପାଖରେ ପୁରୁଷ ଏବଂ ସ୍ତ୍ରୀ ଲୋକ ପାଖରେ ସ୍ତ୍ରୀ ଲୋକର ଆଚରଣ କରେ ।"

ଗଜପତି ଆଦେଶ ଦେଲେ—ଯଦି ମୋତେ ସ୍ତ୍ରୀ ରୂପ ନ ଦେଖାଅ, କଠୋର ରାଜଦଣ୍ଡର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହେବ । ତାପରେ ସେ ଏକ ନିର୍ଜନ କାରାଗୃହରେ ବନ୍ଦୀ ହୋଇ ରହନ୍ତି । ପ୍ରଭୁ ଜଗନ୍ନାଥ ଭକ୍ତକୁ ସ୍ୱପ୍ନରେ ଦର୍ଶନ ଦେଇ କହନ୍ତି— ତୋର ମନୋବାଞ୍ଛା ପୂର୍ଣ୍ଣ ହେଉ । ପୁରୁଷ ଶରୀର ତୋର ନାରୀ ଶରୀର ଧାରଣ କରୁ ।

"ପୂର୍ବେ ପୁରୁଷ ଅଙ୍ଗ ଥିଲି । ପ୍ରେମ ଭାବେ ସ୍ତ୍ରୀ ହେଲି ॥<br>
ଦେଖ ଉଭବ ଦାସ ମୋର । ଚିହ୍ନ କୌମୁଦୀ ସେ ରୁଧିର ॥"

(ଜଗନ୍ନାଥ ଚରିତାମୃତ)

ସ୍ୱପ୍ନ ଭାଙ୍ଗିଗଲା । ସେ ଦେଖିଲେ ତାଙ୍କର ଧବଳ ଶରୀର ଏକ ନାରୀ ଶରୀରରେ ରୂପାନ୍ତରିତ ହୋଇଯାଇଛି । ତାପରେ ଅପୂର୍ବ ପ୍ରେମାଞ୍ଚିତ ଦାସ ଆପଣେ ଦୃଢ଼ ସ୍ୱରରେ ଘୋଷଣା କଲେ—

"ଆଉ କାହାକୁ ମୋର ଡର । ମୋ ପ୍ରଭୁବଚନ ବିଜୟୀଛି ॥"

ରାଜା ତାଙ୍କର ଏତାଦୃଶ ରୂପଦେଖି ବିସ୍ମିତ ହୁଅନ୍ତି । ଯେଉଁ ପରାତ୍ପର ପରମେଶ୍ୱରଙ୍କର ଭକ୍ତ ନିଜେ ଜଗନ୍ନାଥ ଦାସ ତାଙ୍କ ପ୍ରତି ସେହି କରୁଣା ସରିତ୍-ସାଗରଙ୍କର ଆଶୀର୍ବାଦ ନ ରହିଁ ଆଉ କାହାପ୍ରତି ରହିବ ? ରାଜା ସଂସ୍କୃତ ପଣ୍ଡିତମାନଙ୍କୁ ଭର୍ତ୍ସନା କରନ୍ତି । ତାପରେ ଦାସଙ୍କ ପାଖରେ କ୍ଷମାଭିକ୍ଷା ମାଗି ନିଜ ରାଣୀଙ୍କ ଲାଗି ନୂଆକରି ତୋଳା ଯାଇଥିବା ପ୍ରାସାଦ ଜଗନ୍ନାଥଙ୍କୁ ଦାନସ୍ୱରୂପ ଉପହାର ଦିଅନ୍ତି । ସେହିଦିନୁ ତାହା ବଡ ଓଡ଼ିଆ ମଠ ନାମରେ ପରିଚିତ ହୋଇଆସୁଛି ଓ ଶ୍ରୀପ୍ରଭୁଙ୍କ ଭୋଗଲାଗି ପ୍ରତିଦିନ ବଡ଼ ଓଡ଼ିଆ ମଠରୁ ମଞ୍ଚ ସରଞ୍ଜାମ ଓ ପୁଷ୍ପମାଲ୍ୟ ଆସିଥାଏ ।

ପ୍ରଭୁ ଜଗନ୍ନାଥଙ୍କର ଜଗନ୍ନାଥ ଦାସଙ୍କ ଉପରେ ଅପାର କରୁଣାର ଆଉ ଏକ ଅଭିନବ ଚିହ୍ନ ।

ଜଗନ୍ନାଥ ଦାସଙ୍କୁ ଖଣ୍ଡିଏ ଚନ୍ଦନ କାଠ ଗଜପତି ଜଗନ୍ନାଥଙ୍କର ଚନ୍ଦନଲାଗି ପାଇଁ ଦେଇଥିଲେ । ଦାସେ ତାକୁ ଘୋରି ରହୁଥିବା ଘର କାନ୍ଥରେ ଲେସି ଦେଲେ । ଗଜପତି ବିରକ୍ତି ପ୍ରକାଶ କରି ପ୍ରଶ୍ନ କରନ୍ତେ ସେ ପ୍ରଭୁ ଜଗନ୍ନାଥଙ୍କୁ ଅର୍ପଣ କରିଛନ୍ତି ବୋଲି କହନ୍ତି । ଦେଖାଗଲା ଯେ ଯେଉଁ ଚନ୍ଦନଗୁଡ଼ା ସେ କାନ୍ଥବାଡ଼ରେ ଦେଇଥିଲେ ତାହା ପ୍ରଭୁଙ୍କର ଶ୍ରୀଅଙ୍ଗ ଭୂଷିତ କରିଛି । ଜଗନ୍ନାଥ ଦାସଙ୍କର ଲୋକପ୍ରିୟତାରେ ବିମୁଗ୍ଧ ହୋଇ ବିଶିଷ୍ଟ ସମାଲୋଚକ ଶ୍ରୀଯୁକ୍ତ ମଜୁମଦାର ତାଙ୍କର Typical selection from Oriya Literature ପୁସ୍ତକରେ କହନ୍ତି—

"No Poet of old time enjoys so much of popularity as poet Jagannath Das does. There is not a single Hindu village in Orissa where at least a portion of Jagannath Das's Bhagabata is not kept and daily recited"—

ଜନସାଧାରଣଙ୍କର ସାଧାରଣ ଜୀବନ ଧାରାକୁ ଅନୁସରଣ କରି ଜଗନ୍ନାଥ ଦାସ ଯେଉଁସବୁ ରଚନା କରିଗଲେ ତାହା ସମାଦୃତ ହୋଇ ରହିଛି ଓ ରହିଥିବ । କଥିତ ଅଛି ସେ ତାଙ୍କର ଏକାଦଶଟି ଭାଗବତ ଅଧ୍ୟାୟ ରଚନାକାଳ ଈଶ୍ୱର କୃଷ୍ଣଙ୍କର ଦେହାବସାନ ଚିନ୍ତାରେ ବ୍ୟଥା-ଜର୍ଜର ହୋଇ ଆଉ ଅଧିକ ଅଧ୍ୟାୟ ରଚନାକରି ନାହାନ୍ତି । ତାପରେ ତାଙ୍କର ଦେହାନ୍ତସାନ ଘଟେ । ପର ଦୁଇ ଅଧ୍ୟାୟ ଅନ୍ୟ ବୈଷ୍ଣବ କବି ଯଥାକ୍ରମେ ମହାଦେବ ଦାସ ଓ ଦ୍ୱାରିକା ଦାସ ସମାପ୍ତ କରନ୍ତି ।

ଜଗନ୍ନାଥ ଦାସଙ୍କର ଦେହାବସାନ ଏକ ବିଚିତ୍ର ଇଙ୍ଗିତରେ ହୁଏ । ବୈଷ୍ଣବ ବେଶ, ମାଳାତିଳକ ଓ ଶୁଭ୍ରବସ୍ତ୍ର ପରିହିତ ହୋଇ ସେ ଶ୍ରୀମନ୍ଦିରରେ ପ୍ରଭୁଙ୍କ ଦର୍ଶନ ସାରିବା ପରେ ତାଙ୍କ ପଦାରବିନ୍ଦରେ ମନ ସଂଯୋଗକରି ଧ୍ୟାନସ୍ଥ ହେଲେ ଏବଂ ରତ୍ନସିଂହାସନରୁ ଉତ୍ଥିତ ଏକ ଅପୂର୍ବ ଜ୍ୟୋତିସହ ତାଙ୍କରି ଆତ୍ମଜ୍ୟୋତି ମିଳିତ ହୋଇ ବିଲୀନ ହୋଇଗଲା । କି ଅପୂର୍ବ ମିଳନ ଥିଲା ତାଙ୍କର ପରଂବ୍ରହ୍ମଙ୍କ ସହିତ ? ତାପରେ ପଡ଼ିରହିଥିବା ପାର୍ଥିବ ଶରୀର ଧୀରେ ଧୀରେ ଅପାର୍ଥିବ ଭାବରେ ସମସ୍ତ ସମବେତ ଦର୍ଶନାର୍ଥୀଙ୍କୁ ବିସ୍ମୟାଚ୍ଛନ୍ନ କରି ଶ୍ରୀମନ୍ଦିର ଭିତରୁ ଅଦୃଶ୍ୟ ହୋଇଗଲା । ଏହା କେବଳ ଈଶ୍ୱରାଂଶ ଏକ ଈଶ୍ୱରଦତ୍ତ ଶରୀରର ବିଚିତ୍ର ସମ୍ମୋହନ ! ପରମ ସାଧୁସନ୍ଥ ଜୀବନର ଗୌରବମୟ ଅନ୍ତଃଦଶା ! ! ଅପୂର୍ବ ମିଳନର ମହୋତ୍ସବ ! ! !

## ଓଡ଼ିଆ ଭାଗବତ :

ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ପଞ୍ଚସଖା ଯୁଗରେ ଯେଉଁ ବୈଷ୍ଣବୀୟ ଧର୍ମଧାରାର ସ୍ୱର ଓ ସ୍ୱାକ୍ଷର ବହନକରି ତାର ସ୍ୱନ୍ଦମୟ ପଦାବଳୀ, ନବଳସ ଛନ୍ଦ ମାଧ୍ୟମରେ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଅପୂର୍ବ ପୁଲକ ସଞ୍ଚାର କରିଗଲା ଏବଂ 'ମା ବେଦେଶି'ର ସ୍ପନ୍ଦନରେ ଜୀବନକୁ ଦେଇଗଲା ଉଚ୍ଛଳ ତରଙ୍ଗର ସ୍ପର୍ଶ । ତହିଁରୁ ଯେଉଁ ମନ୍ଥନ ମନ୍ୱନ୍ତର ଯୁଗାନ୍ତକାରୀ ଉଚ୍ଛ୍ୱାସ ସୃଷ୍ଟି ହେଲା ତାହା ଜନଜୀବନକୁ ପ୍ରକୃତି ସ୍ୱଭାବରେ ଯେତେଟା ଉନ୍ମାଦନା ସୃଷ୍ଟି କରି ନଥିଲା, ଅଧିକନ୍ତୁ କରିଥିଲା ଭାବୀ ସାହିତ୍ୟଯୁଗର କବିଚେତନାରେ ସ୍ଫୁରଣ । ତାର ପଞ୍ଚଜନ୍ୟ ପରଯୁଗରେ

କବିକୁ ଦେଲା କାବ୍ୟସ୍ପନ୍ଦନର ଅନବଦ୍ୟ ରୂପଲାବଣ୍ୟ, ଆଳଙ୍କାରିକ ବେଶ ସମ୍ଭାର ଏବଂ ଅନୋଖୀ ଶବ୍ଦକଳ୍ପର ରଙ୍ଗ ରୂପାୟନ । ତାର ସ୍ୱପ୍ନର ପ୍ରକୃତି ଆଦ୍ୟନ୍ତତାର ଧାର୍ମିମୟ ଫଗୁଣ ରଙ୍ଗରେ କଲା, କଳ୍ପନା ଓ ବାସ୍ତବତାର ସମନ୍ୱୟ ସୃଷ୍ଟି କରି ଆବିଷ୍କାର କଲା ପ୍ରକୃତିରୁ ବର୍ଣ୍ଣ ବର୍ଣ୍ଣାଳିସ୍ନାତ ଅବଗୁଣ୍ଠିତା ରହସ୍ୟମୟୀ ଶୋଭା ସୁନ୍ଦରୀକୁ । ଯୌବନର ନେପଥ୍ୟ, ସୃଷ୍ଟି ସର୍ଜନାର ଆନନ୍ଦ ବିଭୋର ମଧ୍ୟଯୁଗୀୟ କବିକୁ ସ୍ୱର୍ଗତୂର୍ଯ୍ୟରେ ବିସ୍ମୟାଭିଭୂତ କେବଳ ଯେ 'କରିଗଲା ତା' ନୁହେଁ, ତାକୁ ଭିନ୍ନ ତାଳଲୟ ଉଲ୍ଲଂଘି ରୂପପିପାସୀ ଭାବରେ ନିଜକୁ ଗଢ଼ି ତୋଳିବାକୁ ଦେଇଥିଲା ନିର୍ଦ୍ଦେଶ । ସେ ହେଲା ଆତ୍ମହରା । ପ୍ରଗଳ୍ଭତା ଭିତରେ ସଦାବାରେଣୀକୁ ଖୁନ୍ଦି ତରଙ୍ଗର ତାଳେ ତାଳେ ସେ ଗାଇଗଲା ଆପଣାର ସୃଷ୍ଟି ସଙ୍ଗୀତ । ହୁଏତ ପଞ୍ଚସଖା ଯୁଗର କାବ୍ୟକୃତି ଓ ତାର ନିର୍ଦ୍ଦେଶନାରୁ ସେ ଅନେକ କିଛି ପାଇଥିଲା, ବହୁ ସ୍ୱପ୍ନ ଦେଖିଥିଲା ଏବଂ ନିରାକାର ଅଭିବ୍ୟକ୍ତିକୁ ସାକାର ରୂପଦେଇ ତାର ସବେକ ତାକୁହିଁ ଅନୁସରଣ କରିବାରେ ହୋଇଥିଲା ସକ୍ଷମ । ତେଣୁ ପଞ୍ଚସଖା ଯୁଗକୁ ଓଡ଼ିଆ ସାହିତ୍ୟ ଅଭ୍ୟୁଦୟର ତ୍ରିବେଣୀ ସଙ୍ଗମ ଆଖ୍ୟାଦେବା ଅଯୌକ୍ତିକ ।

ବଳରାମ ଦାସଙ୍କ ପରେ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ଜନମାନସକୁ ନୈତିକ ଓ ଧର୍ମଜ୍ଞାନଦ୍ୱାରା ଯେଉଁଳି ଭାବରେ ପ୍ରଭାବିତ କରିଛି ସେ ଭଳି ବୌଦ୍ଧିକ ସ୍ଫୁରଣ ବୋଧହୁଏ କୋରାନ୍, ବାଇବେଲ୍, ବୌଦ୍ଧ ଗ୍ରନ୍ଥର ସୂକ୍ତି, ନାନକଙ୍କର ମତ ରଚିତ ଦୋହାବଳୀ ଏକେ ଏକେ କରି ପାରିନାହାନ୍ତି । ଭଗବତ ଗୀତା ସହିତ ଉପର୍ଯ୍ୟୁପରି, ଧର୍ମଗ୍ରନ୍ଥ ଗୁଡ଼ିକର ନିଚ୍ଛକ ଧର୍ମଧାରଣା ଏକାଠି କଲେ ଯାଇ ଭାଗବତ ସହିତ ସମାନ ହୋଇପାରେ । ସେ ଯାହାହେଉ ଓଡ଼ିଆ ସାହିତ୍ୟରେ, ଓଡ଼ିଆ ଜନଜୀବନ ତଥା ସଂସ୍କୃତି ଓ ଐତିହ୍ୟରେ ଆଜି ଧର୍ମ, ଦର୍ଶନ ଓ ଯେଉଁ ସାଂସ୍କୃତିକ ବିପ୍ଲବ ଦେଖାଦେଇଛି, ଯାହା ଚାରିଶହ ପଚିଶ ବର୍ଷର ପୁରାତନ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ଅମ୍ଳାନ ଭାବରେ ଏଯାବତ୍ ନିଜର ସ୍ୱାକ୍ଷର ବହନ କରି ଆସିଛି । ଆଜି ଓ ଆସନ୍ତା କାଲିର କାବ୍ୟ ମୁକୁରରେ ତାର ଭାବବୈଭବର ପ୍ରତିଫଳନ ମହାକାଳ ପଢ଼ିନାହିଁ କି ପଢ଼ିପାରିବ ନାହିଁ । ଆଜି ଆମେ ସାକ୍ଷର ଅଭିଯାନରେ ନୈତିକତା ଫଳପ୍ରଦ ହୋଇ ପାରିନାହିଁ,

ବୋଧହୁଏ ଐଶୀ ଶକ୍ତିର ପ୍ରଭାବରେ ଜଗନ୍ନାଥ ଦାସ ନିଜ ହୃଦୟରେ ତାଠାରୁ ଅଧିକ କିଛି କରି ପାରିଛନ୍ତି । କବିଙ୍କର ଭାଷା ପ୍ରୟୋଗ ଶୈଳୀ ଅତି ଉନ୍ନତ, ସାବଲୀଳ, ସର୍ବଜନବୋଧ୍ୟ ଓ ସର୍ବାଦୃତ ହୋଇ ରହିଛି ଓ ଯୁଗଯୁଗାନ୍ତର ରହିଥିବ ।

"ପ୍ରସନ୍ନ ଶ୍ରୀ ମୁଖମଣ୍ଡଳ । ଲୋଚନ ଅମଳ କମଳ ॥
ସୁବର୍ଣ୍ଣ କାରଠ କୁଣ୍ଡଳ । ସୁନ୍ଦର ଅଳକା କପୋଳ ॥"

ଏହି ଭାଗବତ ଆବୃତ୍ତି ପାଇଁ ଓଡ଼ିଶା ଜନସମାଜ ସତତ ବ୍ୟଗ୍ର । ଏହା ସାକ୍ଷରତା ଅଭିଯାନର ଏକ ଅଭିନବ ପନ୍ଥା ନୁହେ କି ? ତେଣୁ ସମାଲୋଚକ ମଜୁମ୍‌ଦାର କହନ୍ତି—

"This is why the art of reading and writing is known and practised by the Common People more extensively in Orissa than Bengal…"

## ଭାଷା ଓ ଶବ୍ଦ ପ୍ରୟୋଗ :

ଭାଷା ପ୍ରୟୋଗରେ ଭାଗବତକାର ଜଗନ୍ନାଥ ଦାସ ଧୁରୀଣ ଥିଲେ । ସାର୍ବଜନୀନ ଲୌକିକ ଓ ପ୍ରାକୃତ ଭାଷାର ସମ୍ମିଶ୍ରଣରେ ଭାଗବତ ପଦାବଳି ମନୋହର ହୋଇ ରସାପ୍ଳୁତ ହୋଇଯାଇଛି । ରଚନାର ଅଧିକଭାଗ ତଦ୍ଭବମୂଳକ ଓଡ଼ିଆ ଭାଷା ଓ ସଂସ୍କୃତାଭିମୁଖୀ ହେଲେହେଁ, ଶବ୍ଦ ସଂଯୋଜନା ଶୈଳୀ ଶ୍ରୋତା ଓ ପାଠକର ହୃଦୟକୁ ବିଗଳିତ କରେ । ଭାଗବତର ଭାଷା ଭାବଗର୍ଭ ହୋଇ ଓଡ଼ିଆ ଭାଷାର ବିକାଶ ପଥରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ଓଡ଼ିଆ କବି ଓ ତାର ଲେଖମାନଙ୍କୁ ଜୀବନ ସଞ୍ଜୀବନୀ ପ୍ରଦାନ କରି ଯାଇଛନ୍ତି । ସନ୍ଥକବିଙ୍କର ମସୃଣ ସାବଲୀଳ ରଚନାର ରନ୍ଧ୍ରେ ରନ୍ଧ୍ରେ ଅବଗୁଣ୍ଠିତ ଓ ଗ୍ରଥିତ ହୋଇ ରହିଛି ବହୁ ଓଡ଼ିଆ ଅପଭ୍ରଂଶ ଶବ୍ଦ । ନସ୍ତାର, ନପୁଣ, କରିବଇଁ, କହିବଇଁ, ଗମ୍ଭୀର, କାଳୀ, ସ୍ତ୍ରୀସ ହୋଏ, ମୁହାଁସରେ, ଅମୃତ, ସ୍ଥପିଲ ଇତ୍ୟାଦି ଶବ୍ଦର ବାରମ୍ବାର ଓ ବହୁଳ ବ୍ୟବହାର ପାଠକକୁ ସକ୍ତି ଦ ଏନା ବରଂ ଆନନ୍ଦରେ ବିମୋହିତ କରିଦିଏ । ଏସବୁ ଶବ୍ଦ ତତ୍କାଳୀନ ସାମାଜିକ ବ୍ୟବହାର ଶବ୍ଦର ସଙ୍କେତ ଦିଏ ଏବଂ ସେହି ଭାଗବତ ଶବ୍ଦାବଳି ଏବେ

ମଧ୍ୟ ଦେଶଜ ଶବ୍ଦ ଭାବରେ ପୁରପଲ୍ଲୀରେ ବ୍ୟବହୃତ ହୋଇ ଚାଲିଛି । ଯେପରି ସରଳ ସୁଲଳିତ ପଦରଚନା ପାଇଁ, 'ପ', 'ବ', 'ମ', 'ର', 'ଳ', 'ଲ' 'ନ', 'ଣ', 'ବ', 'ସ' ଇତ୍ୟାଦି ଶବ୍ଦ ଶେଷ ଅକ୍ଷର ରୂପେ ବ୍ୟବହାର କରାଯାଏ, ଯଥା—

ଯେବେ ନବଘନ ଶ୍ୟାମ ବଂଶୀ ସ୍ୱନ ନଶିଥରେ ଥରେ ଶୁଣା ଯିବ,

× × × ×

ପ୍ରସରିବ ମିତ, ମିଳିନ୍ଦ ସଙ୍ଗୀତ କଳପୀକରିତ ମଳୟ ମରୁତ···

ଇତ୍ୟାଦି—

ଜଗନ୍ନାଥ ଦାସ ନିଜର ରଚନାକୁ ସେଇ ଢାଞ୍ଚାରେ ଶବ୍ଦ ସଂଯୋଜନା ଚାତୁରୀରେ ଜନାଦୃତ କରିବାକୁ ତତ୍ପର ହୋଇ ଉଠିଛନ୍ତି । ତେଣୁ ଓଡ଼ିଆ ଜାତି ଓ ତାର ନିଜସ୍ୱ ଭାଷା ବହୁ ଉତ୍ପୀଡ଼ନ ଓ ଉତ୍ଥାନ ପତନର ଖରସ୍ରୋତରେ ଗଡ଼ାଳିକା ଭଳି ଗତିପ୍ରମାଣି ହୋଇ ଯାଉଥିଲେ ମଧ୍ୟ ଭାଗବତ ତାର ପୂର୍ବ ପ୍ରାପ୍ତି ଅମ୍ଳାନ ରଖି ରହିପାରିଛି, ଏହାହିଁ ବିସ୍ମୟ

ସାରା ଉତ୍କଳକୁ ନିଜର ଦାର୍ଶନିକ ଭାବବନ୍ୟାରେ ସମ୍ପୂର୍ଣ୍ଣ ପ୍ଳାବିତ କରି ହିରଣ୍ମୟ ହୋଇ ରହିଛି । ଜଗନ୍ନାଥ ଦାସଙ୍କର ଭାଷା ଧାରଳା ମହାଭାରତ କମ୍ବା ବଳରାମ ଦାସଙ୍କର ଦାଣ୍ଡି ରାମାୟଣ ଭାଷାଠାରୁ ସଂପୂର୍ଣ୍ଣ ପ୍ରାକୃତ ଭାଷା ବ୍ୟବହାରକୁ ସେ ନିଜେ ସ୍ୱୀକାର କରିଛନ୍ତି, ଦଶମ ଓ ଭିନ୍ନ । ଏକାଦଶ ସ୍କନ୍ଧରେ—

"ପ୍ରାକୃତ ଭାଷା ଏ ପ୍ରବନ୍ଧ । ଫିଟେ ଅନ୍ଧାର ଭବବନ୍ଧ ॥

× × × ×

ପ୍ରାକୃତ ବନ୍ଧେ ଭାଗବତ । ପ୍ରକାଶି ସନ୍ଥଜନ ହିତ ॥

ବତିଶ ଶତ ଷଟପଦ । ଦେଶ ଭାଷା ପ୍ରାକୃତ ବନ୍ଧ ॥"

ଶବ୍ଦ ଗଠନ ଏତେ ନମନୀୟ ଯେ ତାହା ପଦଗୁଡ଼ିକୁ କୋମଳ କରି ଭାବଦ୍ୟୋତକ ହିସାବରେ ତାର ଅନେକ ପଂକ୍ତି ସୁଭାଷିତ ହୋଇ ଉଠିଛି ନୈତିକତାର ଭାବଧାରାରେ । ଜନମାନସରେ ଜୀବନର ଦୈନନ୍ଦିନ ବ୍ୟାପାରରେ ସେଗୁଡ଼ିକ ବହୁଳ ଭାବରେ ଉଚ୍ଚାରିତ ହୋଇଥାଏ ।

ସନ୍ଥକବି ଭକ୍ତି ଭାବନା ଓ ସାଧନାର ନିଖୁଣ ଚିତ୍ର ଦେବା ସଙ୍ଗେ ସଙ୍ଗେ କୃଷ୍ଣଙ୍କର ସ୍ୱରୂପ ବର୍ଣ୍ଣନା ଅତି ଚମତ୍କାର ଭାବରେ ପ୍ରଦାନ କରିଛନ୍ତି ।

"ଜଗତ ତୋହଠାରୁ ଜାତ । ପାଳି ତା' କରୁ ପୁଣି ଅନ୍ତ ।
ଜଗତ ଉପୁଜିଲା କାଳେ । ଅରୁଣ ହୋଇ ଯୋଗବଳେ ॥
ପାଳିବା କାଳେ ଶୁକ୍ଳ ବର୍ଣ୍ଣ । ସଂସାରେ ବୋଲାଉ ତୁ ଧର୍ମ ॥
ସଂହାର କାଳେ କୃଷ୍ଣ ରୂପ । ତୋର ବିହାରେ ମୋର କଳ୍ପ ॥"

—ଦଶମ ସ୍କନ୍ଧ (ଚ. ଅ)

ପୁନଶ୍ଚ—

"ତାହାର ନାମ ଉଚ୍ଚାରିଲେ । ଭ୍ରମ ନଥାଇ ଆତ୍ମା ଭୁଲେ ॥
କହିଲି ଏ ପରମ ତତ୍ତ୍ୱ । କୃଷ୍ଣ ସେବକ ବଳବନ୍ତ ॥
ରେ ମନ କୃଷ୍ଣ ଆଶ୍ରେ କର । ସର୍ବବିପଦୁଁ ହେବୁ ପାର ॥
ଗୋବିନ୍ଦ ନାମ ଭେଳା କରି । ହେଲେ ତରିବ ଭବବାରି ॥
ଦ୍ୱିଜ ଜଗନ୍ନାଥ ବୋଲଇ । ନାମରେ ସର୍ବସିଦ୍ଧ ହୋଇ ॥"

ଭାଗବତ ଭାଷା, ବହୁ ମାତୃଗର୍ଭଙ୍କ ଉପଦେଶାବଳୀରେ ଯେପରି ସମୃଦ୍ଧ, ଗ୍ରାମୀଣ ଜନତା ଜ୍ଞାନଲବ୍ଧ ମୀମାଂସା, ଅତଏବ ସେବାରେ ତାଙ୍କୁ ବିବେକର ଚେତନା ରୂପେ ଜ୍ଞାନକରି ବାରମ୍ବାର ଉଚ୍ଚାରଣ କରନ୍ତି—

"ମନ ତୋହର ନିଜ ଗୁରୁ । ଉଦ୍ଧବ କେତେ ତୁ ପଚାରୁ ॥
× × ×
ମଣିଷ ଘଟେ ନାରାୟଣ । ବସନ୍ତି ଅନାଦି କାରଣ ॥
× × ×
ଧନ ଅର୍ଜିଲେ ଧର୍ମ କରି । ଧର୍ମେ ପ୍ରାପତି ନରହରି ॥
× × ×
ସକଳ ତୀର୍ଥ ତୋ ଚରଣେ । ବଦ୍ରିକା ଶିବ କି କାରଣେ ॥"

ଓଡ଼ିଆ ଜାତିକୁ ନ୍ୟାୟ ଅନ୍ୟାୟ, ସୁଖ ଦୁଃଖ, ଜନ୍ମ ମୃତ୍ୟୁ, ଧର୍ମ ପାପ, ପ୍ରତ୍ୟେକ ପରିସ୍ଥିତିରେ ଭାଗବତର ଉତ୍କର୍ଷତା ଓ ଭାବସଙ୍କେତ ଦିଗ୍‌ଦର୍ଶନ ଦେଇ ଆସିଛି ।

ଓଡ଼ିଶାର ଭକ୍ତକବି ଜଗନ୍ନାଥ ଦାସଙ୍କର ଭାଗବତ କୌଣସି ପ୍ରକାରରେ କୋରାନ୍, ବାଇବେଲ୍ ଓ ଗ୍ରନ୍ଥସାହେବ ଇତ୍ୟାଦି ଠାରୁ ନ୍ୟୁନ ନୁହେଁ ବୋଲି କହିଛି । ଓଡ଼ିଆ ଭାଗବତ ଓ ଜଗନ୍ନାଥ ସଂସ୍କୃତି ପରସ୍ପର ସହିତ ଏତେଦୂର ନିବିଡ଼ ଭାବରେ ସମ୍ପର୍କିତ ଯେ ଗ୍ରାମ୍ୟ ଭାଗବତ ଗାଦିରେ ଭାଗବତ ସହିତ ଜଗନ୍ନାଥ ମହାପ୍ରଭୁଙ୍କର ବିଗ୍ରହ ସ୍ଥାପିତ ହୋଇ ଏକତ୍ର ପୂଜା ପାଆନ୍ତି । ଭାଗବତ ଘର, ଭାଗବତ ଗାଦି, ଭାଗବତ ଟୁଙ୍ଗି, ଭାଗବତ ପାରାୟଣ ଇତ୍ୟାଦିର ପୂଜାପାର୍ବଣ ଓଡ଼ିଶାରେ ଭାଗବତ ସଂସ୍କୃତିରେ ପରିଣତ ହୋଇ ଯାଇଛି । ଉତ୍କଳର ବ୍ୟାସଦେବ ଜଗନ୍ନାଥ ଦାସଙ୍କର ରଚନା ଅପରିମେୟ ପ୍ରଜ୍ଞା ଓ ଧର୍ମ ସାହିତ୍ୟ ରଚନାରେ ତାଙ୍କର ଦକ୍ଷତା ଫଳରେ ଆତ୍ମକୁଶଳେ ସର୍ବସିଦ୍ଧି ଲାଭ କରିପାରି ଥିଲେ । ପଞ୍ଚସଖାଗଣଙ୍କର ଧର୍ମବିପ୍ଲବ ଯେତିକି ବହୁମୁଖୀ ସେତିକି କାଳଜୟୀ । ପ୍ରତ୍ୟେକ ନିଜ କଳାକୁଶଳତାର ଜଣେ ଜଣେ ବିଶ୍ୱକର୍ମା । ତେଣୁ କୁହାଯାଏ—

"ଅଗମ୍ୟ ଭାବ ଜାଣେ ଯଶୋବନ୍ତ । ଗାରକଟା ଯନ୍ତ୍ର ଜାଣେ ଅନନ୍ତ ॥
ଆଗତ ନାଗତ ଅଚ୍ୟୁତ ଭଣେ । ବଳରାମ ଦାସ ତତ୍ତ୍ୱ ବଖାଣେ ॥
ଭକ୍ତିର ଭାବ ଜାଣେ ଜଗନ୍ନାଥ । ପଞ୍ଚସଖା ଏ ଓଡ଼ିଶା ମହନ୍ତ ॥"

(ବ୍ରହ୍ମକୁଣ୍ଡଳୀ ଓ ବ୍ରହ୍ମଜ୍ଞାନଚନ୍ଦ୍ର)

ଦୁଃଖର ବିଷୟ ପଞ୍ଚସଖାମାନଙ୍କର ରଚନାବଳୀ ବିଷୟରେ କୌଣସି ଅନ୍ୱେଷା ହୋଇନାହିଁ ଏବଂ ସେମାନଙ୍କର ବହୁ ଅପ୍ରକାଶିତ ରଚନାବଳୀ ଏପର୍ଯ୍ୟନ୍ତ ଲୋକଲୋଚନର ବାହାରେ ରହିଯାଇଛି । ମହାନ ତତ୍ତ୍ୱସମ୍ବଳିତ ଭାଗବତ ପାଠ କଲେ ପ୍ରାଣରେ ଯେଉଁ ଅପୂର୍ବ ଆନନ୍ଦ ମୂର୍ଚ୍ଛନାରେ ଅନିର୍ବଚନୀୟ ପ୍ରଶାନ୍ତି ଏବଂ ସ୍ପନ୍ଦନରେ ମୂର୍ଚ୍ଛନା ସୃଷ୍ଟି କରେ, ତାହା ଓଡ଼ିଆ ହିଁ ଜାଣେ ।

ତା'ର ନବାକ୍ଷରୀ ବୃତ୍ତ ଯେକୌଣସି ଢଙ୍ଗରେ ବୋଲିହୁଏ । ଅନୁବାଦ ଅତି ସରଳ, ତରଳ ଓ କୋମଳ ହେବା ଫଳରେ ସର୍ବଜନାଦୃତ ହୋଇପାରିଛି । ଅନୁବାଦରେ ଦାସେ ଅନେକ କଣ୍ଟି ମୌଳିକତା ଛାଡ଼ି ଯାଇଛନ୍ତି । ତାକୁ ଗୂଢ଼ତତ୍ତ୍ୱରେ ଅନୁଧ୍ୟାନ କଲେ ତହିଁରୁ

ତାଙ୍କର କଳ୍ପନା କୁଶଳତା, ଦୂରଦର୍ଶିତା ସହିତ ଅନନ୍ୟସାଧାରଣ କବି ପ୍ରତିଭାର ସୂଚନା ମିଳେ ।

ଭାଗବତ ଗ୍ରନ୍ଥରେ ଯୋଗ, ଧର୍ମ, ମାତ୍ର ଅଗ୍ରର ବନ୍ଧୁର ସହିତ ଜଗନ୍ନାଥ ଦାସ କେତେକ ଧର୍ମମୂଳକ ଜଟିଳ ପ୍ରଶ୍ନ ଉତ୍ଥାପନ କରି ତା'ର ସମାଧାନ ମଧ୍ୟ ଦର୍ଶାଇଛନ୍ତି ।

"କସ ମଙ୍ଗଳ ପ୍ରଶ୍ନରେ । ସାର କା ସକଳ ଶାସ୍ତ୍ରରେ ॥
ଦେବକୀ ଗର୍ଭେ ଯଦୁସାଇଁ । ଜନ୍ମ ଲଭିଲେ କାହିଁପାଇଁ ॥
କି କାର୍ଯ୍ୟ କଲେ ଭଗବାନ । ହେଲେ କି ଅବତାର ମାନ ॥
ସେ ପ୍ରଭୁ ହୋଇଲେ ଅନ୍ତର୍ହିତ । ଧର୍ମ ବା ହେଲା କାହାଶ୍ରିତ ॥"

ଜଗନ୍ନାଥ ଦାସଙ୍କ ନିକଟରେ ପୁତ୍ର, ପତ୍ନୀ ଓ କୁଟୁମ୍ବର ମୋହ ନଥିଲା । ସେ ଥିଲେ ସନ୍ନ୍ୟାସୀ । ପ୍ରେମ ଓ ପ୍ରଣୟକୁ ଆଧ୍ୟାତ୍ମିକ ଦୃଷ୍ଟି କୋଣରୁ ଦେଖୁଥିଲେ । ତେଣୁ କହିଛନ୍ତି—

"ସେ ଯନ୍ଧ ମୂକତି ପସର । ସେ କମ୍ପା କଲେ ପରଦାର ॥
× × ×
ସ୍ୱଦାର ପରଦାର ଭେଦ । ଯେବେ କରୁଛ ମନେ ଖେଦ ॥
ସ୍ୱଦାର ଭାବ ଯାର ନାହିଁ । ପରଦାର ବା ଥିବ କାହିଁ ॥"

ଜଗନ୍ନାଥ ଦାସ ନିଜର ଲେଖଣୀ ଚାଳନା କରିଥିଲେ ସମାଜର ଜଡ଼ତା ଦୂର କରି ଓଡ଼ିଆ ଜାତିକୁ ନିର୍ମଳ ଧର୍ମମୟ, ଶାନ୍ତିମୟ ଜୀବନର ସ୍ୱାଦ ଚଖାଇବାକୁ । ତା'ର ଫଳରେ ଭାଗବତ ତାଙ୍କର ସେ ପୂଜ୍ୟମୟ ହୋଇଥିଲା ତା' ନୁହେଁ । ଅବତାର ପୁରୁଷ ହୋଇ ଚଉଦ୍ଦନ ସେ ଓଡ଼ିଆ ପ୍ରାଣରେ ପୂଜ୍ୟ ହୋଇ ରହିଗଲେ । ଧର୍ମପ୍ରାଣ ଏ ଜାତି କହିଲା ବେଳକୁ ଦାସେହିଁ ମନେ ପଡ଼ନ୍ତି । ଏବେ ମଧ୍ୟ ବହୁ ଲେଖକ, କବି ଭାବୁକ ତାଙ୍କର ଭାଗବତ ପଠନ କରି ତହିଁରୁ ପ୍ରେରଣା ପାଉଥାଆନ୍ତି ।

ଓଡ଼ିଶାର ଜନସମାଜରେ ଭାଗବତର ଲୋକପ୍ରିୟତା ଓ ସ୍ଥାନ ସମ୍ପର୍କରେ ଜଗବନ୍ଧୁ ସିଂହ କହନ୍ତି—

"ଚାହାଳରେ ପିଲାମାନଙ୍କର ଭାଗବତ ପ୍ରଧାନ ପାଠ୍ୟପୁସ୍ତକ ଥିଲା । ଯେଉଁ ପିଲା ଅଧ୍ୟାୟେ ଭାଗବତ ବୋଲି ପାରିଲା ତା'ର ବିଦ୍ୟା

ଶେଷ ହେଉଥିଲା । ଲୋକର ଆସନ୍ନ ମୃତ୍ୟୁବେଳେ ତା'ର ପୁତ୍ର, ପୌତ୍ରାଦି ଆତ୍ମୀୟସ୍ୱଜନ ତା' କାନରେ ଭାଗବତ ଶୁଣାଉଥିଲେ । ଗ୍ରାମରେ ବସନ୍ତ, ମାରି ଭୟ ପ୍ରଭୃତି ଉପଦ୍ରବ ହେଲେ, ଭାଗବତ ପାଠ, ହରିନାମ, ସପ୍ତାଙ୍ଗ ଯାଗଯଜ୍ଞ ପ୍ରଭୃତି ହେଉଥିଲା । ଭାଗବତ ପାଠ ହେଲେ ଗ୍ରାମରୁ କାଳଭୟ ଦୂର ହେଉଥିଲା ବୋଲି ଲୋକଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ଅନେକ ଲୋକଙ୍କର ସ୍ନାନପରେ ସନ୍ଧ୍ୟାବେଳେ ଭାଗବତ ପାଠ କରିବା ନିତ୍ୟ ନୈମିତ୍ତିକ କାର୍ଯ୍ୟ ଥିଲା ।”

## ଭାଗବତର ଛନ୍ଦ

ନବାକ୍ଷରୀ ଛନ୍ଦ ଭାଗବତ ଏକ ଅଦ୍ଭୁତ ରଚନା । ଜଗନ୍ନାଥ ଦାସ ତା'ର ମାଧ୍ୟମରେ ଅକ୍ଷର ସମତା, ଚରିତ୍ରର ସ୍ୱାଧୀନତା ଦର୍ଶାଇ ଯାଇଛନ୍ତି । ନବାକ୍ଷରୀରେ ସବୁପାଦ ପାଞ୍ଚ ସ୍ୱର ଅକ୍ଷରରେ ଶେଷହୁଏ । ତିନି, ଦୁଇ ଓ ସ୍ୱର ଅକ୍ଷର ଶେଷରେ ମଧ୍ୟ ହୋଇପାରେ ।

“ଶୁଣ ପରୀକ୍ଷ ନରନାଥ
କୃଷ୍ଣ ଚରିତ ଭାଗବତ ।
ଗୋବିନ୍ଦ ବତ୍ସ ରକ୍ଷମନେ
ଆଜର ମିବା ବୃନ୍ଦାବନେ ।”

ଯେତେବେଳେ ଓଡ଼ିଆ କାନକୁ ମୁଗ୍ଧ କରିବାକୁ କୌଣସି ସଙ୍ଗୀତ କିମ୍ବା ଛନ୍ଦଗ୍ରନ୍ଥ ନଥିଲା, ନବାକ୍ଷରୀ ଛନ୍ଦର ଭିନ୍ନଭିନ୍ନ ସ୍ୱର ସମ୍ପଦରେ ଏ ଦେଶ ଜନତା ସେତେବେଳେ ଜାଗି ଉଠିଥିଲା । ସୁନ୍ଦର ଆବିଷ୍କାର !

ପରମେଶ୍ୱରଙ୍କର ବିଚିତ୍ର ଲୀଳା ଖେଳାର ଅଲୌକିକ ପରିପ୍ରକାଶ ଦେଖିଲେ ଭକ୍ତ କବିର ଭକ୍ତିମନ୍ତ୍ର ସ୍ୱୟଂ ଧରାପଡ଼ିଯାଏ । ଏକାଦଶ ସ୍କନ୍ଧରେ କପୋତ ଚରିତ୍ରର କରୁଣତା ଯେପରି କରୁଣାପ୍ଲୁତ, ସପ୍ତମସ୍କନ୍ଧରେ ହିରଣ୍ୟକଶିପୁର ମୃତ୍ୟୁରେ ପ୍ରହ୍ଲାଦଙ୍କର ଭକ୍ତିରସର ଉତ୍ସୁକତା ଯେକୌଣସି ଲୋକର ଯେକୌଣସି ପ୍ରକାରର ହୃଦୟକୁ ବିଗଳିତ କରିବ ନିଶ୍ଚୟ ।

## ଭାଗବତ ଏକ ପୁରାଣ :

'ପୁରାଣର ଲକ୍ଷଣ—

“ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ
ବଂଶାନୁ ଚରିତଂ ଚେତି ପୁରାଣଂ ପଞ୍ଚଲକ୍ଷଣମ୍ ।”

ଭାଗବତରେ ଶ୍ରୀକୃଷ୍ଣଙ୍କର କାହାଣୀ ଭକ୍ତିମୂଳକ ଏକ ଧର୍ମଗ୍ରନ୍ଥ । ତହିଁରେ ପୁରାଣର ସର୍ଗ ବିସର୍ଗ ମନ୍ୱନ୍ତର ବଂଶ ବଂଶାନୁଚରିତ ଇତ୍ୟାଦି ଲକ୍ଷଣକୁ ସଂଯୁକ୍ତ କରାଯାଇ ପୁରାଣଟିରେ ପରିଣତ କରାଯାଇଛି । ଧର୍ମ, ଅର୍ଥ, କାମ, ମୋକ୍ଷ ଏବଂ ଗୁହ୍ୟମାର୍ଗ ମଧ୍ୟରୁ ଧର୍ମ ଅନ୍ତର୍ଗତ କର୍ମ, ଜ୍ଞାନ, ଭକ୍ତି ଓ ଯୋଗକୁ ଅନ୍ତଃସ୍ୱର ଭାବରେ ଗ୍ରହଣ କରାଯାଇ ସାର୍ବଜନୀନ ଭାବଧାରା ସଂପ୍ଲାବିତ ଭାଗବତର ସୃଷ୍ଟି । ଏଥିରେ ଜାତି, ଧର୍ମ, ବର୍ଣ୍ଣ ଓ ଶ୍ରେଣୀ ମଧ୍ୟ ଭେଦ ନାହିଁ । ପ୍ରତ୍ୟେକ ବ୍ୟକ୍ତି ଲାଗି ଧର୍ମ ଯୋଗ ଓ ଭକ୍ତିର ଅଜସ୍ର ସନ୍ଦେଶ ରହିଛି । କୈଶୋର ଅତିକ୍ରାନ୍ତ ପୂର୍ବରୁ ଗୋଟିଏ ସଂସ୍କୃତ ମହା-ଗ୍ରନ୍ଥକୁ ଓଡ଼ିଆ ଭାଷାରେ ମୌଳିକତାର ପୁଟଦେଇ ସୁନ୍ଦର ନିଖୁଣ ଅନୁବାଦ କରିବା ପଛରେ ଈଶ୍ୱରଦତ୍ତ ପ୍ରତିଭା, ଅପରିସୀମ ପାଣ୍ଡିତ୍ୟର ପୃଷ୍ଠ ପୋଷକତା ନଥିଲେ ଆଦୌ ସମ୍ଭବପର ହୋଇନପାରେ । ଅନୁବାଦ ଆକ୍ଷରିକ ଓ ପ୍ରକୃତ ନୁହେଁ । ତାହା ଜଗନ୍ନାଥ ଦାସଙ୍କର ସ୍ୱୀୟ ରଚନା ଶୈଳୀରେ ପ୍ରବୃଦ୍ଧ ଓ ନୈତିକ ଭାବବିକାଶରେ ସମୃଦ୍ଧ ହୋଇ ଉଠିଛି । ଏଥିରେ ଯୋଗରୁ ଭୋଗ ଓ ଲକ୍ଷ୍ୟରୁ ଲୀଳା ଅନୁସରଣ ଲାଗି ବୈଷ୍ଣବ ସାମ୍ପ୍ରଦାୟିକ ଶିଷ୍ୟମାନଙ୍କ ପାଇଁ ଅଛି ବିଶିଷ୍ଟ ନିର୍ଦ୍ଦେଶନା । ସାହିତ୍ୟର ସଂଜ୍ଞା ନିରୂପଣ ଲାଗି ଦଶମ ଶତାବ୍ଦୀର ଆଳଙ୍କାରିକ କୁନ୍ତକଙ୍କର ଉକ୍ତି ନେବାକୁ ହେବ ।

"ସାହିତ୍ୟ ମନୟୋଃ ଶୋଭାଶାଳିତାଂ ପ୍ରତି କାବ୍ୟସୌ,
ଅନ୍ୟୂନାନତିରିକ୍ତତ୍ୱ ମନୋହାରିଣ୍ୟ ବସ୍ଥିତିଃ ।"

ସୌନ୍ଦର୍ଯ୍ୟ ସାଧନପାଇଁ ଶବ୍ଦ ଓ ଅର୍ଥର ମନୋହାରିଣୀ ସ୍ଥିତିହିଁ ସାହିତ୍ୟ । ଏ ଦୃଷ୍ଟିରୁ ଦାସଙ୍କର ଭାଗବତର ସାହିତ୍ୟିକ ମୂଲ୍ୟାଙ୍କନ କରିବାକୁ ହେବ । ସମାଜରୁ ଜୀବନ ଓ ଜୀବନରୁ ସାହିତ୍ୟ ଏ ସମସ୍ତଙ୍କର ସମ୍ପର୍କ ଅତି ନିବିଡ଼ । ପଞ୍ଚସଖା ଯୁଗୀୟ ରଚନାବଳିରେ ସଂସ୍କୃତ କାବ୍ୟ ସାହିତ୍ୟର ପ୍ରଭାବ, ବ୍ୟାପକତା ତଥା ବୈଷ୍ଣବ ଧର୍ମ ପ୍ରଭାବର ଗଭୀରତା ଅତି ବ୍ୟାପକ ହୋଇ ଯାଇଥିଲା କହିଲେ ଚଳେ । ଭାଗବତର ଭାଷା, ଛନ୍ଦ, ରଚନାଶୈଳୀ, ଧର୍ମ ଓ ଦର୍ଶନ ପ୍ରତ୍ୟେକ ସ୍ତରରେ ପରିବେଷଣ ଏତେ ଅନନ୍ୟ ସାଧାରଣ ଯେ ସାର୍ଦ୍ଧ ଚାରିଶହ ପଚାଶ ବର୍ଷଧରି ତାହା ତାର ଆଦର୍ଶ ଅଜେୟ ଓ ଅପରିମେୟ ରହି ନିଜକୁ ଉନ୍ମେଷ ଯୁଗ ଭାବରେ ପ୍ରତିପାଦିତ

କରିଥିଲେ ଏବଂ ଷୋଡ଼ଶ ଶତାବ୍ଦୀରେ ଆବାହମାନ ସଙ୍ଗୀତରେ ମନ୍ତ୍ର ମୁଗ୍ଧ କରି ସ୍ଵୟଂ ତାର ନମୁନାମକ ହୋଇ ରହିଗଲେ । ସାରଳାଯୁଗର ଓଡ଼ିଆ ଭାଷା ଅଙ୍କୁରୋଦ୍‌ଗମ ଜଗନ୍ନାଥ ଦାସଙ୍କର ଭାଗବତ ରଚନାରେ ହୋଇଗଲା ଫଳବତୀ, ବଳଶାଳୀ । ଚୈତନ୍ୟଙ୍କ ପୂର୍ବରୁ ବୌଦ୍ଧରୂପୀ ପ୍ରଭୁ ଜଗନ୍ନାଥ କେବଳ ଜଗନ୍ନାଥ ଦାସ ଓ ତାଙ୍କର ଧର୍ମଚେତନା ସହିତ ପ୍ରତାପରୁଦ୍ର ଦେବ ଓ ଶ୍ରୀଚୈତନ୍ୟଙ୍କର ସାଙ୍ଗପାଙ୍ଗ ହେତୁ ମହାବୈଷ୍ଣବ-ଚେତନାତ୍ମ ହୋଇଗଲେ ତାହା ପ୍ରଣିଧାନଯୋଗ୍ୟ । ପୂର୍ବର ଯୋଗ-ଭିତ୍ତିକ ଶୂନ୍ୟସାଧନା ସହିତ ଗୌଡ଼ୀୟ ଭକ୍ତିତତ୍ତ୍ୱର ସମନ୍ୱିତ ବିକାଶର ସୂତ୍ରଧାର ଜଗନ୍ନାଥ ଦାସ ହିଁ ନିଜେ । ତାଙ୍କ ଲେଖାର ବୈଶିଷ୍ଟ୍ୟ ଚର୍ଚ୍ଚା କରିବାକୁ ହେଲେ ଏକ ବିରାଟ ଗ୍ରନ୍ଥ ହେବ । ସେ 'ସଂସ୍କୃତ ଭାଗବତ'ର ଅନୁବାଦକ ନୁହନ୍ତି । ତାର ସ୍ରଷ୍ଟାରେ ସ୍ୱୟଂ ସ୍ୱତନ୍ତ୍ର ।

| | |
|---|---|
| "ପରମ ପଦେ କରି ସ୍ଥାନ | । ତେବେ ସାଧିବ ଦୃଢ଼ାସନ ॥ |
| ବାମଚରଣ ପଛେ ଭର | । ତେଣେ ନରୋଧି ମୂଳାଧାର ॥ |
| ମୂଳ ପବନ ଊର୍ଦ୍ଧ୍ୱେ ତୋଳି | । ନାଭିପବନ ସଙ୍ଗେ ମିଳି ॥ |
| ବେନି ପବନ ପୁଣି ବଳେ | । ସ୍ଥାପିବ ହୃଦୟ କମଳେ ॥" |

## ମୂଳ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେ :

ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ—ଜଗନ୍ନାଥଙ୍କ ଭାଗବତ ଅନେକାଂଶରେ ମୂଳ ଭାଗବତ ଠାରୁ ଅଧିକ ମୂଲ୍ୟବାନ । କାରଣ ଏଥିରେ ମୂଳର ବହୁ ଗଳ୍ପ ପରିବର୍ତ୍ତରେ ଅନୁବାଦକ ବିଷ୍ଣୁ, ପଦ୍ମ ଓ ବ୍ରହ୍ମବୈବର୍ତ୍ତ ପୁରାଣାଦି ବୈଷ୍ଣବ ଗ୍ରନ୍ଥମାନଙ୍କର ଉତ୍ତମତର ବହୁଗଳ୍ପ ପୂରାଇ ଏହାକୁ ଅଧିକ ଶ୍ରୀସମ୍ପନ୍ନ କରି ପାରିଛନ୍ତି ।

ଡକ୍ଟର ମାନସିଂହ କହନ୍ତି—ଏହି ଧର୍ମଗ୍ରନ୍ଥ "ପୁରୁଷ ପୁରୁଷ ଧରି ଓଡ଼ିଶା ଓ ଓଡ଼ିଶା ବାହାରେ କୋଟି କୋଟି ଲୋକର ଆତ୍ମାକୁ ବ୍ୟକ୍ତିଗତ ଭାବରେ ମୁଗ୍ଧ ମଣ୍ଡିତ କେବଳ କରି ଆସିନାହିଁ; ବହୁ ଶତାବ୍ଦୀ ଧରି ସେ ଗ୍ରନ୍ଥ ଏକ ଖଣ୍ଡ ବିଖଣ୍ଡିତ ଜାତିକୁ ଦେଇପାରିଛି ଅପୂର୍ବ ଐକ୍ୟ-ବୋଧ ଓ ହୋଇଉଠିଛି ସେ ଜାତିର ସର୍ବଶ୍ରେଷ୍ଠ ସାଂସ୍କୃତିକ ଲାଞ୍ଛନ ।

ବଳରାମ ଓ ଜଗନ୍ନାଥ ଦାସ ଯେ କେବଳ ସଂସ୍କୃତରେ ବିଦ୍ୱାନ ଓ ପ୍ରଖ୍ୟାତ ପଣ୍ଡିତ ଥିଲେ ତା'ନୁହେ ; ଶ୍ରୀକ୍ଷେତ୍ରରେ ବହୁ ପଣ୍ଡିତ ବିଦ୍ୱାନ ପ୍ରାୟତଃ ସମବେତ ହେଉଥିବାରୁ ,ସେମାନଙ୍କ ସଙ୍ଗଲାଭ କରିବା ତଥା ତାତ୍ତ୍ୱିକ ଆଲୋଚନାଜନିତ ଆଧ୍ୟାତ୍ମିକ ପ୍ରଭାବରେ ପ୍ରଭାବିତ ହେଉଥିଲେ । ଫଳରେ ବିଭିନ୍ନ ଧର୍ମସମ୍ବନ୍ଧୀୟ ଧାରଣା ବଳରେ ପୁରାଣ ଶୈଳୀରେ ସହଜ ସରଳ ରଚନା କରି ଜନସମାଜରେ ଯଥେଷ୍ଟ ଆଦର ଓ ସମ୍ମାନ ଅଧିକାର କରିବା ସେମାନଙ୍କ ପକ୍ଷରେ କଷ୍ଟ ନୂଆ ନଥିଲା । ପଞ୍ଚସଖା ଯୁଗର ଆହ୍ୱାନରେ ଯେଉଁ ରୋମାଞ୍ଚ, ନୈର୍ବ୍ୟକ୍ତିକ ପୁରାଣ ଶୈଳୀ ତାହା ଖୃଷ୍ଟଯୁଗର କାବ୍ୟକ ଅଭିବ୍ୟକ୍ତିକୁ ମନ୍ଦ୍ରମଧୁର ପ୍ରେରଣାଦେବା, ଏକାନ୍ତ ସ୍ୱାଭାବିକ ।

ସେ ଯାହାହେଉ ମୂଳଗ୍ରନ୍ଥ ସଂସ୍କୃତରୁ ଓଡ଼ିଆ ଭାଗବତ ଆଦୌ ଆକ୍ଷରିକ ଅନୁଦିତ ହୋଇନାହିଁ । ତାହା ଯଦି ହୋଇଥାଆନ୍ତା ଆଜ ଦୀର୍ଘ ଚୈାରିଶତପର ବର୍ଷପରେ ଓଡ଼ିଆ ଭାଗବତକୁ ଆକ୍ଷରିକ ସଂସ୍କୃତରେ ରୂପାନ୍ତରିତ କରି ବାହ୍ୟ ପ୍ରଦେଶରେ ତାର ଲୋକପ୍ରିୟତା ଆଣିବାର ଉଦ୍ୟମ ଆଜ ହୁଅନ୍ତା ନାହିଁ ।

ଏ ବିଗରେ କେତେକ ଅନୁଦିତ ଶ୍ଳୋକର ଓଡ଼ିଆ ଭାଗବତ ପଂକ୍ତି-ଗୁଡ଼ିକ ବ୍ୟାଖ୍ୟା କରିବା ଉଚିତ ମନେ କରେ ।

ସଂସ୍କୃତ ଭାଗବତର ୧୦ମ ସ୍କନ୍ଧ ୨୯ ଠାରୁ ୩୩ ଅଧ୍ୟାୟ, ଜଗନ୍ନାଥ ଦାସଙ୍କର ୩୦ରୁ ୩୪ ଅଧ୍ୟାୟ ଲକ୍ଷ୍ୟ କରାଯାଉ । ତା'ହେଲେ ଜଗନ୍ନାଥ ଦାସଙ୍କ ସାଫଲ୍ୟ ଅନୁମାନ କରିହେବ ।

ଭଗବାନପି ତା ରାତ୍ରିଃ ଶାରଦୋତ୍ଫୁଲ୍ଲମଲ୍ଲିକାଃ,
ବୀକ୍ଷରନ୍ତୁଂ ମନଶ୍ଚକ୍ରେ ଯୋଗମାୟା ମୁପାଶ୍ରିତଃ ।

"ସ୍ୱଭାବେ ଶରଦର କାଳ । ପବନ ବହେ ପରିମଳ ॥
ଫୁଟିଲେ ଜଳସ୍ଥଳେ ଫୁଲ । ସୁଗନ୍ଧ ଶୀତଳ ଅମୂଲ୍ୟ ॥
ଗଗନେ ପ୍ରକାଶିଲା ମାଣି । ନିର୍ମଳ ବିରାଜଇ ଶଶୀ ॥
ଚନ୍ଦ୍ର ମଣ୍ଡଳ ଅଖଣ୍ଡିତ । ଦେଖି ଉଲ୍ଲସିତ ଗୋପୀନାଥ ॥
ଲକ୍ଷ୍ମୀର ମୁଖ ପ୍ରାୟ ଦିଶି । କରଣ ଦଶଦିଗ ତୋଷି ॥"

ବନ୍ଦ୍ୟ ବନ୍ଦୌକି ସାଂ ବ୍ୟକ୍ତିରଙ୍ଗ ବୃର୍ଜନ ହନ୍ଧ୍ୟଳଂ ବଶୁମଙ୍ଗଳ,
ତ୍ୟଜମନାକ ତ ନଃ ଭକ୍ତ୍ ସ୍ତୃହ୍ୱାମ୍ନନାଂ ସ୍ୱଜନ ହୃଦ୍ରଜାଂ ଯନ୍ତିସୁଦନଂ।

"ଆମ୍ଭ ଆରତ ଖଣ୍ଡିବାରେ । ତୋହର ଜନ୍ମ ଗୋପପୁରେ ॥
ମଙ୍ଗଳ କରଇ ସଂସାର । ହେଲେ ଗଞ୍ଜଇ ଚମ ଘୋର ॥
ତୋ ପାଦୁଁ ଅନ୍ୟଗତ ନାହିଁ । ନରଗଶ ନନ୍ଦିର ଗୋସାଇଁ ॥"

ପୁନଶ୍ଚ :

"ଶରଦୁ ଡାଶୟେ ସାଧୂଜାତ ସତ୍
ସରସିଜୋଦର ଶ୍ରୀ ମୁଷା ଦୟୋଃ,
ସୁରତ ନାଥ ! ତେଽ ଶୁଲ୍କ ଦାସିକା ବରଦ
ନିଘ୍ନତୋ ନେହ କଂ ବଧଃ ।"

"ଭେନାଥ କମଳଲୋଚନ । ଦେଖାଅ ନିର୍ମଳ ବଦନ ॥
ତୋମୁଖ କମଳର ତେଜେ । ଶରଦ ପଦ୍ମ ଶିରୀ ଗଞ୍ଜେ ॥
ସେ ଧନେ ହଣିଲୁ ଆମ୍ଭନ୍ତ । ଏ ବନେ କଲୁ ଅନାଥ ॥
ସୁରତନାଥ ତୁ ଆମ୍ଭର । କଣିବା ଦାସୀ ଅମ୍ଭେ ତୋର ॥
ଯାହାକୁ କଣି ବିନା ମୂଲେ । କେ ତାକୁ ଗ୍ରାହ୍ୟ କର ଭଲେ ॥
ତାକୁ ନ ଲାଗେ କି ତା ବଧ । ବେଦ ପୁରାଣେ ଏହି ବାଦ ॥"

ଅନେକ କବି, ସମାଲୋଚକ ବୈଷ୍ଣବକବି ଦାସଙ୍କ ବିଶିଷ୍ଟ ଦ୍ୱୈତବାଦୀ ରୂପେ ଗ୍ରହଣ କଲେହେଁ ଏ ଜାତିର ବହୁ ଉତ୍ଥାନ ପତନ ପ୍ରକ୍ରିୟା ଭିତରେ ଭାଗବତ ସୁଦ୍ଧସୁବର୍ଣ୍ଣ ପରି ଅଧିକ ତେଜସ୍ୱାନ୍ ଓ ଦୀପ୍ତିମନ୍ତ ହୋଇ ଭଗବତ୍ ଆଧ୍ୟାତ୍ମିକ ମାର୍ଗକୁ ସ୍ପଷ୍ଟ କରିଦେବା ସଙ୍ଗେ ସଙ୍ଗେ ଉଭୟ ଓଡ଼ିଆ ତଥା ବଙ୍ଗୀୟ ସହିତ ଅନ୍ୟାନ୍ୟ ପ୍ରାନ୍ତୀୟ ରାଜ୍ୟର ସଂସ୍କୃତିକୁ ବ୍ୟାପକ ରୂପେ ପ୍ରଭାବିତ କରିପାରିଛି ଏବଂ ଓଡ଼ିଶାରେ ଉତ୍କଳୀୟ ବୈଷ୍ଣବ ଧର୍ମଧାରାର ଗତିକୁ ସ୍ୱଚ୍ଛନ୍ଦ, ସମୃଦ୍ଧ ଓ ମୂର୍ତ୍ତିମନ୍ତ କରିପାରିଛି ବୋଲି ଦୃଢ଼ତାର ସହିତ ସ୍ୱୀକାର କରାଯାଇ ପାରେ ।

ଏହା ଦେବନାଗରୀ ଅକ୍ଷରରେ ଓ ବଙ୍ଗଳା ଅକ୍ଷରରେ ଲେଖା-ହୋଇ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ସୁଦ୍ଧା ପ୍ରଚଳିତ ହୋଇ ଆସିଛି । ବଙ୍ଗ ଭାଷାରେ କବି ସନାତନ ବାଗୀଶଙ୍କ 'ଭାଷାବନ୍ଧ ଭାଗବତ'ର ଦଶମ

ସ୍କନ୍ଦରେ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତର ବହୁ ଅଧ୍ୟାୟ ବଙ୍ଗାକ୍ଷରରେ ସନ୍ନିବେଶିତ ହୋଇ ଥିବାର ଜଣାଯାଏ । ବଙ୍ଗୀୟ ଭାଗବତର ଲେଖକ ଏକଥା ନିମ୍ନ ପ୍ରକାରରେ ସ୍ୱୀକାର କରି ଯାଇଛନ୍ତି—

"ଶୁନ ଶୁନ୍ ଶ୍ରୋତାଗନ କରି ନିବେଦନ
ପ୍ରଥମ ହଇତେ ଗ୍ରନ୍ଥ ଦେଖିଲୁ ଆପନ ।
ଉଣ୍ଟାମେର ଶେଷ ଷଷ୍ଠ ଭାଷା ନ ଜାଇନ
ଅନେକ୍ ତ ପାଣି ଗ୍ରାମେ ଗ୍ରାମେ ବେଡ଼ାଇନ ।
ଏ ହେତୁ ଉତ୍କଳଭାଷା କରିଲ ଲିଖନ
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ।
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହାଇୟା
ବଙ୍ଗଜ ଭାଷାୟ ଉତ୍କଳ ମିଶାଇୟା ।"

ଆଜିର 'ଯୁଗ'ଟିରେ ଅନେକ ଭୟ ଜନମାନସକୁ ଆତଙ୍କିତ କରି ରଖିଛି । ଶୀତଳ ଯୁଦ୍ଧ, ଆଣବିକ ଯୁଦ୍ଧର ଭୟାବହ ପରିଣତିର ଆଶଙ୍କାରେ ବ୍ୟକ୍ତି, ଗୋଷ୍ଠୀ, ସମାଜ କେହି ବାଦଯାଇ ନାହାଁନ୍ତି । ଅପର ପକ୍ଷରେ ସାକ୍ଷରତା ବିନା ସମାଜର ଅଧ୍ୟୁଷିତ ଜନଙ୍କ ସମ୍ପୂର୍ଣ୍ଣ ବିଲୋପ ଘଟାଇବା ମଧ୍ୟ ଅସମ୍ଭବ । ତା' ଯଦି ନହୁଏ ଦେଶର ସାମଗ୍ରିକ ସମନ୍ୱୟତା ଓ ବୈପ୍ଳବିକ ଅଗ୍ରସରତା ଅସମ୍ଭବ ବ୍ୟାପାର ହୋଇପଡ଼ିବା ନିଶ୍ଚିତ । ବର୍ତ୍ତମାନର ପରିପ୍ରେକ୍ଷୀରେ ସମାଜରେ ଶାନ୍ତି ସଦ୍ଭାବସ୍ଥାନ ଲାଗି ଯେଉଁ ମହନୀୟ ଭ୍ରାତୃତ୍ୱ ଓ ଭାବ ବନ୍ଧନର ଆବଶ୍ୟକତା ରହିଛି ତା'ଲାଗି ଆଧ୍ୟାତ୍ମିକ ଚେତନାର ଉତ୍କର୍ଷତା ପ୍ରତ୍ୟେକେ ଉପଲବ୍ଧି କରୁଛନ୍ତି । ସମଭିବ୍ୟାହାରରେ ସେହି ନବଜାଗରଣର ପୁନଃପ୍ରତିଷ୍ଠା ଲାଗି ଜଗନ୍ନାଥ ଦାସଙ୍କର ପୁଣ୍ୟଗ୍ରନ୍ଥ ଭାଗବତ ହିଁ ଆଧାର । ତେଣୁ ଆମର ଲୁପ୍ତପ୍ରାୟ ଗ୍ରାମ୍ୟ ଭାଗବତ ଟୁଙ୍ଗୀଗୁଡ଼ିକ ଗଢ଼ି ଉଠି ସାଂସ୍କୃତିକ କାର୍ଯ୍ୟକ୍ରମ ଜରିଆରେ ସାଂସ୍କୃତିକ ବିପ୍ଳବ ହେବା ବାଞ୍ଛନୀୟ । ଏହାଦ୍ୱାରା ଯୁଗ ବିଶୃଙ୍ଖଳାର ଅବସାନ ଘଟି ପାରିବ ।



# ଭଜନକାର ଜଗନ୍ନାଥ ଦାସ

ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର

ଭଜନକାର ଜଗନ୍ନାଥ ଦାସ ଉତ୍କଳୀୟ ପ୍ରତିପଲ୍ଲୀରେ ଭାଗବତକାର ତଥା ଭକ୍ତକବି ରୂପେ ସୁପରିଚିତ । ଏହାଙ୍କର ଭାଗବତ ଓଡ଼ିଶାର ଗାଁ ଗହଳରେ ଧର୍ମପ୍ରାଣ ହିନ୍ଦୁର ଝାଟିମାଟିଘେରା କୁଡ଼ିଆ ଘରେ ବିଶେଷ ଆଦର ଲାଭ କରିବା ସଙ୍ଗେ ସଙ୍ଗେ ଏକପ୍ରକାର କ୍ଷୁଦ୍ର ପୁସ୍ତକାଗାର ସ୍ଥାପନ କରିବା ନିମନ୍ତେ ସକ୍ଷମ ହୋଇପାରିଛି । ଏହି ପୁସ୍ତକାଗାର ପଲ୍ଲୀବାସୀଙ୍କ କଣ୍ଠରେ ଭାଗବତ ଘର ବା ଭାଗବତ ଗାଦି ରୂପେ ପରିଚିତ । ଏହି ଗାଦି ଘରେ ମହାଭାରତ, ରାମାୟଣଠାରୁ ଆରମ୍ଭ କରି ବିଭିନ୍ନ ପୁରାଣ, କାବ୍ୟକବିତା ଓ ଧର୍ମଗ୍ରନ୍ଥର ତାଳପତ୍ର ପୋଥି ସଂଗୃହୀତ ହୋଇ ରହିଥାଏ । ଧାର୍ମିକ ବାତାବରଣ ତଥା ସାଂସ୍କୃତିକ ଜାଗରଣର ଏକ ସାରସ୍ୱତ ପୀଠସ୍ଥଳ ରୂପେ ଏହି ଭାଗବତ ଘର ପରିଚିତ ।

ଯେଉଁ ଜଗନ୍ନାଥ ଦାସଙ୍କର ଭାଗବତର ନାମକୁ ନେଇ ଭାଗବତ ଘର ରହିଛି ସେହି ଜଗନ୍ନାଥ ଦାସ ପୁରୀ ଜିଲ୍ଲାର କପିଳେଶ୍ୱର ପୁର ଶାସନରେ ପଞ୍ଚଦଶ ଶତାବ୍ଦୀର ଶେଷଦଶକ ଅର୍ଥାତ ୧୪୯୦ ମସିହା ଭାଦ୍ରବ ମାସ ଶୁକ୍ଳପକ୍ଷ ରାଧାଷ୍ଟମୀ ବୁଧବାର ଦିନ ମଧ୍ୟାହ୍ନ ସମୟରେ ଏକ ଗରିବ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଭଗବାନ ଦାସ ଓ ମାତା ପଦ୍ମାବତୀ ଦେବୀ ଅତ୍ୟନ୍ତ ଗରିବ ଥିଲେ ହେଁ ସଦାସର୍ବଦା ଧର୍ମକାର୍ଯ୍ୟ ତଥା ଅତିଥି ସେବାରେ ନିଜକୁ ନିୟୋଜିତ

କରୁଥିଲେ । ଶୁଣାଯାଏ ସ୍ୱୟଂର ତତ୍କାଳୀନ ରାଜା ଗଜପତି ପ୍ରତାପରୁଦ୍ର ଦେବଙ୍କ ଆଦେଶାନୁସାରେ ଭଗବାନ ଦାସ ପୁରୀ ଶ୍ରୀମନ୍ଦିରରେ ପୁରାଣ ପଣ୍ଡା କାର୍ଯ୍ୟ କରିବାର ସୁଯୋଗ ଲାଭ କରିଥିଲେ ।

ଜଗନ୍ନାଥ ଦାସ ପର୍ବଦିନ ରାଧାଷ୍ଟମୀ ଦିନ ଜନ୍ମ ହୋଇଥିବା ହେତୁ କେତେକ ତାଙ୍କୁ ଶ୍ରୀ ରାଧାଙ୍କର ଅବତାର କହିବାବେଳେ କେତେକ ଶ୍ରୀ ରାଧାଙ୍କ ହାସରୁ ଜାତ ବୋଲି ମତବ୍ୟକ୍ତ କରନ୍ତି । ୫ ବର୍ଷ ବୟସରେ ଜଗନ୍ନାଥ ଦାସଙ୍କର କର୍ଣ୍ଣବେଧ ହେବା ସଙ୍ଗେ ସଙ୍ଗେ ବିଦ୍ୟାରମ୍ଭ ହୋଇଥିଲା ଓ ୮ ବର୍ଷ ବୟସରେ ତାଙ୍କର ଉପନୟନ ହୋଇଥିଲା । ନିଜର ପ୍ରଗାଢ ନିଷ୍ଠା ତଥା ଅଧ୍ୟୟନ ପ୍ରତି ପ୍ରଚଣ୍ଡ ଅନୁରକ୍ତି ହେତୁ ସେ ୧୨ ବର୍ଷ ବେଳକୁ ବେଦ ବେଦାଙ୍ଗାଦି ସହିତ ବିଭିନ୍ନ ସଂସ୍କୃତ ଗ୍ରନ୍ଥ ଅଧ୍ୟୟନ କରି ସାରିଥିଲେ ।

୧୫୦୯।୧୦ ମସିହାରେ ଶ୍ରୀ ଚୈତନ୍ୟ ଦେବ ଯେତେବେଳେ ଓଡ଼ିଶା ଆଗମନ କରିଥିଲେ, ସେତେବେଳେ ସେ ଜଗନ୍ନାଥ ଦାସଙ୍କର ଅଲୌକିକ ଭକ୍ତିଭାବ, ପ୍ରଗାଢ଼ ଭକ୍ତିନିଷ୍ଠା ତଥା ପ୍ରଚଣ୍ଡ ପାଣ୍ଡିତ୍ୟ ଦ୍ୱାରା ମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼' ଉପାଧିରେ ଭୂଷିତ କରିଥିଲେ । ଶ୍ରୀ ଜଗନ୍ନାଥ ଚରିତାମୃତର ରଚୟିତା ଦିବାକର ଦାସ ଏ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—

"ଆପଣା ଶ୍ରୀଅଙ୍ଗ ପାଚ୍ଛୋଡ଼ି । ପଞ୍ଚ ବସନ ଅଙ୍ଗୁ କାଢ଼ି ॥
ଦାସଙ୍କ ଶିରେ ବାନ୍ଧି ଦେଲେ । 'ଅତିବଡ଼' ବୋଲି ବୋଇଲେ ॥"

ଅତିବଡ଼ ଜଗନ୍ନାଥ ଦାସ ନିଜର ପ୍ରଚଣ୍ଡ ସାଧନାଦ୍ୱାରା ଓଡ଼ିଆ ସାହିତ୍ୟର ଗନ୍ତାଘରକୁ ସମୃଦ୍ଧ କରି ଯେଉଁ କେତେକ ରଚନାବଳୀକୁ ଛାଡ଼ି ଯାଇଛନ୍ତି ତନ୍ମଧ୍ୟରେ ଭାଗବତ, ଶ୍ରୀନାମ ଚନ୍ଦ୍ରିକା, ଶୈବାଗମ ଭାଗବତ, ଅନାମୟ କୁଣ୍ଡଳୀ, ଦୃଢ଼ାଭକ୍ତିବୋଧ, ତୁଳାଭିଣା, ଶୂନ୍ୟଭାଗବତ, ବ୍ରହ୍ମଗୀତା, ଷୋଳ ଚଉପଦୀ, ନୀଳଗିରି ଧ୍ୟାନ, ପଦ୍ମପାଦ ସୁଧାନିଧି, ଗୁଣ୍ଡିଚ୍ଚା ବିଜେ, ଗଜନିସ୍ତାରଣ, ଉଷାପରିଣୟ କାବ୍ୟ, ପାହାନ୍ତି ଅବକାଶ, କଳିମାଳିକା, ଇନ୍ଦ୍ରମାଳିକା, ପାଷାଣ୍ଡଦଳନ, ଉଦ୍ଧବ ଜଣାଣ, ଗୋପୀଭାଷା ଅର୍ଥ, ଅର୍ଥ କୋଇଲି, ହରଣୀସୂକ୍ତ, ଭାଷାସମ୍ବାଦ, କାଳୀୟଦଳନ ଆଦି ଅନ୍ୟତମ ।

ଏତଦ୍‌ବ୍ୟତୀତ ସେ ସଂସ୍କୃତ ଭାଷାରେ ଉପାସନା ଶତକ, କୃଷ୍ଣଭକ୍ତି କଳ୍ପଲତାଫଳମ୍, ନାଟ୍ୟଗୁପ୍ତ ଚିନ୍ତାମଣି, ନୀଳାଦ୍ରି ଶତକ, ଷୋଡ଼ଶ ଚତୁଷ୍ପଦୀ, ମୃଗୁଣୀସ୍ତୁତି ଆଦି ମଧ୍ୟ ରଚନା କରିଥିବାର ଜଣାଯାଏ ।

ଅଲୌକିକ ପ୍ରତିଭା ସମ୍ପନ୍ନ ଜଗନ୍ନାଥ ଦାସ ଏ ସମସ୍ତ ଗ୍ରନ୍ଥକୁ ସରଳ ତଥା ସାବଲୀଳ ଭାଷାରେ ରଚନା କରିବା ସଙ୍ଗେ ସଙ୍ଗେ କେତେ-ଗୁଡ଼ିଏ ଭଜନ ମଧ୍ୟ ରଚନା କରିଥିଲେ । ତାଙ୍କର ଭଜନାବଳୀ ମଧ୍ୟରେ ଆଜ ଏଣିକରେ ମନ ଭୁଲୁ କାହିଁକି, ଏକାକ୍ଷର ବ୍ରହ୍ମପୁରାଣ, ଭୁଲିମନ ଭୁଲୁ କାହିଁକି, ଶ୍ରୀଜଗନ୍ନାଥଙ୍କ ରୂପ ଅଶେଷ କରୁଣା, ନମସ୍ତେ ପ୍ରଭୁ ଜଗନ୍ନାଥ, ଶ୍ରୀପୁରୁଷୋତ୍ତମ ନିବାସନ, ଉଠ ରାମ ପାହିଲା ରଜନୀରେ, ଭାଗବତ ଭଜନ-ମାଳା ଭଜ ମନସୂନ୍ୟେ ନକର ହେଳା, ଭାଗବତ ଭଜନମାଳା, ଭବାବ୍ଧି ତରଣେ କରିଛୁ ଭେଳା, ହାଣ୍ଡି ଝୁଲଇରେ ଆସିବାର ବେଳ, ଅନାମ କହିବା ଶୁଣରେ ବାବୁ, କ୍ଲୀଁ ଜଗନ୍ନାଥ ଯୋଗମାୟା ବୋଲଇ, ଶୁଣ ସୁଜନେ ଦ୍ରବ୍ୟ ଉସସାର, ମହାଶୂନ୍ୟରୁ ଶବଦ ଜନ୍ମିଲା ଆଦି ଅନ୍ୟତମ ।

ଏହି ଭଜନଗୁଡ଼ିକ ମଧ୍ୟରୁ କେତେକରେ କବିଙ୍କର ଭକ୍ତି ପ୍ରାଣତାର ବୈଚିତ୍ର୍ୟମୟ ସ୍ୱରୂପ ପ୍ରଦର୍ଶିତ ହେବାବେଳେ କେତେକରେ ନିର୍ଗୁଣ ଉପାସନାର ପ୍ରାଚୁର୍ଯ୍ୟ ଦେଖିବାକୁ ମିଳେ । ଭଜନଗୁଡ଼ିକ ମଧ୍ୟରେ କେତେବେଳେ ଭକ୍ତକବି ସକାମ ଭକ୍ତିର ପ୍ରଚାର କରିଛନ୍ତି ତ କେତେ-ବେଳେ ନିଷ୍କାମ ଭକ୍ତିର ବର୍ଣ୍ଣନା କରିଛନ୍ତି । କେତେକ ଭଜନରେ ଶ୍ରୀଜଗନ୍ନାଥ ତଥା ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ମଧ୍ୟ ଆଗେଇ ଆସିଛନ୍ତି । କବିଙ୍କ ଦୃଷ୍ଟିରେ ଲୀଳାବତାର ଶ୍ରୀଜଗନ୍ନାଥ ହେଉଛନ୍ତି ଏକାଧାରରେ ବ୍ରହ୍ମା, ରୁଦ୍ର, ବିଷ୍ଣୁ, ଅଗ୍ନି, ଇନ୍ଦ୍ର ଆଦି । ଏହାଙ୍କ ନୟନରୁ ଚନ୍ଦ୍ର ସୂର୍ଯ୍ୟ, ଭୁଜରୁ ଅନନ୍ତମୂର୍ତ୍ତି, କଣ୍ଠରୁ ସରସ୍ୱତୀ ଆଦି ବିଭିନ୍ନ ଦେବତା ସୃଷ୍ଟିଲାଭ କରିଥିବା କଥା ସେ ଉଲ୍ଲେଖ କରିଛନ୍ତି । ଏହି ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଶକ୍ତିମାନ, ଆତଙ୍କନାଶନ, ପୁଣି ଆର୍ତ୍ତତ୍ରାଣ ଆଦି । ଶ୍ରୀମଦ୍ ଭାଗବତ ଗୀତାର ୧୧ଶ ଅଧ୍ୟାୟ ପ୍ରଭାବରେ କବି ଶ୍ରୀଜଗନ୍ନାଥଙ୍କର ଏପରି ପରିକଳ୍ପନା କରିଥିବାର ଅନୁମିତ ହୁଏ ।

'ଶ୍ରୀଜଗନ୍ନାଥଙ୍କର ଏତାଦୃଶ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କବି ଅନ୍ୟ ଏକ ଭଜନରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ପ୍ରାଞ୍ଜଳ ବର୍ଣ୍ଣନା କରିଛନ୍ତି । ପୁରୁଷୋତ୍ତମ କ୍ଷେତ୍ରର ବର୍ଣ୍ଣନା ମଧ୍ୟରେ ସିଂହଦ୍ୱାର, ବାଇଶ-ପାହାଚ, କଳ୍ପବଟ, ମୁକ୍ତିମଣ୍ଡପ ଏବଂ ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରାର ସୁନ୍ଦର ବର୍ଣ୍ଣନା କରିଛନ୍ତି । 'ଶ୍ରୀଜଗନ୍ନାଥ ଓ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଏଭଳି ସାବଲୀଳ ବର୍ଣ୍ଣନା କଲେ ମଧ୍ୟ 'ଏକାକ୍ଷର ବ୍ରହ୍ମ' ଭଜନ ମଧ୍ୟରେ ପୁନଶ୍ଚ ଏହାଙ୍କର ତାତ୍ତ୍ୱିକ ବର୍ଣ୍ଣନା କରିବାକୁ କବି ପଶ୍ଚାତ୍‌ପଦ ହୋଇ ନାହାନ୍ତି ।

'ଭାଗବତ ଭଜନମାଳା' ଭଜନ ମଧ୍ୟରେ କବି ସାଂସାରିକ ମାୟା ମୋହ, ଭୋଗବିଳାସ ପ୍ରତି ମନ ନ ବଳାଇ ଶେଷ ଜୀବନରେ ବ୍ରଜବାସୀ ହେବା ନିମନ୍ତେ ନିଜର ଆନ୍ତରିକ ବାସନା ଘୋଷଣା କରିଛନ୍ତି । କେବଳ ସେତିକି ନୁହେଁ ଉକ୍ତ ଭଜନ ମଧ୍ୟରେ ସେ ସମ୍ପୂର୍ଣ୍ଣ ଭାଗବତର ସୂଚନା ସଂକ୍ଷିପ୍ତରେ ମଧ୍ୟ ପ୍ରଦାନ କରିଛନ୍ତି । ମନୁଷ୍ୟ ସଂସାରରେ ଜନ୍ମଲାଭ କରି ସାଂସାରିକ ମାୟା ମୋହରେ ମାତି କିପରି ନିଜର ଇପ୍‌ସିତ ସାଧନା ମାର୍ଗରେ ଅଗ୍ରସର ହୋଇପାରୁନି ସେ ସମ୍ପର୍କରେ ବିସ୍ତୃତ ସୂଚନା କବି 'ଆଉ ଏଣିକିରେ ମନ ଭୁଲୁ କାହିଁକି' ଭଜନରେ ଦର୍ଶାଇଛନ୍ତି ।

ଜଗନ୍ନାଥ ଦାସଙ୍କର ସମସ୍ତ ଭଜନାବଳୀକୁ ଅନୁଶୀଳନ କଲେ ତନ୍ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ବିଶ୍ୱମୟତାଠାରୁ ଆରମ୍ଭ କରି ଶରୀର ଭେଦ ଭଜନ ଓ ବିଭିନ୍ନ ତାତ୍ତ୍ୱିକ ବ୍ୟାଖ୍ୟା ଦେଖିବାକୁ ମିଳେ । ଏହାର ମଧ୍ୟରେ ଭକ୍ତକବିଙ୍କର ଭକ୍ତିନିଷ୍ଠାଭ ଐଶ୍ୱର୍ଯ୍ୟ ସହିତ ପାଣ୍ଡିତ୍ୟର ପ୍ରାଚୁର୍ଯ୍ୟ ତଥା ଦାର୍ଶନିକ-ଦୃଷ୍ଟିକୋଣର ମାଧୁର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭାବରେ ପରିସ୍ଫୁଟ ହୋଇଛି ।

ପରିଶେଷରେ ଜଗନ୍ନାଥ ଦାସ ସ୍ୱରଚିତ ଭାଗବତ ଲାଗି ଓଡ଼ିଶାର ଘରେ ଘରେ ଯେତିକି ପରିଚିତ ଭଜନକାର ରୂପେ ସେତିକି ପରିଚିତ ନହେଲେ ମଧ୍ୟ ଖଞ୍ଜଣୀର ତାଳେ ତାଳେ ଯେତେବେଳେ ଏହି ଭଜନ-ଗୁଡ଼ିକ କର୍ଣ୍ଣକୁହରରେ ପ୍ରବେଶ କରେ ସେତେବେଳେ ପ୍ରାଣ ଅପୂର୍ବ ଭାବ ରାଜ୍ୟରେ ପୁଲକିତ ହୋଇଉଠେ ।



# ଓଡ଼ିଆ ଭାଗବତର ଶୁଦ୍ଧ ସଂସ୍କରଣ

ଶ୍ରୀ ନୀଳମଣି ମିଶ୍ର

ଅଷ୍ଟାଦଶ ପୁରାଣ ମଧ୍ୟରେ ଅନ୍ୟତମ ଶ୍ରେଷ୍ଠଗ୍ରନ୍ଥ ରୂପେ ସୁପରିଚିତ 'ଶ୍ରୀମଦ୍ ଭାଗବତ'ର ପ୍ରଚାର ଭାରତବର୍ଷ ତଥା ପୃଥିବୀର ଅନ୍ୟାନ୍ୟ ସ୍ଥାନରେ ଯଥେଷ୍ଟ ହୋଇ ପାରିଛି । 'ନିଗମ କଳ୍ପତରୁର ସୁସ୍ୱାଦମୟ ଫଳ ତଥା ଶୁକଦେବଙ୍କ ମୁଖନିଃସୃତ ଅମୃତମୟ ବାଣୀ' ରାଜା ପରୀକ୍ଷିତଙ୍କୁ ବ୍ରହ୍ମଶାପରୁ ମୁକ୍ତ କରି ଅମୃତମୟ ମୋକ୍ଷ ପଥରେ ପଥିକ କରାଇଥିବାର ପୌରାଣିକ କିମ୍ବଦନ୍ତୀ ରହିଛି । ସେଇଥିପାଇଁ ବୋଧହୁଏ ଶ୍ରୀମଦ୍ ଭାଗବତର ପ୍ରଥମ ଶ୍ଲୋକରେ କୁହାଯାଇଛି—

"ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତଦ୍ରବ ସଂଯୁତମ୍ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋ ରସିକା ଭୁବି ଭାବୁକାଃ ।"

ଆଲୋଚକମାନେ ଶ୍ରୀମଦ୍ ଭାଗବତକୁ 'ଷଡ଼୍‌ଦର୍ଶନ'ର ଟୀକା ସ୍ୱରୂପ ବୋଲି ବର୍ଣ୍ଣନା କରିଛନ୍ତି । ଦର୍ଶନ ଶାସ୍ତ୍ରର ନିଗୂଢ଼ ଭାବନାଗୁଡ଼ିକୁ ସର୍ବସାଧାରଣରେ ପ୍ରଚାର କରାଇବା ଉଦ୍ଦେଶ୍ୟରେ ବ୍ୟାସଦେବ 'ଶ୍ରୀମଦ୍ ଭାଗବତ'ର ରଚନା ଆରମ୍ଭ କରିଥିଲେ । ହିନ୍ଦୁ ଜଗତର ଏହି ଶ୍ରେଷ୍ଠ ଗ୍ରନ୍ଥଟିକୁ ପରବର୍ତ୍ତୀ କାଳରେ ଭିନ୍ନ ଭିନ୍ନ ପ୍ରାନ୍ତୀୟ ଭାଷାରେ ଅନୁବାଦ କରାଯାଇ ସଂସ୍କୃତ ଅନଭିଜ୍ଞ ସାଧାରଣ ଜନତା ମଧ୍ୟରେ ପ୍ରଚାର କରିବା ଲାଗି ଭାରତର ବହୁ କୃତୀ ସନ୍ତାନ ପ୍ରୟାସ ଚଳାଇ ସଫଳକାମ ହୋଇଥିଲେ । ତନ୍ମଧ୍ୟରେ ଓଡ଼ିଶାର ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଧୁରୀଣ ବିଦ୍ୱାନ ଅତିବଡ଼ି ଜଗନ୍ନାଥ ଦାସ ଅନ୍ୟତମ ।

ସୂର୍ଯ୍ୟବଂଶର ଗଜପତି ରାଜା ପ୍ରବଳ ପରାକ୍ରମୀ ପୁରୁଷୋତ୍ତମ ଦେବଙ୍କ ପୁତ୍ର ତଥା ମହାବୀର କପିଳେନ୍ଦ୍ର ଦେବଙ୍କ ପୌତ୍ର ଗଜପତି ପ୍ରତାପରୁଦ୍ରଙ୍କ ସମୟରେ ଓଡ଼ିଆ ଭାଗବତର ପ୍ରଣେତା ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତର ଓଡ଼ିଆ ଅନୁବାଦ ଆରମ୍ଭ କରିଥିଲେ । ଏ ସମ୍ବନ୍ଧରେ ଅନେକ କୌତୂହଳୋଦ୍ଦୀପକ ଆଖ୍ୟାୟିକା ଶୁଣିବାକୁ ମିଳେ । ସେହି ଆଖ୍ୟାୟିକାମାନଙ୍କରୁ ଜଣାଯାଏ ଯେ, କବି ପରମ ଭାଗବତ ଜଗନ୍ନାଥ ଦାସ ଶ୍ରୀ ରାଧାଙ୍କ ଅଂଶାବତାର ଥିଲେ ଏବଂ ସେହି କିମ୍ବଦନ୍ତୀ ଲୋକମୁଖରେ ପ୍ରଚଳିତ ହୋଇଯାଇଥିଲେ, ତାଙ୍କୁ ବହୁ କଠୋର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା; କିନ୍ତୁ ଭକ୍ତ ଶିରୋମଣି ଜଗନ୍ନାଥ ପ୍ରତ୍ୟେକଥର ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଥିଲେ । ଏପରି କି, କିମ୍ବଦନ୍ତୀ ଅନୁସାରେ ଜଗନ୍ନାଥ ଦାସ ଗଜପତିଙ୍କ ରାଣୀଙ୍କୁ ଦୀକ୍ଷାଦେବାର ଅଧିକାର ପ୍ରାପ୍ତ ହୋଇଥିଲେ । ପରିଶେଷରେ ଭକ୍ତପ୍ରବର ଶ୍ରୀଚୈତନ୍ୟ ଦେବଙ୍କ ଦ୍ୱାରା ସେ 'ଅତିବଡ଼' ପଦବୀରେ ଭୂଷିତ ହୋଇ ସାଧୁ ସମାଜରେ ଭକ୍ତାଗ୍ରଣୀ ରୂପେ ସମ୍ମାନିତ ହୋଇଥିଲେ ।

ପରମ ଭାଗବତ ଅତିବଡ଼ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ପ୍ରାମାଣିକ ଗ୍ରନ୍ଥ ହେଉଛି—ଦିବାକର ଦାସଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ' । ସେହି ଗ୍ରନ୍ଥର ବିବରଣୀରୁ ଜଣାଯାଏ ଯେ, ଭକ୍ତକବି ଜଗନ୍ନାଥ ପୁରୀ ଜିଲ୍ଲାର କପିଳେଶ୍ୱରପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଭଗବାନ୍ ଓ ମାତାଙ୍କ ନାମ ଥିଲା ପଦ୍ମାବତୀ । ପଣ୍ଡିତ ଭଗବାନ୍ ଶ୍ରୀମନ୍ଦିର ମଧ୍ୟରେ ପୁରାଣପଣ୍ଡା ରୂପେ ନିଯୁକ୍ତ ହୋଇଥିଲେ ।

ଭକ୍ତକବି ଜଗନ୍ନାଥଙ୍କ ଜନ୍ମ କେଉଁ ସାଲର କେଉଁ ଦିନରେ ହୋଇଥିଲା ତାହାର ସଠିକ ବିବରଣୀ ଜଣାନଥିଲେ ହେଁ ଭିନ୍ନ ଭିନ୍ନ ଆଲୋଚକମାନେ ତାଙ୍କ ଜନ୍ମସାଲ ସମ୍ବନ୍ଧରେ ଭିନ୍ନ ମତ ପୋଷଣ କରନ୍ତି । ତେବେ ଯାହାହେଉ, ତାଙ୍କର ଜନ୍ମ ଖ୍ରୀ: ଅ: ୧୪୯୦।୯୧ ପୂର୍ବରୁ ହୋଇଥିବା ଅନୁମାନ କରାଯିବା ଆଦୌ ଅସମୀଚୀନ ନୁହେଁ । କାରଣ, ଶ୍ରୀଚୈତନ୍ୟ ଦେବ ଖ୍ରୀ: ଅ: ୧୫୧୦ ସାଲରେ ଶ୍ରୀମନ୍ଦିର ମଧ୍ୟରେ ଜଗନ୍ନାଥ ଦାସଙ୍କୁ ଭେଟିଥିବାର ଐତିହାସିକ ପ୍ରମାଣ ଉପଲବ୍ଧ ହୁଏ ।

ଖ୍ରୀ: ଅ: ୧୫୧୦ ବେଳକୁ କବି ଜଗନ୍ନାଥ ଶ୍ରୀମଦ୍ ଭାଗବତର ଓଡ଼ିଆ ପଦ୍ୟାନୁବାଦ କରି ସାରିଥିଲେ; ଏବଂ କଳ୍ପବଟ ତଳେ ଶ୍ରୀ ଚରଣେଶଙ୍କ ସମ୍ମୁଖରେ ବସି ଦଶମ ସ୍କନ୍ଧର ଲୀଳା ଆଲୋଚନା କରୁଥିଲା ସମୟରେ ଶ୍ରୀଚୈତନ୍ୟଙ୍କ ସହିତ ତାଙ୍କର ପ୍ରଥମ ଭେଟ ହୋଇଥିଲା ।

"ଶ୍ରୀ ଅତିବଡ଼ ଜଗନ୍ନାଥ । ଦଶମ ସ୍କନ୍ଧ ଭାଗବତ ॥
ଶ୍ରୀକୃଷ୍ଣ ମୂର୍ତ୍ତିର ସ୍ୱରୂପ । ପଢ଼ନ୍ତି ଗଣେଶ ଅଗ୍ରେ ॥
ପୁରାଣ ପଢ଼ିବାର କାଳେ । ଭକତି ପ୍ରକାଶନ୍ତି ବଳେ ॥
ନାମ ଶ୍ରୀ ଜଗନ୍ନାଥ ଦାସ । ସକଳ ଗୁଣରେ ପ୍ରକାଶ ॥
ସୁ ସାଧୁଗଣ ସଙ୍ଗେ ମିଶି । କଳ୍ପବଟର ମୂଳେ ବସି ॥
ପ୍ରାକୃତ ଭାଗବତ ବାଣୀ । ଶ୍ରୀକୃଷ୍ଣ ଲୀଳା ତରଙ୍ଗିଣୀ ॥
ନିର୍ମଳ ସୁଧା ପାନ କରି । ସମସ୍ତେ ଛନ୍ତି କର୍ଣ୍ଣ ଡେରି ॥
ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ॥
ବଟତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥
ପ୍ରେମ ଭାବରେ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ॥"

( ଶ୍ରୀ ଜଗନ୍ନାଥ ଚରିତାମୃତ, ଦ୍ୱିତୀୟ ଅଧ୍ୟାୟ )

ଶ୍ରୀମଦ୍ ଭାଗବତ ପରି ଏକ ଦୁରୂହ ଦାର୍ଶନିକ ଚିନ୍ତାଧାରା ସମ୍ବଳିତ ଗ୍ରନ୍ଥକୁ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ଅନୁବାଦ କରିଥିବା ଯୋଗୁ ଜଗନ୍ନାଥ ଦାସ କେବଳ ଓଡ଼ିଶାର ଜନସାଧାରଣଙ୍କର ମହୋପକାର କରିଥିଲେ ତା'ନୁହେଁ, ପଡ଼ୋଶୀ ବଙ୍ଗ ଦେଶର ଭାଗବତ ଅନୁବାଦକଙ୍କୁ ମଧ୍ୟ ପରୋକ୍ଷରେ ସାହାଯ୍ୟ କରିଥିଲେ ।

ବଙ୍ଗଳାଭାଷାରେ ଶ୍ରୀମଦ୍ ଭାଗବତର ପ୍ରଥମ ଅନୁବାଦକ ରୂପେ ବିପ୍ର ସନାତନ ବିଦ୍ୟାବାଗୀଶ ପ୍ରଖ୍ୟାତି ଅର୍ଜନ କରିଛନ୍ତି । ସେ ଶ୍ରୀମଦ୍ ଭାଗବତର ବଙ୍ଗାନୁବାଦ କରିବା ବେଳେ ଅନନ୍ୟୋପାୟ ହୋଇ 'ଶ୍ରୀ ଜଗନ୍ନାଥ ଦାସ କୃତ ଭାଗବତର ଅପୂର୍ବ ବର୍ଣ୍ଣନାର ଅବଲମ୍ବନ ଗ୍ରହଣ କରିଥିଲେ । ସନ୍ ୧୨୭୩ ସାଲ ଆଷାଢ଼ ୧୦ ଦିନ ଶ୍ରୀମଦ୍ ଆନନ୍ଦ ଶର୍ମାଙ୍କ ଦ୍ୱାରା ନକଲ କରାଯାଇଥିବା ଖଣ୍ଡିଏ ବଙ୍ଗଳା ଭାଗବତ ପାଣ୍ଡୁଲିପିରୁ ସନାତନ ଦାସଙ୍କ ସ୍ୱୀକାରୋକ୍ତି ସମ୍ବନ୍ଧରେ ଜଣାଯାଏ—

"ଶୁନ ଶୁନ ଶ୍ରୋତାଗନ କରି ନିବେଦନ ।
ପ୍ରଥମ ହଇଛେ ଗ୍ରନ୍ଥ ଲେଖିଲୁଁ ଆଧନ ॥
ଦଶମେର ଶେଷ ଷଷ୍ଠ ଭାଖ୍ୟା ନ ପାଇନ ।
ଅନେକତ ପାଣି ଗ୍ରାମେ ଗ୍ରାମେ ବେଡ଼ାଇନ ॥
ଏହିହେତୁ ଉତ୍କଳ ଭାଷା କରିଲ ଲିଖନ ।
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ॥
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହଇୟା ।
ବଙ୍ଗଜ ଭାଷାୟ ଉତ୍କଳ ମିଶାଇୟା ॥
ଦଶମସ୍କନ୍ଧ ଭାଗବତ ସମ୍ପୂର୍ଣ୍ଣ ହଇତେ ।
ଷଡ଼ ଅଧ୍ୟା ଲିଖିଲାମ ଶ୍ରୀଗୁରୁ ଇଚ୍ଛାତେ ॥
ଇଥେ ସାଧୁଗନ ମୋର ଦୋଷ ନା ଲଇବେ ।
ଭାଗବତ ସାଧୁବାକ୍ୟ ଆନନ୍ଦେ ଶୁନିବେ ॥"
( ଭାଷାବର୍ଣ୍ଣ ଭାଗବତ B/10, ରାଜ୍ୟ ସଂଗ୍ରହାଳୟ ପୋଥି )

କବି ସନାତନ ଦାସ ବିଦ୍ୟାବାଗୀଶ, ଦଶମ ସ୍କନ୍ଧର ଶେଷ ଛ' ଅଧ୍ୟାୟରେ, କବି ଜଗନ୍ନାଥ ଦାସଙ୍କ ଭାଗବତର କିବାଷର ପଦାବଳୀକୁ ବଙ୍ଗଳା ଅକ୍ଷରରେ ଲେଖି ନିଜ ପୁସ୍ତକରେ ସଂଲଗ୍ନ କରିଛନ୍ତି ।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଅତିବଡ଼ି ଜଗନ୍ନାଥ ଦାସଙ୍କ ଅନୁବାଦ ପଡ଼ୋଶୀ ରାଜ୍ୟ ବଙ୍ଗୀୟ ଅନୁବାଦକଙ୍କୁ ବିଶେଷ ଭାବରେ 'ପ୍ରଭାବିତ କରିଥିଲା । ଏପରିକି, ଅନୁବାଦକ ସନାତନ ଦାସ ବିଦ୍ୟାବାଗୀଶ ବାଧ ହୋଇ ସ୍ୱ ଅନୁବାଦରେ ଜଗନ୍ନାଥ ଦାସଙ୍କ ଅନୁବାଦର ଛ'ଅଧ୍ୟାୟ ଅବିକଳ ଗ୍ରହଣ କରି, ପାଠକମାନଙ୍କ ନିକଟରେ ନିଜର ଅପାରଗତା ଲାଗି କ୍ଷମା ପ୍ରାର୍ଥନା କରିଛନ୍ତି ।

ବର୍ତ୍ତମାନ ପ୍ରଶ୍ନ ହେଉଛି—କବି ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତର ଯେଉଁ ଓଡ଼ିଆ ଅନୁବାଦ କରିଛନ୍ତି, ସେଥି ମଧ୍ୟରେ କେତେ ଅଂଶ ପ୍ରକ୍ଷିପ୍ତ ଓ କେତେ ଅଂଶ ପ୍ରାମାଣିକ, ସେ ସମ୍ବନ୍ଧରେ ଆଲୋଚନା କରିବା । ପୁସ୍ତକାକାରରେ ପ୍ରକାଶିତ ଓଡ଼ିଆ ଭାଗବତ ଚଉଦଖଣ୍ଡି ପୋଥି ମିଳୁଛି । ଯଥା—ପ୍ରଥମ ସ୍କନ୍ଧରୁ, ଦ୍ୱାଦଶ ସ୍କନ୍ଧ ଓ ଗୁପ୍ତଭାଗବତ ବା

ଶେଷର ଚରଣ । ଉକ୍ତ ଚଉଦ ଖଣ୍ଡି ପୁସ୍ତକରେ ଜଗନ୍ନାଥ ଦାସଙ୍କ ନାମ ଭଣିତାରେ ମିଳୁଛି; କିନ୍ତୁ ପରବର୍ତ୍ତୀ ଆଲୋଚନାରୁ ଜଣାଯାଏ ଯେ, ଓଡ଼ିଆ ଭାଗବତର ଶେଷ ତିନି ସ୍କନ୍ଧ ଅର୍ଥାତ୍ ଦ୍ୱାଦଶ ସ୍କନ୍ଧ, ତ୍ରୟୋଦଶ ସ୍କନ୍ଧ ଓ ଗୁପ୍ତ ଭାଗବତର ରଚନା ଅତିବଡ଼ି ଜଗନ୍ନାଥ ଦାସଙ୍କ ଦ୍ୱାରା ସମ୍ପନ୍ନ ହୋଇ ନଥିଲା ।

ଓଡ଼ିଆ ଭାଗବତର ଦ୍ୱାଦଶ ସ୍କନ୍ଧର ପ୍ରଥମ ଅଧ୍ୟାୟରୁ ଜଣାଯାଏ ଯେ, କବି ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧ ରଚନା କରିବା ପରେ ଇହଲୀଳା ସାଙ୍ଗ କରିଥିଲେ । ଅର୍ଥାତ୍ ଏକାଦଶ ସ୍କନ୍ଧର ଶେଷ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କ ଗୋଲୋକ ଯାତ୍ରା ବର୍ଣ୍ଣିତ ହୋଇଛି ଏବଂ ତତ୍ପରେ ପରେ ଭକ୍ତକବି କାଳର କରାଳ କବଳରେ ସଂସାରଲୀଳା ଶେଷ କରିଥିଲେ ।

"ସେ ନାରାୟଣ ପଦେ ମୁହିଁ । ଶରଣ ଯାଇ ସେ ଅଛଇ ॥
ଦ୍ୱାଦଶ ସ୍କନ୍ଧ ଭାଗବତ । ତ୍ରୟୋଦଶ ଅଧ୍ୟା ନିମିତ ॥
ଜଗନ୍ନାଥ ଦାସ ପ୍ରକାଶ । କରିତ ଲୋଡ଼ୁଅଛି ଆଶ ॥
ନାମ ମୋହର ମହାଦେବ । ବିପ୍ର କୁଳରେ ମୁଁ ସମ୍ଭବ ॥
କୃଷ୍ଣ ସଙ୍ଗତେ ଜଗନ୍ନାଥ । ଚଳିଲେ ଗୋଲୋକ ଯେ ପଥ ॥
ମୁଁ ଏହା କରଇ ବିସ୍ତର । ଅଷ୍ଟାଦଶ ପୁରାଣ ସାର ॥
ଦ୍ୱାଦଶ ସ୍କନ୍ଧ ତ୍ରୟୋଦଶ । ଯେମନ୍ତେ ହୋଇବ ପ୍ରକାଶ ॥
ପୁରାଣମାନଙ୍କୁ ଉଦ୍ଧାରି । ସୂତ ଯା କହିଲେ ବିସ୍ତରି ॥"

ପ୍ରସ୍ତୁତ ଉଦ୍ଧୃତାଂଶର ପାଠ ସମ୍ବନ୍ଧରେ ବିଭିନ୍ନ ସ୍ଥାନରୁ ସଂଗୃହୀତ ତାଳପତ୍ର ପୋଥିର ପାଠ ସମାନ ରହିଛି । ତେଣୁ ଏହି ପାଠ ସମ୍ବନ୍ଧରେ ସନ୍ଦେହର ଅବକାଶ ରହୁନାହିଁ ।

ଓଡ଼ିଆ ଭାଗବତର ଏକାଦଶ ସ୍କନ୍ଧରେ କବି ଜଗନ୍ନାଥ ଦାସ ଶ୍ରୀକୃଷ୍ଣଙ୍କ ଗୋଲୋକ ଗମନ (ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶୁକପରୀକ୍ଷିତ ସମ୍ବାଦେ ଶ୍ରୀକୃଷ୍ଣ ବୈକୁଣ୍ଠ ଗମନଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ) ବୃତ୍ତାନ୍ତ ବର୍ଣ୍ଣନା କରିବା ପରେ; ବୋଧହୁଏ ଅଳ୍ପ କେତେଦିନ ମଧ୍ୟରେ ଇହଲୀଳା ଶେଷ କରିଥିବେ । ଅନ୍ୟଥା ସଂସ୍କୃତ ଭାଗବତ୍ ଅନୁସାରେ ସେ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଅନୁବାଦ

ଶେଷ କରିବାରେ ନିଶ୍ଚୟ ମନ ବଳାଇ ଥା'ନ୍ତେ । ତେଣୁ ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧର ରଚନା ପରେ ଇହଧାମ ତ୍ୟାଗ କରିଥିବେ ବୋଲି ଅନୁମାନ କରିବା ଅସମୀଚୀନ ନୁହେଁ ।

ଏଠାରେ ଅନ୍ୟ ପ୍ରକାର ସନ୍ଦେହର ଉତ୍ଥାପନ କରାଯାଇପାରେ । ମନେ କରାଯାଉ, ମହାଦେବ ଦାସ ନାମକ ଜନୈକ କବି ହୁଏତ, ଜଗନ୍ନାଥ ଦାସଙ୍କ ମୃତ୍ୟୁ ପରେ, ତାଙ୍କ (ଜଗନ୍ନାଥଙ୍କ) ସ୍ୱହସ୍ତ ପୋଥିର ଦ୍ୱାଦଶ ସ୍କନ୍ଧରେ ପୂର୍ବ ବର୍ଣ୍ଣିତ ପଦାବଳୀର ସଂଲଗ୍ନ କରି ଦେଶରେ ନିଜର କୃତିତ୍ୱ ସମ୍ବନ୍ଧରେ ପ୍ରଚାର କରାଇଥିବେ; କିମ୍ବା ସେ (ମହାଦେବ ଦାସ) ଜଗନ୍ନାଥ ଦାସଙ୍କର ଅନ୍ତରଙ୍ଗ ବନ୍ଧୁ ଭାବରେ, ଭାଗବତର ଦ୍ୱାଦଶସ୍କନ୍ଧରେ ନିଜ ନାମ ଉଲ୍ଲେଖ କରିବାକୁ ଅନୁରୋଧ କରିଥିବେ; କିନ୍ତୁ ଭାଗବତର ୧ମ ସ୍କନ୍ଧରୁ ୧୧ଶ ସ୍କନ୍ଧର ଭାଷା ଓ ଦ୍ୱାଦଶ ସ୍କନ୍ଧର ଭାଷାଗତ ତାରତମ୍ୟରୁ ଏ ପ୍ରକାର ଅନୁମାନ ଅମୂଳକ ବୋଲି ମନେହୁଏ ।

ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଚ, ହ, ବା, ଖଳୁ ପ୍ରଭୃତି ଶବ୍ଦର ଅର୍ଥ ଥିଲେ ହେଁ, ଅନେକ ସ୍ଥଳରେ ସେଗୁଡ଼ିକ କେବଳ ପାଦପୂରଣ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଏ । ମାତ୍ର ସେ ପ୍ରକାର ପ୍ରୟୋଗ, କବିଙ୍କର ଅପାରଗତା ସୂଚାଇ ଥାଏ । ସାଧାରଣତଃ ପ୍ରତିଭାଶାଳୀ କବିମାନେ ସେ ଧରଣର ପଦ ପ୍ରୟୋଗ କରିବାକୁ କୁଣ୍ଠାବୋଧ କରନ୍ତି । ଠିକ୍ ସେହିପରି, ଯେ, ହିଁ, ତ, ଆଦି ପଦ ନିରର୍ଥକ ଭାବରେ ଅନେକ ସ୍ଥଳରେ ଓଡ଼ିଆ କବିତାରେ ଦେଖାଯାଏ । ଯେଉଁ କବିମାନେ ପଦରଚନା ସମୟରେ ଅକ୍ଷର ଓ ମାତ୍ରା ଦୃଷ୍ଟିରୁ ଯତିପାତର ଅସୁବିଧାର ସମ୍ମୁଖୀନ ହୁଅନ୍ତି, ସେମାନେ ବାଧ୍ୟ ହୋଇ ଉପର୍ଯ୍ୟୁକ୍ତ ନିରର୍ଥକ ପଦଗୁଡ଼ିକୁ ସ୍ୱ ସ୍ୱ କବିତାରେ ବ୍ୟବହାର କରିଥାନ୍ତି ।

କବି ଜଗନ୍ନାଥ ଦାସ ଏଭଳି ନିରର୍ଥକ ପଦ ପ୍ରୟୋଗ କରି, ଯେନତେନ ପ୍ରକାରେଣ ପାଦପୂରଣ କରିଥିବାର ଦୃଷ୍ଟାନ୍ତ ଭାଗବତରୁ ପ୍ରାୟ ମିଳେ ନାହିଁ । ମାତ୍ର ମହାଦେବ ଦାସଙ୍କ ରଚନା ଦ୍ୱାଦଶ ସ୍କନ୍ଧରେ ପାଦ-ପୂରଣ ଉଦ୍ଦେଶ୍ୟରେ 'ଯେ' ର ପ୍ରୟୋଗ ଅନେକ ସ୍ଥଳରେ ଦେଖାଯାଏ । ଉଦାହରଣ ସ୍ୱରୂପ ଦ୍ୱାଦଶ ସ୍କନ୍ଧର ପ୍ରଥମ ଅଧ୍ୟାୟରେ କେତୋଟି ଉଦାହରଣ ଏଠାରେ ଉଦ୍ଧୃତ ହେଲା—

"ସେ ନାରାୟଣ ପାଦେ ମୁହିଁ । ଶରଣପାଇ ଯେ ଅଛଇ ॥"

× × × ×

ସୁତ କହନ୍ତି ଯେ ଆନନ୍ଦେ । × × ×
ତା'ସୁତ ଅଜ ଯେ ପାରୁଣ । × × ×
ସୁର ଯେ ଆବର ଅର୍ବୁଦ । × × ×
ଚନ୍ଦ୍ରଭାଗା ଯେ ସିନ୍ଧୁ ତଟ । × × ×
କୁରୁକ୍ଷେତ୍ର ଏ ଯେ ଅଯୋଧ୍ୟା । × × ×
ଜ୍ଞାନ ଯେ ଧର୍ମ ନ ଦେଖଇ । × × ×

କେବଳ ଏହି ନିରର୍ଥକ ପଦ-ଯୋଜନା-ରୂପକ ଏକମାତ୍ର ଦୋଷରୁ ମହାଦେବ ଦାସ ଓ ଜଗନ୍ନାଥ ଦାସଙ୍କର ଭାଷାଗତ ତାରତମ୍ୟ ଜଣାପଡ଼ୁଛି ତା'ନୁହେଁ, ଏ' ସମ୍ବନ୍ଧରେ ଅନୁବାଦଗତ କୁଶଳତା ମଧ୍ୟ ପ୍ରଭୂତ ସାକ୍ଷ ପ୍ରଦାନ କରୁଛି । କବି ଜଗନ୍ନାଥ ଦାସ ଅନୁବାଦ କ୍ଷେତ୍ରରେ ଯେପରି ଦକ୍ଷତା ଦେଖାଇଛନ୍ତି ସେଭଳି ଦକ୍ଷତା ଦ୍ୱାଦଶ ସ୍କନ୍ଦର ଅନୁବାଦରେ ଦେଖାଯାଏ ନାହିଁ ।

"ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍ ।
ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ ସୂରୟଃ ॥
ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋ ମୃଷା ।
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି ॥"

ଜଗନ୍ନାଥଙ୍କ ଅନୁବାଦ— × × × । ଅନାଦି ପରମ କାରଣ ॥
ଯାହାର ଆଦି ମଧ୍ୟ ଅନ୍ତ । ବସ୍ତୁର ନ ଘଟେ ଜଗତେ ॥
ଇନ୍ଦ୍ରାଦି ଅର୍ଥ ନ ଜାଣନ୍ତି । ସତ୍ୟ ଯେ ନିତ୍ୟ ପ୍ରକାଶନ୍ତି ॥
ଆନନ୍ଦ ମନେ ବେଦସାର । ବ୍ରହ୍ମାରେ ଯେ ପାଏ ନିସ୍ତାର ॥
ଯାର ସ୍ୱରୂପ ହୃଦେ ଚିନ୍ତି । ବେଦ ପୁରୁଷ ନ ଜାଣନ୍ତି ॥
ମୃତ୍ତିକା ବିକାର ଯେମନ୍ତ । ଜଳ ଅନଳେ ସୁଯନ୍ତ୍ରିତ ॥
ରୂପ ଅରୂପ ସ୍ଥିତି ତନ୍ତ । ଯାହା ଯୋଗରେ ଅନୁମାନ ॥

ସ୍ୱଭାବେ ନୋହେ ଯେ ଏମନ୍ତ । ଏ ସାଂଖ୍ୟ ଯୋଗୀଙ୍କର ମତ ॥
ଆତ୍ମା ପ୍ରକାଶେ ଜନ୍ମ ହୋଇ । ନରଂତେ କୁହୁକ ବୋଲଇ ॥
ସତ୍ୟ ପରମାନନ୍ଦ ହରି । ଯାହା ଭାବଲେ ଉବୁ ତରି ॥
ତାହା ଚରଣେ ନତି ଧ୍ୟାନ । କରି ତରନ୍ତି ସୁଜ୍ଞଜନ ॥"

(ଭାଗବତ । ପ୍ରଥମ ସ୍କନ୍ଧ । ୧ମ ଅଧ୍ୟାୟ)

ଉପର୍ଯ୍ୟୁକ୍ତ ଅନୁବାଦରୁ ସ୍ପଷ୍ଟ ଧାରଣା ହୁଏ ଯେ, କବି ଜଗନ୍ନାଥ ମୂଳ ସଂସ୍କୃତ ଦାର୍ଶନିକ ପଦାବଳୀକୁ ନିଜେ ସୁସ୍ପଷ୍ଟ ରୂପେ ହୃଦୟଙ୍ଗମ କରି, ଓଡ଼ିଶାର ସାଧାରଣ ଜନତାର ଅର୍ଥବୋଧ ହେଲାପରି ଶବ୍ଦାବଳୀର ଯୋଜନାଦ୍ୱାରା ଓଡ଼ିଆ ବାକ୍ୟ ରଚନାର ଗୁମ୍ଫରେ ପକାଇ ଅନୁବାଦ କରିଛନ୍ତି । ସେ ମୋଟ ଉପରେ ସଂସ୍କୃତ ବାକ୍ୟ ରଚନାର କେବଳ ଭାବଧାରାର ଅବଲମ୍ବନ କରିଛନ୍ତି ମାତ୍ର । କବି ଜଗନ୍ନାଥ ଦାସ ଭାବାନୁବାଦର ଏହି ପରିପାଟୀ କେବଳ ମୂଳ ଶ୍ଳୋକରେ ଅବଲମ୍ବନ କରିଛନ୍ତି ତା'ନୁହେ, ସେ ପ୍ରଥମ ସ୍କନ୍ଧରୁ ଏକାଦଶ ସ୍କନ୍ଧ ସୁଦ୍ଧା ସେହି ନୀତି ଅନୁସରଣ କରିଛନ୍ତି ।

କେବଳ ସେତିକ ନୁହେଁ, କବି ଜଗନ୍ନାଥ ଦାସ ମୂଳ ସଂସ୍କୃତ ଭାଗବତର ୩୨୨ (ତିନିଶହ ବାଇଶ) ଅଧ୍ୟାୟକୁ (ଏକାଦଶ ସ୍କନ୍ଧ ସୁଦ୍ଧା) ତିନିଶହ ଅଠେଇଶି ଅଧ୍ୟାୟରେ ଅନୁବାଦ କରିଛନ୍ତି । ସ୍ଥଳବିଶେଷରେ ସେ ଦୁଇ ଅଧ୍ୟାୟକୁ ଗୋଟିଏ ଅଧ୍ୟାୟରେ ଅନୁବାଦ କରିବା ସଙ୍ଗେ ସଙ୍ଗେ ଅନ୍ୟ କେତେକ ସ୍ଥଳରେ ବିଷୟଗତ ସ୍ପଷ୍ଟୀକରଣ ନିମିତ୍ତ ଅଧ୍ୟାୟ ସଂଖ୍ୟା ବୃଦ୍ଧି କରିଛନ୍ତି । ଏ ପ୍ରକାର ବ୍ୟତିକ୍ରମ କେବଳ ଅଷ୍ଟମ, ଦଶମ ଓ ଏକାଦଶ ସ୍କନ୍ଧରେ ପରିଲକ୍ଷିତ ହୁଏ ।

ଏହିସବୁ ପ୍ରମାଣ ବଳରେ ବିଚାର କଲେ ଜଣାଯାଏ ଯେ, କବି ଜଗନ୍ନାଥ ଦାସ ନିଜ ପ୍ରତିଭାର ସ୍ୱାତନ୍ତ୍ର୍ୟ ଦେଖାଇ ଭାଗବତ ଗ୍ରନ୍ଥର ପ୍ରଥମ ସ୍କନ୍ଧରୁ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ଅନୁବାଦ ଶେଷକରି ବୈକୁଣ୍ଠ-ଭୁବନକୁ ଶ୍ରୀକୃଷ୍ଣଙ୍କ ଅନୁଗମନ କରିଥିଲେ । ତାଙ୍କ ଅନ୍ତେ ଭାଗବତ ଗ୍ରନ୍ଥର ଅପୂର୍ଣ୍ଣତା ସମ୍ବନ୍ଧରେ ଚିନ୍ତାକରି ମହାଦେବ ଦାସ କେବଳ ଦ୍ୱାଦଶ ସ୍କନ୍ଧର ଅନୁବାଦ କରିଥିଲେ ।

ମୂଳ ସଂସ୍କୃତ ଭାଗବତ ବାର ଖଣ୍ଡରେ ସମାପ୍ତ ହୋଇଥିଲେ ହେଁ, ଓଡ଼ିଆରେ ତ୍ରୟୋଦଶ ସ୍କନ୍ଧ ଓ ଗୁପ୍ତ ଭାଗବତ ଶୀର୍ଷକ ଆଉ ଦୁଇଗୋଟି ଭାଗ ଦେଖିବାକୁ ମିଳେ । ତ୍ରୟୋଦଶ ସ୍କନ୍ଧରେ ମୋଟ ତେରଟି ଅଧ୍ୟାୟ ରହିଛି । ଉକ୍ତ ଅଧ୍ୟାୟଗୁଡ଼ିକ ମଧ୍ୟରେ ଷଷ୍ଠ ଓ ଦ୍ୱାଦଶ ଅଧ୍ୟାୟ ବ୍ୟତୀତ ଅନ୍ୟ ଏଗାରଟି ଅଧ୍ୟାୟର ଭଣିତାରେ କବିଙ୍କ ନାମ "ଦ୍ୱାରକା ଜଗନ୍ନାଥ ଦାସ" ବୋଲି ରହିଛି ।

"ଦ୍ୱାରକା ଜଗନ୍ନାଥ ଦାସ । ଆନନ୍ଦେ କଲେ ପରକାଶ ॥

× × ×

ବ୍ରହ୍ମାଣ୍ଡ ମଧ୍ୟେ ମହାରସ । ଦ୍ୱାରକା ଜଗନ୍ନାଥ ଦାସ ॥

× × ×

ଦ୍ୱାରିକା ଜଗନ୍ନାଥ ଦାସ । ଯେତେ କହିଲେ କୃଷ୍ଣରସ ॥"

ଜଗନ୍ନାଥ ଦାସ ଭାଗବତର ପ୍ରଥମ ସ୍କନ୍ଧଠାରୁ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ପ୍ରତ୍ୟେକ ଅଧ୍ୟାୟର ଶେଷରେ "କହିଲି", 'କହଇ', 'ବ୍ରାହ୍ମଣ', 'ପାମର' ଆଦି ପଦ ପରେ ଜଗନ୍ନାଥ ଦାସ ବୋଲି ଭଣିତା କରିଛନ୍ତି । କୁତ୍ରାପି ସେ ନିଜକୁ "ଦ୍ୱାରକା ଜଗନ୍ନାଥ" ବୋଲି ଚିହ୍ନାଇ ନାହାନ୍ତି । ତେଣୁ ଓଡ଼ିଆ ଭାଗବତ ତ୍ରୟୋଦଶ ସ୍କନ୍ଧର ପ୍ରଣେତା ବୋଧହୁଏ 'ଦ୍ୱାରକା' ନାମଧାରୀ ଅନ୍ୟ ଜଣେ କବି ହେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭକ୍ତ କିମ୍ବା ଭକ୍ତକବି ଜଗନ୍ନାଥ ଦାସଙ୍କ ଶିଷ୍ୟ ପରମ୍ପରାରେ ଅନେକ ବ୍ୟକ୍ତି ଥିଲେ । ତେଣୁ ସେ ନିଜ ନାମ ସହିତ 'ଜଗନ୍ନାଥ' ପଦ ଯୋଗକରି ସ୍ୱଭକ୍ତିର ପରାକାଷ୍ଠା ଦେଖାଇଛନ୍ତି ।

ଆହୁରି ମଧ୍ୟ କବି ଜଗନ୍ନାଥ ଦାସ ଭାଗବତର ଏକାଦଶ ସ୍କନ୍ଧରେ 'ଭକ୍ତିଯୋଗ', 'ଜ୍ଞାନଯୋଗ', ବିଭୂତି ଯୋଗ, ସିଦ୍ଧି ଯୋଗ, ସୃଷ୍ଟିତତ୍ତ୍ୱ ଓ ଶରୀରତତ୍ତ୍ୱ ପ୍ରଭୃତି ଦାର୍ଶନିକ ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିବା ପରେ; ପୁଣି ତ୍ରୟୋଦଶ ସ୍କନ୍ଧରେ ଭକ୍ତିଲକ୍ଷଣ (୪ର୍ଥ ଅଧ୍ୟାୟ), ଜ୍ଞାନ ଲକ୍ଷଣ (ପଞ୍ଚମ ଅଧ୍ୟାୟ), କାୟାସୃଜନ (ନବମ ଅଧ୍ୟାୟ), ବିଭୂତି ଯୋଗ (ଦଶମ ଅଧ୍ୟାୟ) ଆଦିର ବର୍ଣ୍ଣନା କରିଥା'ନ୍ତେ କାହିଁକି ?

ଏତଦ୍‌ବ୍ୟତୀତ ଏକାଦଶ ସ୍କନ୍ଧର ତ୍ରିଂଶ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କଠାରୁ ବିଦାୟ ନେଇ—

"ରତ୍ନପାଦୁକା ମୁଣ୍ଡେ କର । ଉଦ୍ଧବ ବୃନ୍ଦେ ତାହା ଧର ॥"

ଉତ୍ତରପଥରେ ତପସ୍ୟାରତ ଥିବାର ବର୍ଣ୍ଣନା ଥିବାବେଳେ, ପୁଣି ଏକାଦଶ ସ୍କନ୍ଧରେ "ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ" ଓ ଶ୍ରୀକୃଷ୍ଣଙ୍କ ସହିତ ଉଦ୍ଧବଙ୍କ ସ୍ୱର୍ଗଗମନ ବୃତ୍ତାନ୍ତ ନିତାନ୍ତ ଅପ୍ରାସଙ୍ଗିକ ନୁହେଁ କି ?

'ଗୁପ୍ତ ଭାଗବତ' ବା 'ଗୈଶ୍ୱଚରଣ' ଶୀର୍ଷକ ଅନ୍ୟ ଯେଉଁ ପୁସ୍ତକଟି ମିଳେ, ତା'ର ଭଣିତାରେ ଜଗନ୍ନାଥ ଦାସଙ୍କ ନାମ ମିଳୁଥିଲେ ହେଁ ତାହା ଏକ ପରବର୍ତ୍ତୀକାଳୀନ ପୁସ୍ତକ ବୋଲି ଜଣାଯାଏ । କାରଣ ଓଡ଼ିଶାରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ 'ରାଧାଷ୍ଟମୀ' ବ୍ରତ ପ୍ରଚଳିତ ହୋଇ ନଥିଲା । ଶ୍ରୀମଦ୍ ଭାଗବତ ଓ ଓଡ଼ିଆ ଅନୁବାଦରେ ମଧ୍ୟ 'ରାଧା'ଙ୍କ ନାମୋଲ୍ଲେଖ ସୁଦ୍ଧା କରାଯାଇ ନାହିଁ । ବିଶେଷତଃ କବି ଜଗନ୍ନାଥ ଦାସଙ୍କ ସମସାମୟିକ ଶ୍ରୀ ଚୈତନ୍ୟଙ୍କ ଅନୁଯାୟୀ ଗୋପାଳ ଭଟ୍ଟଙ୍କ "ହରିଭକ୍ତି ବିଳାସ"ରେ ମଧ୍ୟ 'ରାଧାଷ୍ଟମୀ' ବ୍ରତ ସମ୍ବନ୍ଧରେ କୌଣସି ବିଧି ବିଧାନ ନାହିଁ । ଆଜିକାଲି ଯେଉଁ ଭାଦ୍ର ଶୁକ୍ଳ ଅଷ୍ଟମୀରେ "ରାଧାଷ୍ଟମୀ" ବ୍ରତ ପାଳିତ ହେଉଛି, ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଉକ୍ତ ତିଥିରେ "ଦୂର୍ବାଷ୍ଟମୀ" ନାମକ ଶିବବ୍ରତ ପାଳିତ ହେଉଥିବାର, ଓଡ଼ିଶାରେ ରଚିତ ବିଶିଷ୍ଟ ଧର୍ମଶାସ୍ତ୍ର "କୃତ୍ୟ କୌମୁଦୀ" ସ୍ମୃତିସାର ସଂଗ୍ରହ, କାଳଦୀପ ତଥା କାଳସାର ପ୍ରଭୃତି ଗ୍ରନ୍ଥରୁ ପ୍ରମାଣ ମିଳେ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗର ସ୍ମୃତିକାର କବିକୋବିଦ ମହାମହୋପାଧ୍ୟାୟ କୃଷ୍ଣ ମିଶ୍ରଙ୍କ ରଚିତ 'କାଳ ସର୍ବସ୍ୱ' ଶୀର୍ଷକ ଗ୍ରନ୍ଥରୁ ଜଣାଯାଏ—

"ଯଦ୍ୟପି ରାଧା ଲଳିତା ଜନ୍ମ ହରିଭକ୍ତି ବିଳାସେ ନାସ୍ତି ତଥାପି ବୈଷ୍ଣବାଗ୍ରହାତ ସାଧନ ଦୀପିକାୟାଂ ସତ୍ତ୍ୱାତ ତତ୍ର କଥ୍ୟତେ । ଜ୍ୟେଷ୍ଠାଷ୍ଟମୀ × ଜ୍ୟେଷ୍ଠା ଇତି ରାଧାୟା ନାମାନ୍ତର ମିତି କେଚିତ୍ ।"

ପ୍ରସିଦ୍ଧ ଗବେଷକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଓଡ଼ିଶାରେ 'ରାଧାଷ୍ଟମୀ ବ୍ରତ'ର ପ୍ରଚଳନ ସମ୍ବନ୍ଧରେ ଆଲୋଚନା କରି ତାଙ୍କ Descriptive catalogue of Sanskrit Mns. Vol. I ର ମୁଖବନ୍ଧରେ ଲେଖିଛନ୍ତି—

"Krishna Mishra, who was a Smartta had to in corporate the festivals connected with Radha in his

work on Dharma Sastra as by his time (Mid 18th century). Radha, who was not mentioned in the previous Smrti works had become deified and the devotees of Radha Krishnâ had formed an influencial section in Orissa due to the preaching of Rasikananda Gosvami, Baladeva Vidyabhusana and others. Thus, Kalasarvasva throws new light on the development of Radha-Kirshna worship in Orissa, which was steadily gaining ground in his days and became dominant in society during the last two centuries."

(Descriptive catalogue of Sanskrit Mns. Vol. I Page—XXXVII)

ଉକ୍ତ ଉଦ୍ଧୃତିରୁ ବେଶ୍ ଜଣାଯାଏ ଯେ, ସ୍ମୃତିକାର କୃଷ୍ଣ ମିଶ୍ରଙ୍କ ସମୟ ବେଳକୁ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଓଡ଼ିଶାରେ ରାଧାପୂଜା ବା ରାଧାଷ୍ଟମୀ ବ୍ରତ ସମାଜରେ ପ୍ରଚଳିତ ହୋଇ ନଥିଲା କିମ୍ବା ସ୍ମୃତିକାର ହୁଅନ୍ତୁ ବା ପୁରାଣକାର ହୁଅନ୍ତୁ, ରାଧାଜନ୍ମର ମାହାତ୍ମ୍ୟ ସମ୍ବନ୍ଧରେ ଲେଖିବାକୁ ସାହସ କରି ନଥିଲେ । ଏତେ ବଡ଼ ଐତିହାସିକ ସତ୍ୟକୁ ଏଡ଼ାଇ ଜଗନ୍ନାଥ ଦାସ 'ଗୁପ୍ତ ଭାଗବତ'ରେ ରାଧାଜନ୍ମ ମାହାତ୍ମ୍ୟ ଉଲ୍ଲେଖ କରିବା ସନ୍ଦେହାତ୍ମକ ବିଷୟ ନୁହେଁ କି ? ଆହୁରି ମଧ୍ୟ ଭାଗବତ ଦଶମ ସ୍କନ୍ଧର ଗୋପଲୀଳା ପ୍ରକରଣର ୪୮ ଅଧ୍ୟାୟ ମଧ୍ୟରେ ରାଧାଜନ୍ମ ଲୀଳା ବର୍ଣ୍ଣନା ନ କରି, କବି ଜଗନ୍ନାଥ ଦାସ ଗୁପ୍ତ ଭାଗବତରେ ତାହା ଲେଖିଥା'ନ୍ତେ କାହିଁକି ?

ଖୁବ୍ ସମ୍ଭବତଃ, ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଗୋସ୍ୱାମୀମାନଙ୍କ ପ୍ରଚାର ଦ୍ୱାରା ପ୍ରଭାବିତ ହୋଇ କୌଣସି ଲେଖକ 'ଗୁପ୍ତଭାଗବତ' ପ୍ରଣୟନ କରି ଖ୍ୟାତିପ୍ରାପ୍ତ କବି ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିଛନ୍ତି ।

ଓଡ଼ିଆ ଭାଗବତର ରଚନା ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯିବା ପରେ, ଭାଗବତର ଶୁଦ୍ଧପାଠ ସମ୍ବନ୍ଧରେ ବହୁତର ପ୍ରଶ୍ନ ଉଠେ ଆଲୋଚନା ଫଳରେ ଜଣାଯାଏ ଯେ, ଆଜି ନୁହେଁ, ଖ୍ରୀଷ୍ଟୀୟ ଅଷ୍ଟାଦଶ

ଶତାବ୍ଦୀରୁ ଅନ୍ତବଢ଼ ଜଗନ୍ନାଥ ଦାସଙ୍କ ଭାଗବତର ଶୁଦ୍ଧ ପାଠ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ଉତ୍ତର ଓଡ଼ିଶାର ଖେଟରାଇ ନିବାସୀ କବି ଜାନକୀବଲ୍ଲଭ କର ଶର୍ମା, ମେଦିନୀପୁର ଜିଲ୍ଲା ପଚାଶପୁର ପ୍ରଗଣାର (ରାଜା) ଶ୍ରୀ ଧୂର୍ଯ୍ୟ ଗୋପେନ୍ଦ୍ର ନନ୍ଦନ ଦାଶରଥୀ ମହାପାତ୍ରଙ୍କ ପୃଷ୍ଠପୋଷକତାରେ ରହି, ତାଙ୍କ ରାଣୀ ଗୁଣ୍ଡିଚା ଦେବୀଙ୍କ ନିର୍ଦ୍ଦେଶମତେ ଶକାବ୍ଦ ୧୬୭୪ ବା ଖ୍ରୀଷ୍ଟାବ୍ଦ ୧୭୫୨ରେ ଜଗନ୍ନାଥ ଦାସଙ୍କ ଭାଗବତର ସଂଶୋଧନ କରିଥିଲେ । ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତର ନବମ ସ୍କନ୍ଧର ପୁଷ୍ପିକାରୁ ଜଣାଯାଏ—

"ଏବେ ହୋ ଶୁଣ ସାଧୁଜନ । କହୁଅଛି ତୁମ୍ଭର ଚରଣ ॥
ବ୍ୟାସଂଭାଷିତ ଜଗନ୍ନାଥ । ଭାଷାରେ ବର୍ଣ୍ଣିଲେ ସମସ୍ତ ॥
ସେ ଭାଷା ଲେଖକ ଦୋଷରେ । ଅନ୍ୟଥା ହୋଇଲା ଏ ସଂସାରେ ॥
ସେ ବ୍ୟାସ ଜଗନ୍ନାଥ ବାଣୀ । ଯେ ରୂପେ ତୁଟିଲା ପରମାଣି ॥
ଯେ ରୂପେ ବଗ୍ରୀର କହେଣ । ଜାନକୀ ବଲ୍ଲଭ ବ୍ରାହ୍ମଣ ॥
ଗୁଣ୍ଡିଚା ବାକ୍ୟ ଅନୁସରି । ଶୋଧି ଲେଖିଲେ ଯତ୍ନକରି ॥
ପଣ୍ଡିତେ ନ ଧରିବ ଦୋଷ । ସର୍ବାନ୍ତର୍ଯ୍ୟାମୀ ହୃଷୀକେଶ ॥"

(ଜାନକୀବଲ୍ଲଭଙ୍କ ଭାଗବତ । ନବମ ସ୍କନ୍ଧ । ପୁଷ୍ପିକା)

ସେ ସ୍ୱ ସଂଶୋଧିତ ଭାଗବତର ରଚନା ସମୟ ଉଲ୍ଲେଖ କରି ପଞ୍ଚମ ସ୍କନ୍ଧରେ ଲେଖିଛନ୍ତି—

"ଶକାବ୍ଦ ଗୃହ ସାତ ନେଇ । ତା'ବାମେ ଷୋଳ ସଂଖ୍ୟା ଦେଇ ॥
ଏତେ ଶକାବ୍ଦେ ବସ୍ତୁଧାପ୍ତି । ଗୁଣ୍ଡିଚା ବାକ୍ୟେ ବନ୍ଧ ହୋଇ ॥
ଲେଖିଲେ ଭାଗବତ କଥା । ଶୁଣନ୍ତେ ତୁଟେ ଭବ ବ୍ୟଥା ॥"

(ଭାଗବତ ୫ମ ସ୍କନ୍ଧ । ପୁଷ୍ପିକା)

କବି ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତର ୫ମ ସ୍କନ୍ଧ ଶକାବ୍ଦ ୧୬୭୪ ବା ଖ୍ରୀ: ଅ: ୧୭୫୨ରେ ଏବଂ ଏକାଦଶ ସ୍କନ୍ଧ ମଧ୍ୟ ୧୭୫୩ରେ ଶେଷ ହୋଇଥିଲା । ତେଣୁ ଅନୁମାନ କରାଯାଇପାରେ ଯେ, କବି ଖୁବ୍ ସମ୍ଭବତଃ ଖ୍ରୀ: ଅ: ୧୭୫୧ରେ ଭାଗବତର ସଂଶୋଧନ କାର୍ଯ୍ୟ ଆରମ୍ଭ କରି ଖ୍ରୀ: ଅ: ୧୭୫୪ ମଧ୍ୟରେ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଶେଷ କରିଥିବେ ଏବଂ ବୋଧହୁଏ; ଏହା ହେଉଛି, ଜଗନ୍ନାଥ ଦାସଙ୍କ 'ଭାଗବତ'ର ପ୍ରଥମ

ପାଣ୍ଡିତ୍ୟପୂର୍ଣ୍ଣ ସମ୍ଭାବନା । ଆଲୋଚକମାନଙ୍କ ଜିଜ୍ଞାସାର ପୂରଣ ଲାଗି ଏଠାରେ ଭାଗବତ ଅଷ୍ଟମ ସ୍କନ୍ଦର ଷଷ୍ଠ ଅଧ୍ୟାୟରେ ବର୍ଣ୍ଣିତ ବିଷ୍ଣୁଙ୍କ ମୋହିନୀରୂପ ବର୍ଣ୍ଣନା ପ୍ରସଙ୍ଗରୁ କେତେକାଂଶ ପ୍ରଦତ୍ତ ହେଲା—

"ଏମନ୍ତେ ଦେବ ସ୍ତୁତି ଶୁଣି । ଶ୍ରୀଦୈନ୍ୟ ପ୍ରକାଶ ଚକ୍ରପାଣି ॥
ସମସ୍ତେ ହରି ତେଜ ଦେଖି । ଦେବେ ବୁଜିଲେ ଉଭୟେ ଆଖି ॥
ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ । ସେହି ଅନ୍ତରାକ୍ଷେ ଗୁହାଁଲେ ॥
ଦେଖିଲେ ବିଷ୍ଣୁର ପ୍ରକାଶ । ସେହିର ପୂରିଛି ଆକାଶ ॥
ମାଳ-ମହୀନ୍ଦ୍ର ପ୍ରାୟେ ଦିଶେ । ଅରୁଣ ଲୋଚନ ପ୍ରକାଶେ ॥
ବକଚ ପୁଣ୍ଡରୀକ ପ୍ରାୟେ । କର୍ଣ୍ଣେ କୁଣ୍ଡଳ ବେନି ଶୋହେ ॥
ତପ୍ତ କାଞ୍ଚନ ପ୍ରାୟେ ବର୍ଣ୍ଣ । ପୀତବସନ ପରିଧାନ ॥
ପ୍ରସନ୍ନ ଗୁରୁ ସର୍ବ ଅଙ୍ଗ । ସୁମୁଖ ସୁନ୍ଦର ସୁରଙ୍ଗ ॥"

(ଜଗନ୍ନାଥ ଦାସଙ୍କ ଭାଗବତ)

"ଏମନ୍ତେ ଦେବ ସ୍ତୁତି ଶୁଣି । ଶ୍ରୀଦୈନ୍ୟ ପ୍ରକାଶ ଚକ୍ରପାଣି ॥
ସହସ୍ର ସୂର୍ଯ୍ୟ ତେଜ ଦେଖି । ଦେବେ ବୁଜିଲେ ଉଭୟେ ଆଖି ॥
ଦଶ ଆକାଶ ନ ଜାଣିଲେ । ପ୍ରଭୁଙ୍କୁ ଚାହିଁ ନ ପାରିଲେ ॥
ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ । ଉଭୟେ ଅନ୍ତରାକ୍ଷେ ଗୁହାଁଲେ ॥
ଦେଖିଲେ ବିଷ୍ଣୁ କଳେବର । କି ଶୋଭା ଦେବା ପଟାନ୍ତର ॥
ନିର୍ମଳ ମରକତ ବର୍ଣ୍ଣ । ପଦ୍ମ ଅରୁଣ ବିଲୋଚନ ॥
ତପ୍ତ କାଞ୍ଚନ ପ୍ରାୟେ ବର୍ଣ୍ଣ । ପୀତ ବସନ ପରିଧାନ ॥
ପ୍ରସନ୍ନ ରମ୍ୟ କଳେବର । ସୁମୁଖ ସୁଭ୍ରୁ ବ ସୁନ୍ଦର ॥
ମସ୍ତକେ ଅମୂଲ୍ୟ ମୁକୁଟ । କାଞ୍ଚନ କେୟୂର ପ୍ରକଟ ॥
କର୍ଣ୍ଣେ କୁଣ୍ଡଳ ବେନି ଶୋହେ । ଯେବେ ଅଶେଷ ଜନ ମୋହେ ॥"

(ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତ)

ଆଲୋଚନାରୁ ଆହୁରି ଜଣାଯାଏ ଯେ, 'ଭାଗବତ'ର ଚତୁର୍ଥ ସ୍କନ୍ଦରେ ପୂର୍ବୋଲ୍ଲିଖିତ ଭାବରେ ମିଳୁଥିବା ଜଗନ୍ନାଥ ଦାସଙ୍କ ଭାଗବତ ଓ ଜାନକୀବଲ୍ଲଭଙ୍କ ସଂଶୋଧନା ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ବିଶେଷତଃ ଉକ୍ତ ସ୍କନ୍ଦର ଅଷ୍ଟମ ଅଧ୍ୟାୟରେ ବର୍ଣ୍ଣିତ 'ଧ୍ରୁବଚରିତ' ପ୍ରସଙ୍ଗରେ ଉଭୟ ପାଠର ଅନେକ ପାର୍ଥକ୍ୟ ଦେଖାଯାଏ ।

ମୁଦ୍ରିତ ଭାଗବତର ଧ୍ରୁବ ଚରିତ ପ୍ରସଙ୍ଗରେ ଆରମ୍ଭରୁ ଚଉଦ ଅକ୍ଷର ବିଶିଷ୍ଟ ପଦ ରଚନା କରାଯାଇ, ପ୍ରଥମେ ବିଘ୍ନବିନାଶକ ଗଣେଶଙ୍କୁ ପ୍ରାର୍ଥନା କରାଯାଇଛି ଏବଂ ଏହି ବନ୍ଦନା ପ୍ରସଙ୍ଗରେ ପନ୍ଦରଟି ପଦ ରଚନା କରିବା ପରେ କବି "ମୈତ୍ରେୟ ଉବାଚ" ଲେଖି ଧ୍ରୁବ ଚରିତ ଆରମ୍ଭ କରିଛନ୍ତି। ମାତ୍ର ସଂଶୋଧକ ଜାନକୀବଲ୍ଲଭଙ୍କ ସମ୍ପାଦିତ ଭାଗବତର ଚତୁର୍ଥ ସ୍କନ୍ଧ ଅଷ୍ଟମ ଅଧ୍ୟାୟର ଆରମ୍ଭରୁ ପ୍ରଥମେ ମୈତ୍ରେୟ ଉବାଚ ଲେଖାଯାଇ ନଅ ଅକ୍ଷର ବିଶିଷ୍ଟ ଷୋଳପଦ ପରେ ଚଉଦ ଅକ୍ଷର ବିଶିଷ୍ଟ ପଦାବଳୀ ଆରମ୍ଭ କରାଯାଇଛି।

ଏହି ସବୁ ଦୃଷ୍ଟିରୁ ବିଚାର୍ କଲେ ଜଣାଯାଏ ଯେ, କବି ଜାନକୀ-ବଲ୍ଲଭ ଜଗନ୍ନାଥ ଦାସଙ୍କ ଭାଗବତକୁ ସମ୍ପାଦନା କରିବାକୁ ଯାଇ କେତେକ ସ୍ଥାନରେ ପରିବର୍ତ୍ତନ କରିଛନ୍ତି। ତେଣୁ 'ଭାଗବତ'ର ଶୁଦ୍ଧ ସଂସ୍କରଣ କ୍ଷେତ୍ରରେ ଜାନକୀବଲ୍ଲଭଙ୍କ ଉଲ୍ଲେଖଯୋଗ୍ୟ ଅବଦାନ ପ୍ରତ୍ୟେକ ଆଲୋଚକଙ୍କୁ ଉଦ୍‌ବୁଦ୍ଧ କରେ ଏବଂ ବର୍ତ୍ତମାନ ଯଦି ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ'ର ଶୁଦ୍ଧ ସଂସ୍କରଣ କରାଯାଏ, ସେ କ୍ଷେତ୍ରରେ ଜାନକୀବଲ୍ଲଭଙ୍କ ପାଠ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ଏକାନ୍ତ ଅପରିହାର୍ଯ୍ୟ ବୋଲି ମନେ ହୁଏ।

ଭାଗବତର ଶୁଦ୍ଧ ସଂସ୍କରଣ କଲାବେଳେ ଓଡ଼ିଶାରେ ପ୍ରାପ୍ତ ଆଉ ଦୁଇଟି ଭାଗବତର ଅନୁବାଦ ସମ୍ବନ୍ଧରେ ମଧ୍ୟ ଆଲୋଚନା କରାଯାଇ ପାରେ।

ଓଡ଼ିଶାରେ 'ଖାଡ଼ଙ୍ଗା ଭାଗବତ' ନାମରେ ଖଣ୍ଡିଏ ଶ୍ରୀମଦ୍ ଭାଗବତର ଅନୁବାଦ ଦେଖିବାକୁ ମିଳେ। ଘନବନ୍ଧୁ ଖାଡ଼ଙ୍ଗା ପ୍ରଥମ ସ୍କନ୍ଧରୁ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ସଂସ୍କୃତ ଭାଗବତକୁ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ଅନୁବାଦ କରି ଉତ୍କଳର ଦକ୍ଷିଣାଞ୍ଚଳରେ ପ୍ରଚାର କରାଇଥିଲେ। ଆଲୋଚନାରୁ ଜଣାଯାଏ ଯେ, ଘନବନ୍ଧୁ, ଝଡ଼ିଗଙ୍ଗୁ ବା ଘନବନ୍ଧୁ ଖାଡ଼ଙ୍ଗା ଖଣ୍ଡପଡ଼ନ ବା ଖଣ୍ଡପଡ଼ା ରାଜ୍ୟର ରାଜା ନାରାୟଣ ମଙ୍ଗରାଜଙ୍କ ସଭାରେ ଜଣେ ପ୍ରସିଦ୍ଧ କବିରୂପେ ଆସନ ଗ୍ରହଣ କରିଥିଲେ। 'ହରିଭକ୍ତି ସୁଧାକର' ନାମକ ପୁସ୍ତକର ପୁଷ୍ପିକାରୁ ଜଣାଯାଏ ଯେ, ନାରାୟଣ ମଙ୍ଗରାଜ

ଶକାବ୍ଦ ୧୬୧୦ ବା ଖ୍ରୀ: ଅ: ୧୬୮୮ରେ ବର୍ତ୍ତମାନ ଥିଲେ । ତେଣୁ ଧନବନ୍ଧୁ ଖାଡ଼ଙ୍ଗା ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଭାଗବତର ଅନୁବାଦ କରି ଲୋକସମାଜରେ ପ୍ରଖ୍ୟାତ ହୋଇଥିଲେ । କବି ଧନବନ୍ଧୁ ଖାଡ଼ଙ୍ଗା ନିଜର ପରିଚୟ ତଥା ଅନୁବାଦ ସମ୍ବନ୍ଧରେ ଲେଖିଛନ୍ତି—

"ଶ୍ରୀ ପୁରୁଷୋତ୍ତମ ନିକଟ । ବ୍ରାହ୍ମଣ ଶାସନ ପ୍ରକଟ ॥
ତା ନାମ ବାମଦେବପୁର । କୌଶିକସମାନଙ୍କ ମନ୍ଦିର ॥
ସେ ବାମଦେବ ବାଜପେୟୀ । ସେ ଗ୍ରାମେ ଥିଲେ ଦାନ ପାଇ ॥
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ॥
ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗା ଦାସ ନାମ ହୋଇ ॥
ବାହୁକ୍ରି ପଣ୍ଡିତ ନାଥରେ । ସମ୍ଭବ ତାହାଙ୍କ କୁମରେ ॥
ତାଙ୍କ ତନୁଜ ଶିବ ଦାସ । ମିଶ୍ର ନାମରେ ସେ ପ୍ରକାଶ ॥
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ ତାତ ॥
ମୋହର ଧନବନ୍ଧୁ ନାମ । ଯେ ବୈତରଣୀ ତଟେ ଗ୍ରାମ ॥
ମୁକୁନ୍ଦପୁର ନାମେ ଖ୍ୟାତ । ସେ ଗ୍ରାମେ ଅଟଇ ଯେ ସ୍ଥିତ ॥
ବୈଷ୍ଣବ ବୃନ୍ଦାବନ ଦାସ । ଶ୍ରୀକୃଷ୍ଣ ଭକ୍ତିରେ ଲାଳସ ॥
ଶ୍ରୀ ନିତ୍ୟାନନ୍ଦ ପରିବାର । ଅଟନ୍ତି ଅତି ଶୁଦ୍ଧାଚାର ॥
ଯେ ଅଟେ ତାହାଙ୍କର ଶିଷ୍ୟ । ବୈଷ୍ଣବ ଜୟରାମ ଦାସ ॥
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତଙ୍କୁ ଗୀତ କଲି ॥
ଗୌଡ଼ ବାରାଣସୀ ଉତ୍କଳ । ଏ ତିନି ଦେଶ ପୋଥି ଠୁଳ ॥
କରିଣ ଶୁଦ୍ଧା ଶୁଦ୍ଧ ଜାଣି । ଗୀତକୁ ରଚିଲି ପ୍ରମାଣି ॥"

(ଖାଡ଼ଙ୍ଗା ଭାଗବତ—ପ୍ରଥମ ଖଣ୍ଡ, ଶେଷ ଅଧ୍ୟାୟ)

କବି ଖାଡ଼ଙ୍ଗାଙ୍କ ବ୍ୟକ୍ତିତ ମଞ୍ଜୁଷାର ରାଜା ଜଗନ୍ନାଥ ରାଜମଣିଙ୍କ ଦ୍ୱାରା ଶ୍ରୀମଦ୍ ଭାଗବତର ପଦ୍ୟାନୁବାଦ ହୋଇଥିବାର ପ୍ରମାଣ ମିଳୁଛି । ଜଗନ୍ନାଥ ରାଜମଣି ଥିଲେ ରାଜକବି ଶ୍ରୀନିବାସ ରାଜମଣିଙ୍କ ପୁତ୍ର ଏବଂ ତାଙ୍କ ସମୟ ଖ୍ରୀ: ଅ: ୧୮୭୦—୧୮୯୦ ବୋଲି 'ମଞ୍ଜୁଷା ରାଜବଂଶ ଚରିତମ୍' ଶୀର୍ଷକ ସଂସ୍କୃତ ପୁସ୍ତକରୁ ପ୍ରମାଣ ମିଳେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟଙ୍କ ନିକଟରେ, ଜଗନ୍ନାଥ ରାଜମଣିଙ୍କ ଶ୍ରୀମଦ୍ ଭାଗବତ ଅଷ୍ଟମ ସ୍କନ୍ଧର ପଦ୍ୟାନୁବାଦ ରହିଛି । ଉକ୍ତ ପୋଥିର ପୁଷ୍ପିକାରୁ ଜଗନ୍ନାଥ ରାଜମଣିଙ୍କ ନାମ ଦେଖିବାକୁ ମିଳେ ।

"ଶ୍ରୀ ଜଗନ୍ନାଥ ରାଜମଣି । ଶ୍ରୀରାଜଦେବ ଗୀତେ ଭଣି ॥

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ଅଷ୍ଟମ ସ୍କନ୍ଧେ ଶୁକ-ପରୀକ୍ଷିତ ସମ୍ବାଦେ ମନ୍ୱନ୍ତରାନୁବର୍ଣ୍ଣନେ ଗଜେନ୍ଦ୍ର ମୋକ୍ଷଣେ ନାମ ତୃତୀୟୋଽଧ୍ୟାୟଃ ।"

ଓଡ଼ିଆ ଭାଗବତର ଶୁଦ୍ଧ ସଂସ୍କରଣ ଲାଗି ଶ୍ରୀ ଜଗନ୍ନାଥ ରାଜମଣିଙ୍କ ଅନୁବାଦ ଗ୍ରନ୍ଥଟି ମଧ୍ୟ ଏକ ଉପାଦେୟ ପୁସ୍ତକରୂପେ ବିବେଚିତ ହେବ ।

ଏତଦ୍ ବ୍ୟତୀତ ଓଡ଼ିଶାର ବିଭିନ୍ନ ମୁଦ୍ରଣାଳୟ ଓ ପ୍ରକାଶକ ତଥା ସ୍ୱର୍ଗତଃ ଚିନ୍ତାମଣି ଆଚାର୍ଯ୍ୟ ପ୍ରଭୃତି ବିଦ୍ୱାନମାନଙ୍କଦ୍ୱାରା ସମ୍ପାଦିତ 'ଓଡ଼ିଆ ଭାଗବତ'ର ଭିନ୍ନ ଭିନ୍ନ ସଂସ୍କରଣ ପ୍ରକାଶ ପାଇଛି । ତେଣୁ 'ଓଡ଼ିଆ ଭାଗବତ'ର ଗୋଟିଏ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବାକୁ ହେଲେ, ଉଭୟ ପ୍ରାଚୀନ ଓ ଅର୍ବାଚୀନ ଭାଗବତ ପୁସ୍ତକଗୁଡ଼ିକର ପାଠ ସଂଗ୍ରହ କରାଯିବା ଏକାନ୍ତ ଆବଶ୍ୟକ । ତାହା ଫଳରେ ସମ୍ପାଦିତ ଶୁଦ୍ଧ ସଂସ୍କରଣରେ ଭିନ୍ନ ଭିନ୍ନ ପାଠର ଉଦାହରଣମାନ ପାଦଟୀକାରେ ସ୍ଥାନ ପାଇପାରିବ ଏବଂ ହେଉପରି ଭାବରେ ସମ୍ପାଦିତ ଏକ ପୁସ୍ତକ ପ୍ରକାଶ ପାଇଲେ, ତାହା ପ୍ରାମାଣିକ ସଂସ୍କରଣରୂପେ ବିଦ୍ୱତ୍ ସମାଜରେ ଆଦୃତ ହେବ, ସନ୍ଦେହ ନାହିଁ ।



# ଭାଗବତ ଘର ଓ ଆଧୁନିକ ସମାଜ

ଶ୍ରୀଚରଣ ଦାସ

ଭାଗବତ ଘର ପ୍ରାଚୀନ ଓଡ଼ିଆ ସଂସ୍କୃତିର ସଂରକ୍ଷକ । ଷୋଡ଼ଶ ଶତାବ୍ଦୀରେ ଯୋଗସାଧକ ଭକ୍ତକବି ଜଗନ୍ନାଥ ଦାସ ଉତ୍କଳର ବଡ଼ଠାକୁର ମନ୍ଦିରବାହାର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବୈଠାମଧ୍ୟରେ ଭକ୍ତି ଗଦ୍ ଗଦ୍ ଚିତ୍ତରେ ଶୁଦ୍ଧ, ସଂଯତ, ମାର୍ଜିତ ଏବଂ ଅର୍ଥପୂର୍ଣ୍ଣ ଶବ୍ଦାବଳୀରେ ଯେଉଁ ସଂସ୍କୃତ ଭାଗବତର ଅନୁବାଦ କରିଦେଇଗଲେ ସେହି ମହାନ ଗ୍ରନ୍ଥ ଓଡ଼ିଶାର ଧର୍ମଜୀବନରେ ଏକ ନୂତନ ଦ୍ୱାର ଉଦଘାଟନ କଲା । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସଦୃଶ ଏହା ଚଣ୍ଡାଳ, ବ୍ରାହ୍ମଣ, ଯୋଗୀ, ସନ୍ନ୍ୟାସୀ, ମୂର୍ଖ ପଣ୍ଡିତ, ଧନୀ, ଦରିଦ୍ର, ରାଜା, ପ୍ରଜା ସମସ୍ତଙ୍କ ନିକଟରେ ଆଦର ଲାଭ କଲା । ଓଡ଼ିଆଭାଷା, ସାହିତ୍ୟ ସଂସ୍କୃତି ଏବଂ ଧର୍ମଧାରା ରୂପକ ମହାସମୁଦ୍ରର କୀର୍ତ୍ତିସ୍ତମ୍ଭ ରୂପେ ଏହାର ପ୍ରାଣ ପ୍ରତିଷ୍ଠା ହେଲା । ଜଗନ୍ନାଥ ଦାସଙ୍କୁ ତତ୍କାଳୀନ ସମାଜରେ ଉପଯୁକ୍ତ ସମ୍ମାନ ଦେବାପାଇଁ ଉତ୍କଳର ଅଧିକାଂଶ ପୁରପଲ୍ଲୀରେ ଜନ୍ମନେଲା ଭାଗବତ ଘର ବା ଭାଗବତ ଟୁଙ୍ଗୀ ।

ଭାଗବତ ଘରର ଐତିହ୍ୟ ଭାଗବତ ସଦୃଶ ମହିମାମୟ । ଏହାର ଜନ୍ମ ଓଡ଼ିଆଭାଷା ଏବଂ ସାହିତ୍ୟ ସୃଷ୍ଟିର ଅନେକ ପରେ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ମଧ୍ୟ ଭାଗରେ । ଏହା ପଲ୍ଲୀର ସବୁଠାରୁ ପବିତ୍ର ଏବଂ ଶାନ୍ତିପ୍ରଦ ସ୍ଥାନ । ଭାଗବତଘରଗୁଡ଼ିକ ସାଧାରଣତଃ ଗ୍ରାମର ଆରମ୍ଭ ଶେଷ କିମ୍ବା ମଧ୍ୟଭାଗରେ ଅବସ୍ଥିତ । କ୍ଷୁଦ୍ର ଭାଗବତ ଗୃହଟିରେ ଭାଗବତ ପୋଥିସହ ଅନ୍ୟାନ୍ୟ ମହାପୁରୁଷମାନଙ୍କର ରଚିତ ପୋଥିଗୁଡ଼ିକ ସୁସଜ୍ଜିତ

କରାଯାଇ ଏକ କାଷ୍ଠନିର୍ମିତ ଖଟୁଲି କିମ୍ବା ବିମାନ ଉପରେ ପ୍ରତିଷ୍ଠା କରାଯାଇଥାଏ । ଭାଗବତ ଗାଦିକୁ ବିଷ୍ଣୁଙ୍କ ଅବତାର ସଦୃଶ ଭକ୍ତିଅର୍ଘ୍ୟ ଅର୍ପଣ କରାଯାଏ । ପ୍ରାଚୀନ ସାହିତ୍ୟ ବିଜ୍ଞାନ ସୃଷ୍ଟି କାଗଜ ଏବଂ ପ୍ରଲେପ ଲେଖନୀରୁ ସମ୍ପୂର୍ଣ୍ଣ ବଞ୍ଚିତ ଥିଲା । ସୁସଜ୍ଜିତ ତାଳପତ୍ର ଉପରେ ଲେଖକ କାରିଙ୍କ ଦ୍ୱାରା ଲୌହନିର୍ମିତ ଲେଖନୀରେ ସାହିତ୍ୟକୁ ଲିପିବଦ୍ଧ କରା-ଯାଇଥିଲା । ସେହି ପୋଥିର ରୁଚିସଂପନ୍ନ ଚମତ୍କାର ତଥା ସୁନ୍ଦର ବର୍ଣ୍ଣ ବଳୀରୁ ଦେଖିଲେ ଆଧୁନିକ ମାନବର ମାନସରାଜ୍ୟରେ ଏକ ତଡ଼ିତ୍ ପ୍ରବାହ ଖେଳିଯାଏ । ଏହାର ପ୍ରତ୍ୟେକ ପୃଷ୍ଠାରେ ଶବ୍ଦବ୍ରହ୍ମଙ୍କର ଜୀବନ୍ତ ଅବସ୍ଥିତି ।

ଭାଗବତ ଘରର ଗାଦିପୂଜା କାର୍ଯ୍ୟରେ ବ୍ରାହ୍ମଣ ନିଯୁକ୍ତ କରା-ଯାଉଥିଲା । ତତ୍କାଳୀନ ସମାଜରେ ଦରମା ପରିବର୍ତ୍ତେ ପାରିଶ୍ରମିକ ସ୍ୱରୂପ ଜମି ଜମା ଟଙ୍କାର ବ୍ୟବସ୍ଥା ଥିଲା ଏହାହିଁ ଭାଗବତ ଘରର ପୂଜାପଣ୍ଡା ପାଇଁ ଉଦ୍ଦିଷ୍ଟ । ଭାଗବତ ଘରର ଗାଦିକୁ ପୂଜା କରିବା ପାଇଁ ବ୍ରାହ୍ମଣକୁ ବିଶେଷ କଷ୍ଟ ନଥାଏ । ତାଙ୍କ ପଞ୍ଚୋପଚାର ଦଶୋପଚାର କିମ୍ବା ଷୋଡ଼ଶୋ-ପଚାରରେ ପୂଜା ନ କରି ମନ୍ତ୍ରହୀନ, କ୍ରିୟାହୀନ ଭାବରେ ପୂଜା କଲେ ମଧ୍ୟ ସେ ସନ୍ତୁଷ୍ଟ । ବ୍ୟାବହାରିକ ସାମଗ୍ରୀ ଦୃଷ୍ଟିରୁ ଚନ୍ଦନ କାଠ ଚନ୍ଦନପେଡ଼ି, ପୁଷ୍ପ; ତୁଳସୀମଞ୍ଜରୀ ଜଳପୂର୍ଣ୍ଣ କଳସ ଏବଂ ଭୋଗ ଡାଲିଟିଏ ହେଲେ ଯଥେଷ୍ଟ । 'ଅର୍ଥାତ୍ ଏହି ସୀମିତ ସାମଗ୍ରୀ ମଧ୍ୟରେ ଭାଗବତ ଗାଦିର ପୂଜା ସାଙ୍ଗ ହୁଏ' । ବ୍ରାହ୍ମଣମାନେ ନିଜର ଧର୍ମକର୍ତ୍ତବ୍ୟ ଦୃଷ୍ଟିରୁ ଏହାର ପୂଜା-ପଦ୍ଧତିକୁ ଏତେ ସୀମିତ କରି ଦେଇଛନ୍ତି ବୋଲି ଭାବିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । 'ପୁରାତନ ସମାଜରେ ଧର୍ମ ପରମ୍ପରାକୁ ଯଥୋଚିତ ସମ୍ମାନ ସହକାରେ ଗ୍ରହଣ କରାଯାଉଥିଲେ ମଧ୍ୟ ଦେବୋପାସନାରେ ଅଧିକ ସମୟ ବିନିଯୋଗ କରାନଯାଇ ଭାଗବତରେ ଅଟଳ ବିଶ୍ୱାସ ରଖି ସମସ୍ତେ କାର୍ଯ୍ୟରେ ଲାଗିପଡ଼ୁଥିଲେ । ଧର୍ମବିଶ୍ୱାସ ଥିଲା ସେମାନଙ୍କର ମୌଳିକତାର ପୃଷ୍ଠଭୂମି' । ଭାଗବତ ସ୍ୱରୂପ ବିଷ୍ଣୁଙ୍କ ଠାରେ ଚିତ୍ତସମର୍ପଣ କରି, 'ଯଥା ନିଯୁକ୍ତୋଽସ୍ମି ତଥା କରୋମି' ଜୀବନର ମୂଳମନ୍ତ୍ରପୂର୍ବକ ଜନସାଧାରଣ ସ୍ୱକର୍ତ୍ତବ୍ୟରେ ଅଗ୍ରସର ହେଉଥିଲେ । ଗ୍ରାମର ପ୍ରତ୍ୟେକ ପର୍ବପର୍ବାଣିରେ ପଲ୍ଲୀଗୃହିଣୀ ପ୍ରଥମେ ଭୋଗଡାଲି ସଜାଡ଼େ ଏବଂ ପବିତ୍ର ଭାଗବତ ଗୃହରେ

ଭୋଗ ଚଢ଼ାଇ ପତି, ପୁତ୍ର ଏବଂ କନ୍ୟାର ମଙ୍ଗଳ ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ପ୍ରଣତି ଜଣାନ୍ତି ।

ତତ୍‌କାଳୀନ ଜନଜୀବନରେ ଏହି ଭାଗବତ ଘରର ଭୂମିକା ମହତ୍ତ୍ୱପୂର୍ଣ୍ଣ ଥିଲା । କର୍ମକ୍ଳାନ୍ତ ଜୀବନରୁ ପଲ୍ଲୀ-ଜନତା ଟିକିଏ ଛୁଟିପାଇଲେ ସେମାନଙ୍କ ମାନସରାଜ୍ୟରେ ଭାଗବତ ଘରକଥା ସ୍ଥାନ ପାଏ । ମୁଖ୍ୟତଃ ପ୍ରତ୍ୟହ ବୃନ୍ଦାବତୀଙ୍କ ସମ୍ମୁଖରେ ଶୁଭସନ୍ଧ୍ୟା ଅର୍ପଣରେ ଧର୍ମାଭିମୁଖୀ ଓଡ଼ିଆ ଧୂଅ ହସ୍ତପାଦ ପ୍ରକ୍ଷାଳନପୂର୍ବକ ଶୁଦ୍ଧବସ୍ତ୍ର ଖଣ୍ଡେ ପରିଧାନ କରି ଭାଗବତ ଘର ଅଭିମୁଖେ ଧାବମାନ ହୁଏ । ସେଠାରେ ଗାଦି ଗୋସାଇଁଙ୍କୁ ମୁଣ୍ଡିଆଟିଏ ମାରି ଆସନ ଗ୍ରହଣ କରେ । କ୍ରମେ ଗ୍ରାମର ବହୁ ଅଧିବାସୀଙ୍କ ଉପସ୍ଥିତିରେ କ୍ଷୁଦ୍ର ଗୃହଟି ମୁଖରିତ ହୋଇଉଠେ । ଗୃହର ବହିର୍ଭାଗରେ ଅନେକେ ଉତ୍‌ଫୁଲ୍ଲିତ ଚିତ୍ତରେ ଉପବେଶନ କରିଥାଆନ୍ତି । ଗାଦିତଳର ପ୍ରଦୀପଟିଏ ସମ୍ମୁଖରେ ରଖି ଭାଗବତ ପୋଥିଖଣ୍ଡିଏ ପାଠ କରାଯାଏ । ଭାଗବତ ପୋଥିକୁ ପାଠ କରିବାର କୌଣସି କଡ଼ାକଡ଼ି ନିୟମ ନଥାଏ । ସାଧାରଣ ଅକ୍ଷର ପରିଚୟ ଥିବାଲୋକ ଏହା ପାଠକରେ । ପ୍ରତ୍ୟହ ଅଧ୍ୟାୟଟିଏ ପାଠ କରାଯିବାର ବିଧି । କିନ୍ତୁ ଯଦି ଅଧିକ ପାଠ ହୋଇପାରିଲା ତେବେ ସର୍ବସମକ୍ଷରେ ଆନନ୍ଦ ପ୍ରକାଶ ପାଏ । ସ୍ଥାନ-ବିଶେଷରେ ଭାଗବତରେ ଅଭିଜ୍ଞଥିବା ବ୍ୟକ୍ତି କ୍ଳିଷ୍ଟ ପଦ୍ୟାବଳୀର ସରଳବ୍ୟାଖ୍ୟା କରିଥାନ୍ତି । ପ୍ରତ୍ୟେକ ଅଧ୍ୟାୟର ଶେଷରେ 'କହଇ ଦାସ ଜଗନ୍ନାଥ' ପଦଟି ଏକସ୍ୱରରେ ଉଚ୍ଚାରିତ ହୁଏ । ଭାଗବତ ପ୍ରାଚୀନ କାଳରେ ବିଦ୍ୟାଧିପ୍ରଜ୍ଞର ମାପକାଠି ସ୍ୱରୂପ ଥିଲା । ପୁତ୍ରକନ୍ୟାର ବିଦ୍ୟା-ପରିଚୟ ଭାଗବତ ପଢାରୁ ପିତାମାତା ଅନୁମାନ କରି ନେଉଥିଆନ୍ତି । ପିଲାଟି ଭାଗବତ ପଢିଲାଣି ବ୍ୟକ୍ତ କରିବା ଅର୍ଥ ପିଲାଟିର ପୂର୍ଣ୍ଣାଙ୍ଗ ଅକ୍ଷର ପରିଚୟର ସ୍ପଷ୍ଟ ସୂଚନା ମିଳୁଥିଲା ।

ଓଡ଼ିଆର ବଡ ଠାକୁର ଯେପରି ଶ୍ରୀଜଗନ୍ନାଥ ସେହିପରି ଓଡ଼ିଆର ଧର୍ମକୁ ଭାଗବତ ଧର୍ମ କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । 'ଧାରଣାତ୍ ଧର୍ମଃ' ଏହି ଧର୍ମର ପ୍ରକୃତ ସଂଜ୍ଞା ହୁଏ ତେବେ ଭାଗବତ କେବଳ ଉତ୍କଳର ନୁହେଁ ଭାରତର ବାସ୍ତବଧର୍ମ । ଭାଗବତ ପାଠର ପରପର୍ଯ୍ୟାୟରେ ଗ୍ରାମର ଦୈନନ୍ଦିନ ବାଦ ବିବାଦ, ଚୋରି, ଅନ୍ୟାୟ

କଳହ ଶୋଷଣ ମନାନ୍ତର ଏବଂ ମତାନ୍ତର ପ୍ରଭୃତିର ବିଚାର ଆଲୋଚନା ହୁଏ । ଗ୍ରାମର ବୟୋବୃଦ୍ଧ ବ୍ୟକ୍ତି ପାଟିରୁ ପାନରସ ବୁହାଇ, ଲମ୍ବା ବଟୁଆଟିଏ କାନ୍ଧରେ ଝୁଲାଇ ଭାଗବତ ଘର ମଧ୍ୟରେ ଥିବା ଗାଦିଙ୍କ ସମ୍ମୁଖକୁ ଯାଇଁ ଭାଗବତର ପଂକ୍ତି ଉଦ୍ଧାର କରି ବିଚାର ସାବ୍ୟସ୍ତ କରେ । ସମସ୍ତେ ମୁଖିଆଲୋକର ବିଚାର ମାନି ନିଅନ୍ତି । ସେ ତ ନିଦାବସ୍ତୁ, କାହିଁକି ତାଙ୍କ କଥା ସମସ୍ତେ ନ ମାନିବେ ? ତାଙ୍କ ମତରେ 'ବସୁଧୈବ କୁଟୁମ୍ବକମ୍' । ଏଣୁ ସେ ବିଚାରରେ ସମସ୍ତଙ୍କର ସମ୍ମାନ ରହିଥାଏ । ସେ ବିଚାର ଆଗରେ ବିଚାରାଳୟ ବା କ'ଣ କରିବ ? ଚଳିତ ଦିନର କଳହ ଏବଂ ସବୁ ପ୍ରକାର ଅସାମାଜିକ କାର୍ଯ୍ୟର ଫଇସଲା ସେଇଦିନ ସମାପ୍ତ ହୁଏ । ଧନ୍ୟ ସେ ବିଚାର ବୁଦ୍ଧି ! ବଳିଷ୍ଠ ଈଶ୍ୱର ବିଶ୍ୱାସ ସେମାନଙ୍କୁ ଯେପରି ପ୍ରଶାନ୍ତମନା କରିଥିଲା ପ୍ରକୃତିପ୍ରଦତ୍ତ ଖାଦ୍ୟ ସେମାନଙ୍କୁ ସେହିପରି ରୋଗଶୂନ୍ୟ, ସୁସ୍ଥ, ସବଳ ଓ କାର୍ଯ୍ୟକ୍ଷମ କରିଥିଲା । ସେ ସମୟର ଜନସାଧାରଣଙ୍କ ତୀକ୍ଷ୍ଣ କାରିଗରୀ ବୁଦ୍ଧି, ବାହୁରେ ଅପର୍ଯ୍ୟାପ୍ତ ବଳ । ହୃଷ୍ଟପୁଷ୍ଟ ପ୍ରଶସ୍ତ ଶରୀର ଚିନ୍ତା କଲେ ଯେତିକି ଆଶ୍ଚର୍ଯ୍ୟ ଲାଗେ, ଏବେକାର ମଣିଷକୁ ଦେଖିଲେ ମନରେ ସେତିକି ଅନୁତାପ ବି ଜାତ ହୁଏ ।

ପ୍ରାଚୀନ ଚଳଣିରେ ମୃତ୍ୟୁଶଯ୍ୟା ନିକଟରେ ଭାଗବତ ଘରର ପୋଥି ପାଠ କରାଯାଉଥିଲା ଏବଂ ଫଳତଃ ବ୍ୟକ୍ତି ବିଷ୍ଣୁ ଲୋକଗାମୀ ହେଲା ବୋଲି ଜନତାର ଦୃଢ଼ ବିଶ୍ୱାସ ଆସୁଥିଲା । ପ୍ରାଚୀନତାର ଚଳଣିରେ ଭାଗବତ ଘରର ମହନୀୟତା ସର୍ବାଗ୍ରେ ସ୍ଥାନ ଲାଭ କରିଥିଲା । ଭାଗବତ ଘରଗ୍ରାମର ଜନତାଙ୍କୁ ଐକ୍ୟବଦ୍ଧ କରି ରଖିଥିଲା । ସେମାନଙ୍କର ସୁଖ ଦୁଃଖ, ନ୍ୟାୟ ଅନ୍ୟାୟ, ଜନ୍ମ ମୃତ୍ୟୁ, ଜରାବ୍ୟାଧି ପ୍ରଭୃତିର ସାକ୍ଷୀ ଥିଲା ଭାଗବତ ଘର । ଧନୀ, ନିର୍ଦ୍ଧନ, କବି, ପଣ୍ଡିତ ରାଜା, ପ୍ରଜା ସମସ୍ତଙ୍କୁ ସମଭାବାପନ୍ନ କରିଥିଲା ଭାଗବତ । ତଦାନିନ୍ତନ ସମାଜର ସର୍ବାଙ୍ଗୀନ ଉନ୍ନତିରେ ଭାଗବତଘର ମୁଖ୍ୟ ଭୂମିକା ନେଇଥିଲା । ଏହାଦ୍ୱାରା ହିଁ ତତ୍କାଳୀନ ସଂସ୍କୃତି ଓ ସଭ୍ୟତାର ପ୍ରତିବିମ୍ବ ପ୍ରତିଫଳିତ ହେଉଥିଲା । ଦେଶରେ ସ୍ଥାୟୀ ଶାନ୍ତି ବିରାଜମାନ କରୁଥିଲା । ପ୍ରକୃତି ଥିଲା ଅତୀବ ଶାନ୍ତ । ମାନବସମାଜ ପରସ୍ପର ସ୍ନେହମମତାପୂର୍ଣ୍ଣ ଭ୍ରାତୃ ଭାବରେ ଆବଦ୍ଧ ଥିଲା । କୌଣସି ଆଧିଦୈବିକ ଦୁର୍ଘଟଣା, ଅଭାବ, ଅନଟନ, ଦୁର୍ଭିକ୍ଷ ଏବଂ

ମହାମାରୀ ନ ଥିଲା । ପ୍ରତ୍ୟହ ସନ୍ଧ୍ୟାରେ ଆମର ପ୍ରତି ଗୃହରେ ଭାଗବତର ଅଧ୍ୟାୟଟିଏ ପାଠ କରାଯାଉଥିଲା ଏବଂ ଏହାଦ୍ୱାରା ସମସ୍ତଙ୍କ ମନ ପାପଶୂନ୍ୟ ହେଉଥିଲା ।

ବିଂଶ ଶତାବ୍ଦୀର ଶେଷାଂଶରେ ଉପନୀତ ହୋଇ ଆଜିର ସଭ୍ୟ-ମାନବ ପୁରାତନର ଭାଗବତ ଘରକୁ ପଛରେ ପକାଇ ସାରିଲାଣି । ଉଚ୍ଚ ଶିକ୍ଷାବିଭୂଷିତ ଉନ୍ନତମସ୍ତିଷ୍କ ଆଧୁନିକତାରେ ପ୍ରଭାବିତ ନବ୍ୟ ସଭ୍ୟଭାବେ ନିଜକୁ ଗଢ଼ି ତୋଳି ବିଜ୍ଞାନର ସର୍ବବିଧ ମୋହିନୀଶକ୍ତିର ବଶବର୍ତ୍ତୀ ହୋଇ ଆଜିର ମଣିଷ ପ୍ରାଚୀନ ପରମ୍ପରାର ବିଲୋପ ସାଧନ କରିବାକୁ ବସିଛି । କିନ୍ତୁ ମନେ ରଖିବାକୁ ହେବ ଯେ ପ୍ରାଚୀନତାର ଭିତ୍ତିପ୍ରସ୍ତର ଉପରେ ନୂତନତାର ସୌଧ ଗଢ଼ିଉଠେ । ପ୍ରାଚୀନକୁ ପଛରେ ପକାଇଦେଲେ ସଂସ୍କାରହୀନ ହୋଇପଡ଼େ । ଓଡ଼ିଆ ଆଜି ବିଶ୍ୱ ଦରବାରରେ ଯେତିକି ପରିଚିତ ତାହା କେବଳ ପ୍ରାଚୀନ ଯୁଗର କଳା, ସାହିତ୍ୟ ଓ ସଂସ୍କୃତି ଯୋଗୁ ସିନା, କିନ୍ତୁ ଆଧୁନିକତାର ସ୍ପର୍ଶରେ ନୁହେଁ, ପ୍ରାଚୀନ କବି ସାରଳା ଦାସ ଜଗନ୍ନାଥ ଦାସ ଏ ଦେଶର ଶ୍ରେଷ୍ଠ ସାହିତ୍ୟରଥୀ ଭାବରେ ଯୁଗଯୁଗକୁ ପୂଜା ପାଉଥିବେ ।

ପ୍ରାଚୀନ ଶବରପୂଜିତ ଦେବତା ଶ୍ରୀଜଗନ୍ନାଥ ଏ ଦେଶରେ ସର୍ବଧର୍ମର ସମନ୍ୱୟକାରୀ । ପ୍ରାଚୀନ ଶିଳ୍ପୀକୃତ କୋଣାର୍କ ମନ୍ଦିର ଆଜି ବିଶ୍ୱଶିଳ୍ପୀ କୁଳକୁ ଗୃହକଳାର ଚରମ ପରାକାଷ୍ଠାର ପ୍ରଦର୍ଶକ । ପ୍ରାଚୀନ ଯୁଗର ଅନୁକରଣରେ ବିଶ୍ୱ ଅଗ୍ରଗାମୀ ହେଉଥିବାବେଳେ ଓଡ଼ିଆ ସେଥିରୁ ପୂର୍ଣ୍ଣମାତ୍ରାରେ ବଞ୍ଚିତ । ପ୍ରାଚୀନ ପରମ୍ପରାର ମୂକସାକ୍ଷୀ ଭାଗବତ ଘରର ପୂର୍ବ ବଳିଷ୍ଠ ପରମ୍ପରା ଆଜି ନାହିଁ କି ସେ ଧର୍ମପ୍ରାଣ ମନୋଭାବାପନ୍ନ ମଣିଷର ମାର୍ଜିତ ଚିନ୍ତାଧାରାକୁ ଆଧୁନିକ ମାନବ ସମାଜ ଆଧ୍ୟାତ୍ମିକତାରେ ଟିକିଏହେଲେ ବି ନିୟନ୍ତ୍ରଣ କରୁନାହିଁ । ଆଜି ଗ୍ରାମାଞ୍ଚଳର ଭାଗବତଘର ଶ୍ରୀହୀନ । ଗାଦି କୀଟଦଂଷ୍ଟ୍ର ଏବଂ ଜୀର୍ଣ୍ଣଶୀର୍ଣ୍ଣ । ନୂତନ ମାନବ ପକ୍ଷରେ ଏହା ତାଳପତ୍ର ଅଳିଆ ଓ ଅଦରକାରୀ । ଏଣୁ ଅନେକ ଗାଦିରେ ଭାଗବତ ପୋଥି ବିସର୍ଜିତ ଏବଂ ଭାଗବତ ପୁସ୍ତକର ନବାବର୍ତ୍ତିବ ।

ଅଣଚର ମୂକ ବାର୍ତ୍ତାବହ ଭାଗବତ ଘର ଅନ୍ତଃସାରଶୂନ୍ୟ ହୋଇ ମୁଣ୍ଡାମାଟି ଏବଂ ଉଇହୁଙ୍କାରେ ପୂର୍ଣ୍ଣ । ବ୍ରାହ୍ମଣ ମନରେ ଆଜି ସେ

ପୂର୍ବପୁରୁଷ ଓ ଭକ୍ତି ନାହିଁ, ପୂର୍ବପୁରୁଷରୁ ଭୋଗ କରି ଆସୁଥିବା ଜମିଖଣ୍ଡିକ ଯୋଗୁ କେବଳ ଗାଧୋଇ ପାଣିଟିକେ ଗ୍ଲାସ୍ ଫୁଲଟିଏ ଦେବାକୁ ସେ ବାଧ୍ୟ । ଫୁଲଥିଲେ ଭୋଗର କି ଅଭାବ ? ଜନତାଙ୍କ ସ୍ମୃତିରେ ଏହା ବହୁ ପଛରେ ପଡ଼ିଗଲାଣି । ବ୍ରାହ୍ମଣରେ ମନମୁଖିତାରେ କେହି ବି ପାଦଏ ଢୁକିବାକୁ ନାହିଁ । କିନ୍ତୁ ଏହା କଣ ଆମ ସଂସ୍କୃତିର ଅବମାନନା ନୁହେଁ କି ? ଗ୍ରାମର ଯୁବଗୋଷ୍ଠୀ କ୍ଲବ, ଲାଇବ୍ରେରୀ ପ୍ରଭୃତି ଯୁବ ଅନୁଷ୍ଠାନ ପ୍ରତି ଯେତିକି ଆକର୍ଷିତ, ଭାଗବତ ଘର ପ୍ରତି ସେମାନଙ୍କ ଅନ୍ତରରେ ସେତିକି ଘୃଣାଭାବ । ପାଶ୍ଚାତ୍ୟ ସଭ୍ୟତାର ବଶବର୍ତ୍ତୀ ହୋଇ ଆଜି ମଣିଷ ପଛକୁ ଟିକେ ଫେରି ଚାହୁଁ ନ । କିନ୍ତୁ ସହସା ଅଗ୍ରଗାମୀ ହେବା ଶୁଭଙ୍କର ନୁହେଁ, ଅଧିକନ୍ତୁ ଯନ୍ତ୍ରଣାଦାୟକ । ନିଜ ଧର୍ମକୁ ଭୁଲି ବା ପଛରେ ପକାଇ ପରଧର୍ମ ଗ୍ରହଣ କଲେ କ୍ଷତି ପରିବର୍ତ୍ତେ ଲାଭ କରୁନାହିଁ । ଗୀତା କହେ 'ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ' । ଯେଉଁ ଜାତି ତାର ପ୍ରାଚୀନ ସଂସ୍କୃତିକୁ ଯେତିକି ସମ୍ମାନ ଦେଇ ଚାଲିଛି ସେ ଜାତି ସେତିକି ଉନ୍ନତ ସମୃଦ୍ଧ । ଏକ ଇଂରାଜୀ ପ୍ରବାଦ ଅଛି—'Old is Gold' । ପୁରାତନରେ ପ୍ରକୃତ ଆନନ୍ଦ ଭରି ରହିଅଛି ଏବଂ ପୁରାତନରୁ ପ୍ରକୃତ ତଥ୍ୟ ସଂଗ୍ରହ କରି ତାହାର ଗର୍ଭରୁ ଯେଉଁ ନୂତନତାର ଭ୍ରୂଣ ସୃଷ୍ଟି ହେବ ତାହାହିଁ ଏ ଜାତିର ଉନ୍ନତିର ସୋପାନ । କିନ୍ତୁ ଆମେ କାହିଁକି ଆଜି ଧର୍ମହରା ? ଭାଗବତ ଘରକୁ ଛାଡ଼ି କୋର୍ଟ, କଚେରୀ ଏବଂ ଉଚ୍ଚ ନ୍ୟାୟାଳୟର ଆଶ୍ରୟ ନେଇ ଆମେ ସର୍ବସ୍ୱାନ୍ତ ହେବା ପରିବର୍ତ୍ତେ ଅଧିକ ବା କଅଣ ହାଉଛୁ ? ପରମ ପବିତ୍ର ଭାଗବତଠାରୁ ଭାରତୀୟ ଦଣ୍ଡନୀତି ପୁସ୍ତକ ବା କେତେ ଶକ୍ତିଶାଳୀ ?

ଆଜି ମଣିଷ ପ୍ରାଚୀନ ସଂସ୍କୃତିକୁ ଯେତିକି ଭୁଲି ଚାଲିଛି ସେତିକି ଅସୁବିଧାର ସମ୍ମୁଖୀନ ହେଉଛି । ସମାଜରେ ଚୋରି, ଡକାୟତି, ଜୁଆଖେଳ, ଶୋଷଣ, ଧର୍ଷଣ ପ୍ରଭୃତିର ସୀମା ନାହିଁ । ସର୍ବଦା ତାମସିକ ଭୋଜନ, କୁଚିନ୍ତା ଏବଂ ପରଧନଲୋଲୁପତା ଆଧୁନିକମାନଙ୍କ ମନକୁ ଗ୍ରାସ କରିଅଛି । ଏହି ପୈଶାଚିକ ବୃତ୍ତି ତା'ର ସର୍ବନାଶର କାରଣ ନୁହେଁ କି ? ଆଧୁନିକ ସମାଜ ବ୍ରହ୍ମଚର୍ଯ୍ୟର ସମାଜ । ଏହା ସମ୍ପୂର୍ଣ୍ଣ ଅଙ୍ଗହୀନ । ଏଠାରେ ଯୋଗ୍ୟତା ଏବଂ ପରାକ୍ରମର ସ୍ଥାନ ନାହିଁ । ଏ ସମାଜର ସଭ୍ୟତାର

ଭିତରେ ସଂପୂର୍ଣ୍ଣ ଶୂନ୍ୟ ଏବଂ ବାହାରଟା ଟିପଟପ୍ । ଚିରଶାନ୍ତ ବିରାଜମାନ କରୁଥିବା ଗ୍ରାମାଞ୍ଚଳକୁ ଭୁଲିଏ ମଣିଷ ସହରସଭ୍ୟତା ପ୍ରତି ଯେପରି ଆକର୍ଷିତ ହେଉଛି, ତାହା ଅତ୍ୟନ୍ତ ପରିତାପର ବିଷୟ । ଏହା ମଙ୍ଗଳପ୍ରଦ ନୁହେ । ଭବିଷ୍ୟତରେ ଏପରି ଦିନ ଆସିବ ଯେଉଁଦିନ ମଣିଷ ପୁଣି ଗାନ୍ଧୀଜୀଙ୍କ ବାଣୀକୁ ସମ୍ମାନଦେଇ ଗ୍ରାମାଭିମୁଖୀ ହେବେ । ଭାଗବତ ଘରକୁ, ପଛରେ ପକାଇ ମଣିଷ ଆଜି ପଶ୍ଚାଦ୍‌ଗାମୀ, ପ୍ରକୃତି ଆଜି ନିଷ୍ଠୁର । ତା'ର ଭୟଙ୍କର କରାଳ ଦୃଷ୍ଟିରେ ଏମିତି ଓଡ଼ିଆ ଜାତି ଆଜି ନିଷ୍ପେଷିତ । ଧକ୍କା ପରେ ଧକ୍କା । ଯେଉଁ ଭାଗବତ ଘର ଚିର ଶାନ୍ତି, ବଳିଷ୍ଠ ଶରୀର ଓ ଉନ୍ନତ ଚିନ୍ତାଧାରା ମଣିଷ ମନରେ ଭରିଦେଇଥିଲା, ସେ ମାନବ ଆଜି, ପ୍ରକୃତିର ପ୍ରଳୟଙ୍କରୀ ବନ୍ୟା, ଘୋରକୋପଦୃଷ୍ଟିସମ୍ପନ୍ନ ବାତ୍ୟା ଏବଂ ପ୍ରଚଣ୍ଡ ରୌଦ୍ରଦାବାନଳ, ମରୁଡ଼ିର ତୀବ୍ର କଶାଘାତରେ ଜୀର୍ଣ୍ଣପ୍ରାଣ । ଆଜି ଏ ସମାଜର ଘୋର ଦୁର୍ଦ୍ଦିନରେ ଭାଗବତ ଘର ଏବଂ ଭାଗବତ ସମସ୍ତେ ହିଁ ବିଦାୟ ନେବାକୁ ବସିଲେଣି । ସେ ଯେଉଁ ଜାତିପାଇଁ ଉଦ୍ଦିଷ୍ଟ ଥିଲେ, ସେମାନେ ଆଜି ହୃତସର୍ବସ୍ୱ । ଆଧୁନିକ ମାନବ ଯେତେ ଉଦ୍ଭାବନ କଲେ ମଧ୍ୟ ପ୍ରକୃତିକୁ ଜୟ କରିବାର ଶକ୍ତି ତାର ନାହିଁ କି ହେବନାହିଁ । ବିଜ୍ଞାନର ସୁରସୃଷ୍ଟି ପ୍ରକୃତିର କ୍ଷୀଣ ଦୃଷ୍ଟିରେ ମହାଶୂନ୍ୟରେ ପରିଣତ ହେବ, ଏହା ଅବଶ୍ୟମ୍ଭାବୀ । ଅଧୁନା ଆଧୁନିକ ଓଡ଼ିଆ ଦୃଷ୍ଟିରେ ଭାଗବତ ଘର ଯେତିକି ଅବହେଳିତ ଏ ଜାତି ସେତିକି ନିଷ୍ପେଷିତ ଏବଂ ଯେଉଁଦିନ ଏ ଦେଶରୁ ଭାଗବତ ଘର ଲୋପପାଇବ ସେଦିନ ଏ ସଭ୍ୟ ସମାଜର ମୂଳୋତ୍ପାଟନ ହେବ—ଏହା ସ୍ଥିର ନିଶ୍ଚିତ ।



# ଓଡ଼ିଆ ଭାଗବତର ସାହିତ୍ୟିକ ଅବଦାନ

ଡଃ ନଟବର ସାମନ୍ତରାୟ

ଓଡ଼ିଆ ଭାଗବତ ଅଧ୍ୟୟନ ଓ ଅନୁଶୀଳନ କଲେ ଭକ୍ତକବି ଜଗନ୍ନାଥ ଦାସଙ୍କର ଯେଉଁ ଭାବ-ମୂର୍ତ୍ତି ସମ୍ୟକ୍‌ଭାବେ ପାଠକର ମାନସ ଚକ୍ଷୁରେ ଉଦ୍‌ଭାସିତ ହୋଇଉଠେ, ଯୋଗ-ସାଧନା-ମୂଳକ ବହୁ ପୁସ୍ତକର ରଚୟିତା ରୂପେ ପରିଚିତ ଜଗନ୍ନାଥ ଦାସଙ୍କର ସେ ମୂର୍ତ୍ତି ସହିତ ତାହାର ବିଶେଷ କୌଣସି ସମ୍ପର୍କ ଅଛି ବୋଲି ମନରେ ବିଶ୍ୱାସ ହୁଏ ନାହିଁ । ଦିବାକର ଦାସ ନୀଳାଦ୍ରି ବିହାରୀ ଶ୍ରୀଜଗନ୍ନାଥଙ୍କ ଆଶ୍ରୟରେ ଏ ଦେଶର ଧର୍ମ ଦର୍ଶନ ପ୍ରଖ୍ୟାପନ କଲାବେଳେ ଜଗନ୍ନାଥ ଦାସଙ୍କର ଯେଉଁ ଜୀବନ-ବୃତ୍ତାନ୍ତ ଆମକୁ ପରିବେଷଣ କରି ଦେଇଛନ୍ତି, ସେଥିରୁ ଫୁଟି ଉଠୁଥିବା ଜଗନ୍ନାଥ ଦାସଙ୍କ ଭାବ-ମୂର୍ତ୍ତି ସହିତ ପୂର୍ବୋକ୍ତ ଦୁଇଟି ଭାବ-ମୂର୍ତ୍ତିର ତୁଳନା କଲେ ଏ ତିନି ଭାବ ମୂର୍ତ୍ତି ମଧ୍ୟରେ ପାରସ୍ପରିକ ସାମ୍ୟ ଅପେକ୍ଷା ପ୍ରଭେଦ ଅଧିକ ଥିବାର ସାଧାରଣତଃ ଅନୁଭୂତ ହୋଇଥାଏ । ଧର୍ମଗତ ସ୍ୱାତନ୍ତ୍ର୍ୟ ଅପେକ୍ଷା ସାହିତ୍ୟିକ ମାନଦଣ୍ଡରେ ବିଚାର କଲେ ଏ ପ୍ରଭେଦ ସ୍ୱତଃ ଆତ୍ମପ୍ରକାଶ କରିଥାଏ । ଶେଷୋକ୍ତ ଦୁଇଟି ଭାବ-ମୂର୍ତ୍ତି ଭିତରେ ଭକ୍ତକବିଙ୍କର କୌଣସି ସାହିତ୍ୟ-ସମ୍ପଦ ଥିବାର ଆମର ବିଶ୍ୱାସ ହୁଏ ନାହିଁ । ତେଣୁ ସ୍ରଷ୍ଟାର ସାହିତ୍ୟ ବିଭବ ପ୍ରଥମ ଭାବ-ମୂର୍ତ୍ତି ଭିତରେ କେତେ ଓ କିପରି ସ୍ଥାନ ପାଇଛି ତାହାର ସାମାନ୍ୟ ଚିତ୍ର ଆମେ ଉପସ୍ଥାପନା କରୁଛୁଁ । ପ୍ରବନ୍ଧର ଶେଷଭାଗରେ ଧର୍ମଗତ ସ୍ୱାତନ୍ତ୍ର୍ୟର କଥା ଆଲୋଚନା

କରିପିବ । ପୁରାଣ କହିଲେ କ'ଣ ବୁଝାଯାଏ ତାହା ଉପରେ ବର୍ତ୍ତମାନ କିଛି କହୁଛି ।

ପ୍ରସିଦ୍ଧ ଟୀକାକାର କୁଲ୍ଲୁକଭଟ୍ଟ ମନୁସ୍ମୃତିର ୩ୟ ଅଧ୍ୟାୟ ୧ମ ଶ୍ଳୋକର ଅର୍ଥ କଲାବେଳେ ହରିତ ମୁନିଙ୍କର ଗୋଟିଏ ବାକ୍ୟ ଉଦ୍ଧାର କରିଥିଲେ । ତାହା ହେଉଛି, "ଶ୍ରୁତିଶ୍ଚ ଦ୍ୱିବିଧା, ବୈଦିକୀ ତାନ୍ତ୍ରିକୀ ।" ଭାରତୀୟ ପ୍ରାଚୀନ ଧର୍ମ ସାହିତ୍ୟକୁ ବୈଦିକୀ ଓ ତାନ୍ତ୍ରିକୀ, ଏଇ ଦୁଇ ରୂପରେ ଭାଗକଲେ ମଧ୍ୟ ସମସ୍ତ ବିଦ୍ୟା ଅଷ୍ଟାଦଶ ବିଦ୍ୟା ନାମରେ ପରିଚିତ । ଯଥା—ଚାରି ବେଦ, ଚାରି ଉପବେଦ (ଇତିହାସ, ଧନୁର୍ବେଦ, ଗାନ୍ଧର୍ବବେଦ ଓ ଆୟୁର୍ବେଦ) ୬ଟି ବେଦାଙ୍ଗ (ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ)—ଏଇ ଚଉଦଟି ସହିତ କେହି କେହି ମୀମାଂସା, ନ୍ୟାୟ, ଧର୍ମଶାସ୍ତ୍ର ଓ ପୁରାଣ କିମ୍ବା କେହି କେହି ବାର୍ତ୍ତା, କାମସୂତ୍ର, ଶିଳ୍ପଶାସ୍ତ୍ର ଓ ଦଣ୍ଡନୀତିକୁ ମିଶାଇ ଅଷ୍ଟାଦଶ ବିଦ୍ୟା ଗଣନା କରିଥାନ୍ତି । ଉପରୋକ୍ତ ବିଷୟରୁ ଏତିକି ସୁସ୍ପଷ୍ଟ ଯେ ମନ୍ତ୍ର ବା ତନ୍ତ୍ରର ପ୍ରାଧାନ୍ୟ ହେତୁରୁ ଏହା ସମୟକ୍ରମେ ବୈଦିକ ଶାସ୍ତ୍ରର ମର୍ଯ୍ୟାଦା ଆହରଣ କରିଥିଲା ଓ ଅଷ୍ଟାଦଶ ବିଦ୍ୟା ମଧ୍ୟରେ ଏ ଦେଶର ସମସ୍ତ ଜ୍ଞାନ ସୀମିତ ଥିଲା । ବୈଦିକ ସତ୍ୟଜ୍ଞାନର ସମ୍ୟକ୍ ଉପଲବ୍ଧି ଦିଗରେ ଚାରି ଉପବେଦ ଓ ଷଟ୍ଶାସ୍ତ୍ର ଅତ୍ୟନ୍ତ ଉପାଦେୟ ହେଲେ ହେଁ ପୁରାଣ ତାକୁ ଲୋକପ୍ରିୟ କରିବା ଦିଗରେ ବଳିଷ୍ଠ ପଦକ୍ଷେପ ନେଇଥିଲେ ।

ଭାରତୀୟ ଧର୍ମମୂଳକ କାବ୍ୟ-ସାହିତ୍ୟ ବା 'ଏପିକ୍' ଇତିହାସ ଓ ପୁରାଣ ଭେଦରେ ଦ୍ୱିବିଧ । ରାମାୟଣ ଓ ମହାଭାରତ ଇତିହାସ ବିଭାଗର ଅନ୍ତର୍ଗତ; କିନ୍ତୁ ପୁରାଣ ସଂଖ୍ୟାରେ ହେଉଛି ଅଠର । ଦେବୀ ପୁରାଣ (୧।୩) ପୁରାଣମାନଙ୍କ ଆଦ୍ୟ ଅକ୍ଷର ଅବଲମ୍ବନରେ ଏମିତି କହିଛନ୍ତି,

"ମଦ୍ୱୟଂ ଭଦ୍ୱୟଂ ଚୈବ ବ୍ରତ୍ରୟଂ ବଚତୁଷ୍ଟୟମ୍
ନାଲିଂପାଗ୍ନି ପୁରାଣାନି କୂସ୍କଂ ଗାରୁଡମେବ ଚ ।"

ଅର୍ଥାତ୍ ମକାରାଦି ଦୁଇଟି ପୁରାଣ (ମତ୍ସ୍ୟ ଓ ମାର୍କଣ୍ଡେୟ), ଭକାରାଦି ଦୁଇଟି (ଭବିଷ୍ୟ ଓ ଭାଗବତ) ବ୍ରକାରାଦି ତିନୋଟି (ବ୍ରହ୍ମ, ବ୍ରହ୍ମାଣ୍ଡ ଓ ବ୍ରହ୍ମବୈବର୍ତ୍ତ), ବକାରାଦି ଚାରୋଟି (ବିଷ୍ଣୁ, ବାୟୁ, ବାମନ ଓ

ବାରାହ) ନା (ନାରଦୀୟ) ଲିଙ୍ଗ (ଲିଙ୍ଗପୁରାଣ), ପ (ପଦ୍ମ) ଓ ଅଗ୍ନି ପୁରାଣ, କୂ. (କୂର୍ମ), ସ୍କଂ (ସ୍କନ୍ଦ) ଓ ଗରୁଡ଼ ଏମିତି ପୁରାଣର ସଂଖ୍ୟା ଅଠର । ପୁରାଣ ସାହିତ୍ୟ ଏ ଦେଶର ଏକ ପ୍ରାଚୀନ ସାରସ୍ୱତ ସମ୍ପଦ । ଅର୍ଥର୍ବ-ବେଦ (୧୧।୭।୨୪)ରେ ଅଛି, "ଋଚଃ ସାମାନି ଛନ୍ଦାଂସି ପୁରାଣ ଯଜୁଷା ସହ ।" ଅର୍ଥାତ୍ ବ୍ରହ୍ମା ଋଗ୍‌ବେଦ ସହିତ ପୁରାଣ ମଧ୍ୟ ଉତ୍ପନ୍ନ କରିଥିଲେ । ପୁରାଣ ଜାଣିଥିବା ଲୋକଙ୍କୁ 'ପୁରାଣବିତ୍' ବୋଲି ଅଥର୍ବ ବେଦର ଅନ୍ୟତ୍ର କୁହାଯାଇଛି । ଛାନ୍ଦୋଗ୍ୟ ଉପନିଷଦ (୭।୧।୩)ରେ ମଧ୍ୟ ପୁରାଣ-ଇତିହାସକୁ ପଞ୍ଚମବେଦ ରୂପେ ଗ୍ରହଣ କରାଯାଇଛି । ପୁରାଣର ପ୍ରାଚୀନତା ପ୍ରତିପାଦନ ଲକ୍ଷ୍ୟରେ କୌଣସି କୌଣସି ପୁରାଣ ମଧ୍ୟ ଏହାକୁ ବେଦଠାରୁ ଅଧିକ ପ୍ରାଚୀନ ବୋଲି ଦାବି କରିଛି । ବାୟୁ ପୁରାଣରେ ଅଛି—

"ପୁରାଣଂ ସର୍ବଶାସ୍ତ୍ରାଣାଂ ପ୍ରଥମଂ ବ୍ରହ୍ମଣା ସ୍ମୃତମ୍
ଅନନ୍ତରଂ ଚ ବକ୍ତ୍ରେଭ୍ୟୋ ବେଦାସ୍ତସ୍ୟ ବିନିର୍ଗତାଃ ।"

କିନ୍ତୁ ଏହା ସତ୍ୟ ଯେ ଆମେ ଏ ପୁରାଣଗୁଡ଼ିକୁ ଯେଉଁ ରୂପରେ ଦେଖିବାକୁ ପାଉଛୁ, ସେଗୁଡ଼ିକ ପ୍ରଥମେ ସେଇ ରୂପରେ ନଥିଲେ । ପୁରାଣ ସାହିତ୍ୟ ବହୁ ପ୍ରାଚୀନ ହେଲେହେଁ କାଳକ୍ରମେ ତାହା ବହୁ ପରିବର୍ତ୍ତନ ମଧ୍ୟରେ ଗତି କରି ଓ ବହୁ ନୂତନ ଉପାଦାନ ଆହରଣ କରି ବର୍ତ୍ତମାନ ରୂପ ଧାରଣ କରିଅଛି ।

ବୈଦିକ ସତ୍ୟଜ୍ଞାନର ନିଗୂଢ଼ତତ୍ତ୍ୱ ସରଳ ଶୈଳୀ ଓ ସହଜଭାଷା ମାଧ୍ୟମରେ ଜନତା ମଧ୍ୟରେ ପ୍ରଚାର କରିବା ପରବର୍ତ୍ତୀ କାଳରେ ପୁରାଣର ମୁଖ୍ୟ ଉଦ୍ଦେଶ୍ୟ ହୋଇପଡ଼ିବାରୁ ଗୋଟିଏ ଗୋଟିଏ ଦେବତାଙ୍କର ପ୍ରାଧାନ୍ୟ ପୁରାଣବିଶେଷରେ ଦେଖା ଦେଇଥିଲା । ପଦ୍ମ ପୁରାଣ ଉତ୍ତରାଖଣ୍ଡ (୨୬୩ । ୮୧ । ୮୪)ରେ ପୁରାଣଗୁଡ଼ିକରୁ ସାତ୍ତ୍ୱିକ, ତାମସିକ ଓ ରାଜସିକ ଏଇ ତିନିଭାଗରେ ବିଭକ୍ତ କରାଯାଇଅଛି । ଯଥା—ସାତ୍ତ୍ୱିକର ବିଷ୍ଣୁ, ନାରଦୀୟ, ଭାଗବତ, ଗରୁଡ, ପଦ୍ମ ଓ ବରାହ; ତାମସର ମତ୍ସ୍ୟ, କୂର୍ମ, ଲିଙ୍ଗ, ଶିବ, ଅଗ୍ନି ଓ ସ୍କନ୍ଦ; ରାଜସର ବ୍ରହ୍ମାଣ୍ଡ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡେୟ, ବ୍ରହ୍ମ, ବାମନ ଏବଂ ଭବିଷ୍ୟ । ମତ୍ସ୍ୟ ପୁରାଣ (୫୩ । ୬୮ ଓ ୬୯ ଶ୍ଲୋକ)ରେ କୁହାଯାଇଛି ଯେ ସାତ୍ତ୍ୱିକପୁରାଣରେ ବିଷ୍ଣୁଙ୍କର, ରାଜସ ପୁରାଣରେ ବ୍ରହ୍ମାଙ୍କର ଓ ତାମସ ପୁରାଣରେ ଶିବଙ୍କର ଅଧିକ ମହାତ୍ମ୍ୟ ବର୍ଣ୍ଣିତ ।

ବିଷୟବସ୍ତୁ ମାନଦଣ୍ଡରେ ପୁରାଣର ସ୍ୱରୂପ ନିର୍ଣ୍ଣୟ କଲାବେଳେ ତା'ର 'ପଞ୍ଚ ଲକ୍ଷଣ' ସ୍ୱୀକୃତ ହୋଇଥାଏ । କୂର୍ମ (୧ । ୧ । ୧୨), ବରାହ (୨।୪) ଓ ମତ୍ସ୍ୟ (୫୩।୬୫) ପୁରାଣ ଅନୁସାରେ ଏଇ 'ପଞ୍ଚଲକ୍ଷଣ' ହେଉଛି ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ । କିନ୍ତୁ, କାଳକ୍ରମେ ପୁରାଣର ବିଷୟବସ୍ତୁ ବିବିଧପ୍ରକାର ହୋଇ ଉଠିବାରୁ ଏମିତି ସଂଜ୍ଞା ପୁରାଣର ଯଥାର୍ଥ ସ୍ୱରୂପ ଉପଲବ୍ଧି ଦିଗରେ ଯଥେଷ୍ଟ ହୋଇନଥିଲା । ତେଣୁ ଭାଗବତ ପର ପୁରାଣ ଏହାର ଦଶଟି ଲକ୍ଷଣ ସ୍ଥିର କରିଛନ୍ତି । ଯଥା—ସର୍ଗ, ବିସର୍ଗ, ବୃତ୍ତି, ରକ୍ଷା, ମନ୍ୱନ୍ତର, ବଂଶ, ବଂଶାନୁଚରିତ, ସଂସ୍ଥା (ପ୍ରଳୟ), ହେତୁ ଓ ଅପାଶ୍ରୟ । ଭାଗବତ ପୁରାଣ ମତରେ ଏଇ ପଞ୍ଚଲକ୍ଷଣ ଓ ଦଶ ଲକ୍ଷଣ ଉଭୟ ହିଁ ଠିକ୍ । କାରଣ ପାଞ୍ଚଟି ଲକ୍ଷଣ ଥିଲେ କ୍ଷୁଦ୍ର ପୁରାଣ ଓ ଦଶଟି ଥିଲେ ମହାପୁରାଣ ହୁଏ । ଆହୁରି ବିଷୟବସ୍ତୁର ଅଭିବୃଦ୍ଧି ସଙ୍ଗେ ଏଇ ଦଶଟି ଲକ୍ଷଣ ମଧ୍ୟ ପୁରାଣର ସଂଜ୍ଞା ପ୍ରଦାନ କରିବାରେ ସମର୍ଥ ହୋଇ ନଥିଲା । ତେଣୁ ମତ୍ସ୍ୟପୁରାଣ ଏଇ ତାଲିକାରେ ଅନ୍ୟ କେତେକ ଲକ୍ଷଣ ଅନ୍ତର୍ଭୁକ୍ତ କରିବାକୁ ବାଧ୍ୟ ହୋଇଛି । ମତ୍ସ୍ୟପୁରାଣ (୫୩ । ୬୭ । ୭) ଏଇ ଦଶଟି ଲକ୍ଷଣ ସହ କହିଛି ଯେ ପୁରାଣରେ ବ୍ରହ୍ମା, ବିଷ୍ଣୁ, ସୂର୍ଯ୍ୟ, ରୁଦ୍ରଙ୍କର ମାହାତ୍ମ୍ୟ ବର୍ଣ୍ଣନା ସଙ୍ଗେ ପୃଥିବୀର ଉତ୍ପତ୍ତି ଓ କ୍ଷୟର ବର୍ଣ୍ଣନା ରହିବା ଉଚିତ । ଏହା ସହିତ ଧର୍ମ, ଅର୍ଥ କାମ ଓ ମୋକ୍ଷ ଏଇ ଚତୁର୍ବର୍ଗଫଳର ପ୍ରଶସ୍ତି, ତା'ର ବିରୁଦ୍ଧାଚରଣର ଫଳାଫଳ ମଧ୍ୟ ପ୍ରଦର୍ଶିତ ହେବା ବିଧେୟ । ଏସବୁ ପୁରାଣ ଅନ୍ତର୍ଗତ ଧର୍ମଗତ ବିଷୟବସ୍ତୁକୁ ଲକ୍ଷ୍ୟ କରି ଯେ କୁହାଯାଇଛି ସେଥିରେ କୌଣସି ସନ୍ଦେହ ନାହିଁ । ପ୍ରତ୍ୟେକ ପୁରାଣକାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କାଳକୁ ଲକ୍ଷ୍ୟ ରଖି ଏତେ ବିଭିନ୍ନ ବିଷୟ ନିର୍ବାଚନ କରିଥାନ୍ତି ଯେ-ପୁରାଣର ଆକାର-ବୃଦ୍ଧି ହେବା ଏକାନ୍ତ ସ୍ୱାଭାବିକ । ମହାଭାରତର ଏଇ ସ୍ଥୀତକୃତ କଳେବର ପାଇଁ ତ କୁହାଯାଇଛି "ମହତ୍ତ୍ୱାଦ୍ ଭାରବତ୍ତ୍ୱ ଚ ମହାଭାରତମୁଚ୍ୟତେ ।"

ଯାହା ପୁରାତନ ତାହାହିଁ ପୁରାଣ—ଏହା ବୋଧହୁଏ ପୁରାଣର ସ୍ୱରୂପ ଅବଧାରଣରେ ଏକମାତ୍ର ନିର୍ଭରଯୋଗ୍ୟ ନୀତିଚୟ । କାରଣ ଭାରତୀୟ ଭାବନାରାଜ୍ୟରେ ଏମିତି କୌଣସି ବିଷୟ ନାହିଁ ଯାହା କୌଣସି

ନା କୌଣସି ପୁରାଣରେ ମିଳିବା ଅସମ୍ଭବ । ତତ୍ତ୍ୱବତ୍ତମାନଙ୍କ ମତରେ ଯେଉଁ ପୁରାଣ କେତୋଟି କଥାକୁ ଅବଲମ୍ବନ କରି ପ୍ରଥମେ ବିକାଶଲାଭ କରିଥିଲେ, ସମୟ ସ୍ରୋତରେ, ସେଥିରେ ଭିନ୍ନ ଭିନ୍ନ ବିଷୟ ଅନ୍ତର୍ଭୁକ୍ତ ହୋଇପଡ଼ିଲା । ରାଜନୈତିକ ଇତିହାସ, ପ୍ରାକୃତିକ ଭୂଗୋଳ, ସଙ୍ଗୀତ, ବ୍ୟାକରଣ, ଛନ୍ଦ, ନାଟକର ନିୟମାବଳୀ, ଭେଷଜବିଦ୍ୟା, ଜ୍ୟୋତିର୍ବେଦ, ଶିଳ୍ପ, ସ୍ଥାପତ୍ୟବିଦ୍ୟା, ରାଜଧର୍ମ, ଲୋକଙ୍କ ଆଚାର ବ୍ୟବହାର, ଧର୍ମଗତ ବିଭିନ୍ନ କ୍ରିୟା କାଣ୍ଡ, ଦାନ, ବ୍ରତ, ଭକ୍ତି, ଯୋଗ, ଜ୍ଞାନ, ତନ୍ତ୍ର, ମନ୍ତ୍ର, ଶିବ ବିଷ୍ଣୁଙ୍କର ବିଭିନ୍ନ ଅବତାର, କ୍ଷେତ୍ରମାହାତ୍ମ୍ୟ ପ୍ରଭୃତି ଭିନ୍ନ ଭିନ୍ନ ପ୍ରକୃତିର ବିଷୟ ଏଥିରେ ସ୍ଥାନ ପାଇ ଏହାକୁ ଏକ ଏକ ବିଶ୍ୱକୋଷର ଗୌରବ ଦାନ କରିଛନ୍ତି । ଏକ ଅର୍ଥରେ ପୁରାଣ ହେଉଛି ଏକ ପ୍ରଚାର-ମୂଳକ ସାହିତ୍ୟ । ଯେଉଁମାନେ ଯାହା କିଛି ଲୋକ-ସମାଜରେ ପ୍ରଚାର କରିବାକୁ ଇଚ୍ଛା କରିଛନ୍ତି, ସେମାନେ ସେଗୁଡ଼ିକୁ ପୁରାଣ ମଧ୍ୟରେ ଅନ୍ତର୍ଭୁକ୍ତ କରିଦେଇଛନ୍ତି । ପୁରାଣଗୁଡ଼ିକ ହଜାର ହଜାର ବର୍ଷଧରି ବିଭିନ୍ନ ସମୟରେ ବିଭିନ୍ନ ପରିବର୍ତ୍ତନ ମଧ୍ୟରେ ଗତି କରି ପ୍ରାୟ ୧୦ମ ୧୧ଶ ଶତାବ୍ଦୀବେଳକୁ ଆଜିର ରୂପ ଧାରଣ କରିଛି ବୋଲି କେତେକଙ୍କର ମତ । ତେବେ ଏହାର ବିକାଶ ଇତିହାସରେ ଯେଉଁ କେତୋଟି ବିଶିଷ୍ଟ ବିଷୟ ସ୍ପଷ୍ଟତଃ ଉପଲବ୍ଧ ହୋଇଥାଏ ତାହା ନିମ୍ନରେ ଉପସ୍ଥାପନ କରାଯାଉଅଛି ।

୧—ଅତୀତର କୌଣସି ବିଶିଷ୍ଟ ଘଟଣାକୁ ଗୀତାକାରରେ ମୌଖିକ କମ୍ବା ଲିଖିତ ଭାବେ ସ୍ମରଣ କରିବା ପ୍ରତ୍ୟେକ ମନୁଷ୍ୟର ଏକ ନୈସର୍ଗିକ ପ୍ରକୃତି । ମହାଭାରତ ଓ ରାମାୟଣର ସାରାଂଶରେ ଏପରି ଏକ ଏକ ବିଶିଷ୍ଟ ଘଟଣାର ସଙ୍କେତ ଦେଖିବାକୁ ମିଳୁଥିବାରୁ ପୁରାଣ ଏହାକୁ ଅବଲମ୍ବନ କରି ଗଢ଼ି ଉଠିଥିଲା ବୋଲି କେହି କେହି କହନ୍ତି—

୨—ଏପରି ଏକ ଏକ ବିଷୟ ଲୋକଙ୍କ ମଧ୍ୟରେ ପ୍ରଚଳିତ ହେଉଥିବାରୁ ପରବର୍ତ୍ତୀ ସମୟରେ ଲୋକ-ଶିକ୍ଷାପାଇଁ ସେଥିରେ ବିଭିନ୍ନ ବିଷୟ ବା ବିଦ୍ୟା ଅନ୍ତର୍ଭୁକ୍ତ କରାଯାଇଥିଲା । ଫଳରେ ଇତିହାସ-ଭୂଗୋଳ ପରି ସାହିତ୍ୟ-ସ୍ଥାପତ୍ୟ ବିଦ୍ୟା ମଧ୍ୟ ଏଥିରେ ସ୍ଥାନ ଅଧିକାର କରିଥିଲା ।

୩—ଧର୍ମ-ଭାବନା ଭାରତୀୟ ଚିନ୍ତା-ରାଜ୍ୟର ଏକ ପ୍ରଧାନ ବୈଶିଷ୍ଟ୍ୟ । ଲୋକଙ୍କ ନୈତିକ ଜୀବନର ସୁସଙ୍ଗଠନ ପାଇଁ ସମୟକ୍ରମେ ପୁରାଣର

ବିଷୟବସ୍ତୁ ଭିତରେ ଧର୍ମ-ଭାବ ପ୍ରଧାନ ହୋଇ ଦେଖା ଦେଇଥିଲା । ବେଦ-ବ୍ରାହ୍ମଣ-ଉପନିଷଦ-ଷଡଦର୍ଶନର ଗହନ କାନନରେ ବିଚରଣ କରିବା ସାଧାରଣ ଲୋକଙ୍କ ପକ୍ଷରେ ସମ୍ଭବପର ନୁହେଁ । ଏଥିପ୍ରତି ଲୋକଙ୍କ ମନକୁ ଆକୃଷ୍ଟ କରିବା ପାଇଁ ବୈଦିକ ସାହିତ୍ୟର ନିଗୂଢ଼ ଜ୍ଞାନରାଶି ସରଳ ଭାବରେ ପୁରାଣରେ ସ୍ଥାନ ପାଇଥିଲା ।

୪— ଜନତା ପାଇଁ ଉଦ୍ଦିଷ୍ଟ ଥିବାରୁ ପୁରାଣର ଭାଷା ବାଧ୍ୟହୋଇ ସହଜ ଓ ସରଳ ହୋଇଥିଲା ।

୫— ଭାରତରେ ଆଧ୍ୟାତ୍ମିକ ଭାବନାର ସର୍ବଶ୍ରେଷ୍ଠ ପରିସ୍ଫୁରଣ ହୋଇଥିଲା ଯୋଗୀ-ଋଷି-ମୁନି-ସେବିତ ନିବିଡ଼ ଅରଣ୍ୟାନୀସ୍ଥ ଆଶ୍ରମ ବା ବନ-ପ୍ରାନ୍ତରରେ । ସେ ଜ୍ଞାନ ସେତେବେଳେ ଥିଲା ବ୍ୟକ୍ତିକେନ୍ଦ୍ରିକ । ବ୍ୟକ୍ତିର ସ୍ୱ-କାମ୍ୟ ସାଧନାରେ ଯେଉଁ ସିଦ୍ଧିଲାଭ ହେଉଥିଲା, ତାହା ବଚନରୂପରେ ଆତ୍ମପ୍ରକାଶ କରିଥିଲା ଯାହା ସମଗ୍ର ଜୀବଜଗତର ଗତିମୁକ୍ତି ପାଇଁ ସ୍ପଷ୍ଟ ନିର୍ଦ୍ଦେଶ ଦେଉଥିଲା । ଆର୍ଯ୍ୟଋଷି-ଉପଲବ୍ଧ ସତ୍ୟ-ଜ୍ଞାନ ତା'ର ସମସ୍ତ ଜଟିଳତା ଓ ଦୁର୍ବୋଧତାର ନାଗପାଶରୁ ମୁକ୍ତି ପାଇ ପୁରାଣ ଭିତରେ ପ୍ରଥମେ ଯେତେବେଳେ ଆତ୍ମପ୍ରକାଶ କଲା, ସେତେବେଳେ ସେ ଆଧ୍ୟାତ୍ମିକ ଭାବନାର ଅବବୋଧ ଓ ଉପଲବ୍ଧି କରିପାରିବା ଜନସମାଜ ପକ୍ଷରେ ଅସମ୍ଭବ ହୋଇ ନଥିଲା । ପୁରାଣର ଏପରି ନବୀକରଣ ସମୟରେ ଚତୁର ପୁରାଣକାର-ମାନେ ସ୍ମୃତିଶାସ୍ତ୍ର ଅନୁମୋଦିତ ବିଧିବିଧାନ, ଆଚାରପଦ୍ଧତି ସେଥିରେ ସନ୍ନିବିଷ୍ଟ କରି ଧର୍ମଭୀରୁ ଜନତାଚିତ୍ତକୁ ଏହା ପ୍ରତି ଏପରି ଆକର୍ଷିତ କରିଦେଲେ ଯେ ଏମାନଙ୍କ ଆଖିରେ ପୁରାଣ ହେଲା ଏକ ଧର୍ମ-ପୁସ୍ତକ; ଏହା ପ୍ରତି ଆନ୍ତରିକ ଶ୍ରଦ୍ଧା, ସମ୍ମାନ ଏପରିକି ହୃଦୟର ସମସ୍ତ ଭକ୍ତି ପ୍ରଦର୍ଶନ କରିବା ପ୍ରତ୍ୟେକଙ୍କର ଏକ ନୈତିକ କର୍ତ୍ତବ୍ୟ ।

ସାମାଜିକ, ପାରିବାରିକ ତଥା ବ୍ୟକ୍ତିର ବ୍ୟକ୍ତିଗତ ଜୀବନ ଉପରେ ସଂସ୍କୃତଭାଷାରେ ଲିଖିତ ବିଧିବିଧାନ ଏପରି ଅକ୍ଷୁଣ୍ଣ ପ୍ରଭାବ ବିସ୍ତାର କରିଥିଲା ଯେ ସେ ବିଧିବିଧାନ ସେ ଭାଷାରେ ଲିପିବଦ୍ଧ ହେଲେ ତା'ହାପ୍ରତି ଲୋକଙ୍କର କୌଣସି ବିଶ୍ୱାସ ରହୁ ନଥିଲା । ଦେବଭାଷା

ସଂସ୍କୃତରୁ ଉଦ୍‌ଭୂତ ଲୋକ ମନର ପବିତ୍ର ଭାବଟି ପୁରାଣରେ ମଧ୍ୟ ପ୍ରତିଫଳିତ ହୋଇଥିଲା । ଧର୍ମାର୍ଜନ ପାଇଁ ଯେଉଁ ପୁରାଣ ପାରାୟଣ କରାଯିବ, ତାହା ସେଇ ହେତୁରୁ ସଂସ୍କୃତରେ ହିଁ ସଂରକ୍ଷିତ ହେବା ଉଚିତ । ଜନତା-ଚିତ୍ତର ଏଇ ଆଭିମୁଖ୍ୟରେ କ୍ରମକ୍ରମେ ପରିବର୍ତ୍ତନ ପରିଲକ୍ଷିତ ହେଲା । ଜନତା ପାଇଁ ପୁରାଣ ପ୍ରଥମେ ଉଦ୍ଦିଷ୍ଟ ଥିଲେ ହେଁ ତାହା ସଂସ୍କୃତରେ ଲିଖିତ ହୋଇଥିବାରୁ ଅଳ୍ପ ସଂସ୍କୃତ ଜାଣିଥିବା ଲୋକ କିମ୍ବା ସଂସ୍କୃତ ନ ଜାଣିଥିବା ଲୋକ ବିଶେଷତଃ ନିରକ୍ଷର ଲୋକ ପକ୍ଷରେ ଏପରି ପୁରାଣ ନିଜେ ପଢ଼ି ବୁଝିବା ସମ୍ଭବପର ହୋଇ ନଥିଲା । ତେଣୁ ଏଇପରି ଧର୍ମପ୍ରାଣ ଲୋକଙ୍କ ପୁରାଣ ଶୁଣିବା ପାଇଁ ଜଣେ ଜଣେ ସଂସ୍କୃତଜ୍ଞ ପଣ୍ଡିତ ପୁରାଣ ପଣ୍ଡାର ସ୍ଥାନ ଅଧିକାର କଲେ । ପ୍ରଥମେ ସଂସ୍କୃତପୁରାଣ ପଢ଼ି ତାକୁ ଦେଶ-ଭାଷାରେ ଅର୍ଥ କରିବା ହେଲା ଏହାଙ୍କର କାର୍ଯ୍ୟ । ପୁରାଣ ଶୁଣିବା ପାଇଁ ପୁରାଣ-ପଣ୍ଡାର ପାରିଶ୍ରମିକ ସ୍ୱରୂପ ଶ୍ରୋତା ପକ୍ଷରୁ ଦକ୍ଷିଣା ଦାନର ବ୍ୟବସ୍ଥା ହେଲା । ସମୟକ୍ରମେ ଏହା ଏପରି ଏକ ପରମ୍ପରାରେ ପହଞ୍ଚିଲା ଯେ ଦକ୍ଷିଣା ଦାନ ବାଧ୍ୟବାଧକତାରେ ପରିଣତ ହେଲା । ଫଳରେ ଯେଉଁମାନେ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ନ ଥିଲେ, ସେମାନେ ପୁରାଣଶ୍ରବଣରୁ ବଞ୍ଚିତ ହେଲେ । ଏକ ଭାଗରେ ଧର୍ମାର୍ଜନ ପାଇଁ ପୁରାଣ ଶ୍ରବଣ ପ୍ରତି ଲୋକ ମନର ପ୍ରବଳ ଅଭିଳାଷ, ଅପର ଭାଗରେ ପୁରାଣ-ପଣ୍ଡାମାନଙ୍କର ଅର୍ଥ ଆଦାୟର ଏକ ସୁପରିକଳ୍ପିତ କୌଶଳ ଏଇ ସଂଘର୍ଷର ସହଜ ସମାଧାନ ପାଇଁ କୌଣସି କୌଣସି ପଣ୍ଡିତ ସଂସ୍କୃତର ପୁରାଣକୁ ଦେଶଭାଷାରେ ଅନୁବାଦ କରିବାର ଆବଶ୍ୟକତା ଅନୁଭବ କଲେ । ଦେଶ ଭାଷାରେ ଲିଖିତ ପୁରାଣ ଯେ କେହି ପାଠ ଜାଣିବାବାଲା ପଢ଼ି ପାରୁଥିଲା । ଅନ୍ୟ ସମସ୍ତେ ତାହା ଶୁଣି ମନେ ରଖୁଥିଲେ । ଓଡ଼ିଆ ଭାଗବତ ରଚନାର ପଶ୍ଚାତ୍ତରେ ଏଇପରି ଏକ ଇତିହାସ ଥିବାର ଶୁଣିବାକୁ ମିଳେ । ଜଗନ୍ନାଥ ଦାସଙ୍କ ବିଧବା ମାତା ଅର୍ଥାଭାବରୁ ପୁରାଣ ଶୁଣିବା ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ । ତେଣୁ ପୁତ୍ର ଜଗନ୍ନାଥ ଦାସ ସୁଦୂର କାଶୀରେ ଭାଗବତ ଅଧ୍ୟୟନ କରି ସ୍ୱଗୃହକୁ ଫେରିବା ପରେ ଭାଗବତ ଅନୁବାଦ କଲେ ଓ ମାତାଙ୍କୁ ପଢ଼ି ଶୁଣାଉଥିଲେ ।

ପ୍ରତ୍ୟେକ ପ୍ରାନ୍ତୀୟ ଭାରତୀୟ ସାହିତ୍ୟର ଆଦ୍ୟ ଇତିହାସ ପର୍ଯ୍ୟାଲୋଚନା କଲେ ସେଥିରେ ସଂସ୍କୃତ ପୁରାଣର ଭୂମିକା ପ୍ରଧାନ ଥିବାର

ଦେଖିବାକୁ ମିଳେ । ଭଗବାନ ଶ୍ରୀ ଶଙ୍କରଙ୍କ ଜ୍ଞାନମୂଳକ ଅଦ୍ୱୈତବାଦ ଜନସାଧାରଣଙ୍କଠାରେ ଦୁର୍ବୋଧ ଥିଲା । ଏହାଙ୍କ ପରେ ରାମାନୁଜାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ନିମ୍ବାର୍କାଚାର୍ଯ୍ୟ ଓ ମାଧ୍ୱାଚାର୍ଯ୍ୟ ବୈଦିକ ସାହିତ୍ୟକୁ ଭକ୍ତିବାଦ ଦୃଷ୍ଟିରୁ ଅନୁଶୀଳନ କରି ଯେଉଁ ଶାସ୍ତ୍ରମାନ ରଚନା କଲେ ତାହା ଲୋକ ମନକୁ ଆକର୍ଷଣ କରିବାରେ ସମର୍ଥ ହୋଇଥିଲା । ପୁନଶ୍ଚ, ବିଭିନ୍ନ ପୁରାଣ, ବିଶେଷତଃ ଭାଗବତ ପରି ଏକ ଭକ୍ତି ଗ୍ରନ୍ଥର ଆବିର୍ଭାବ ପରେ 'ଜ୍ଞାନ' ଅପେକ୍ଷା 'ଭକ୍ତି' ପ୍ରତି ଲୋକମନରେ ଆକର୍ଷଣ ଅଧିକ ଦୃଢ଼ୀଭୂତ ହୋଇ ଯାଇଥିଲା । ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟର ଆଦି ପର୍ଯ୍ୟାୟରେ ରାମାୟଣ, ମହାଭାରତ ଓ ଭାଗବତର ଅନୁବାଦ ଓ ଅନୁସରଣ ସେଥିପାଇଁ ଆମେ ଦେଖିବାକୁ ପାଇଥାଉଁ ।

ସଂସ୍କୃତ ପୁରାଣକୁ ଚକ୍ଷୁ ସମକ୍ଷରେ ରଖି ଓଡ଼ିଆ ପୁରାଣ ଅନୁଧ୍ୟାନ କଲେ ଆମେ ସର୍ବଦା ହତାଶ ହେବୁ । ତେଣୁ ଓଡ଼ିଆ ପୁରାଣ ଆଜି ଯେଉଁ ରୂପରେ ଅଛି, ତାକୁ ମୂଳପିଣ୍ଡ କରି ଅନୁଶୀଳନ କଲେ ତା'ର ଯଥାର୍ଥ ସ୍ୱରୂପ ଉପଲବ୍ଧି ହୋଇପାରିବ ବୋଲି ଆଶା କରା-ଯାଇପାରେ ।

ଯଥାର୍ଥରେ ଓଡ଼ିଆ ପୁରାଣ ସଂଖ୍ୟାରେ ପାଞ୍ଚ ମାତ୍ର । କେହି କେହି ଏମାନଙ୍କୁ ପଞ୍ଚପୁରାଣ ବୋଲି କହନ୍ତି । ଯଥା—ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଦାଣ୍ଡୀରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ, ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶ ଓ ପୀତାମ୍ବର ଦାସଙ୍କ ନୃସିଂହ ପୁରାଣ । ମହାଦେବ ଦାସ ଓ ନୀଳାମ୍ବର ଦାସ ପ୍ରଭୃତି ପୁରାଣକାରଙ୍କ ପୁରାଣଗୁଡ଼ିକର ଆକାରଗତ କ୍ଷୁଦ୍ରତା ହେତୁ ସମଗ୍ରଭାବରେ ଲୋକଙ୍କ ମଧ୍ୟରେ ଜନପ୍ରିୟ ନ ଥିବାରୁ ବୋଧହୁଏ ଓଡ଼ିଆର ପୁରାଣ ସଂଖ୍ୟାକୁ ପାଞ୍ଚରେ ସୀମିତ ରଖା-ଯାଇଛି । ହୁଏତ କେହି କେହି ପୁରାଣର ସଂଖ୍ୟା ଅଧିକ କରିପାରନ୍ତି; କିନ୍ତୁ ଭାଗବତର ଅନୁଧ୍ୟାନ ପାଇଁ ଆମେ ଏହି ପଞ୍ଚ ପୁରାଣକୁ କେବଳ ଏଠାରେ ଗ୍ରହଣ କରି ନେଇଛୁ । ଦେଖିବାର କଥା, ରାମାୟଣ ଓ ମହା-ଭାରତ ସଂସ୍କୃତରେ ଇତିହାସ ଶ୍ରେଣୀର ଅନ୍ତର୍ଗତ; ହରିବଂଶ ଓ ନୃସିଂହ ପୁରାଣ ଉପପୁରାଣ ମାତ୍ର । ସଂସ୍କୃତର ଅଠରଟି ପୁରାଣ ମଧ୍ୟରୁ କେବଳ ଭାଗବତ ହିଁ ଓଡ଼ିଆରେ ଏକମାତ୍ର ପୁରାଣ; କିନ୍ତୁ ଏ ସମସ୍ତଙ୍କୁ ଓଡ଼ିଆର ସ୍ୱୀକୃତି ଦେଇ ପୁରାଣ କରାଯାଇଥାଏ ।

ଭାଗବତର ଅନୁବାଦ ପୂର୍ବରୁ ଏ ଦେଶରେ ମହାଭାରତ ଓ ରାମାୟଣ ରଚିତ ହୋଇ ସାରିଥିଲା । ଏ ଉଭୟ ପୁସ୍ତକର ଜନପ୍ରିୟତା ସତ୍ତ୍ୱେ ସେମାନଙ୍କ ସ୍ୱରୂପ ଉପରେ ଜଗନ୍ନାଥ ଦାସଙ୍କର ନିଶ୍ଚୟ ପୂର୍ଣ୍ଣ ଧାରଣା ଥିଲା । ନିଜର ସୃଷ୍ଟିକୁ ଅଧିକ ଲୋକ ହୃଦୟଗ୍ରାହ୍ୟ କରିବା ସଙ୍ଗେ ମୂଳ ପୁସ୍ତକର ଗୌରବ ସଂରକ୍ଷଣ ତଥା ସ୍ଥଳବିଶେଷରେ ସ୍ୱକୀୟ ସ୍ୱାତନ୍ତ୍ର୍ୟ ଓ ମତ-ସଂସ୍ଥାପନ ଦିଗରେ ସେ ମନ ବଳାଇବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ଓଡ଼ିଆ ଭାଗବତର ଏ ସ୍ୱାତନ୍ତ୍ର୍ୟ ଉପରୋକ୍ତ ଦୁଇଟି ପୁରାଣ ଏପରିକି ଓଡ଼ିଆ ହରିବଂଶ ଓ ନୃସିଂହ ପୁରାଣଠାରୁ ଏହାକୁ ସମ୍ପୂର୍ଣ୍ଣ ଏକ ଭିନ୍ନ ଜାତୀୟ ସୃଷ୍ଟିରୂପେ ପ୍ରତିପାଦନ କରିଦେଇ ଥିବାର ଦେଖିବାକୁ ମିଳେ । ଏକ ଦିଗରେ ମହାଭାରତ ରାମାୟଣ, ହରିବଂଶ, ନୃସିଂହପୁରାଣ ଓ ଅପର ଦିଗରେ ସ୍ପଷ୍ଟ ଉପଲବ୍ଧି ହୋଇଥାଏ । ଏଥିରୁ ମହାଭାରତ ପ୍ରଭୃତି ସବୁଗୁଡ଼ିକ ପୁରାଣ କେହି ଗୋଟିଏ ମଧ୍ୟ ମୂଳ ସଂସ୍କୃତର ଅବିକଳ ଆକ୍ଷରିକ ଅନୁବାଦ ନୁହେଁ । ଭାଗବତ, କିନ୍ତୁ, ଏ ନିୟମର ସଂପୂର୍ଣ୍ଣ ବ୍ୟତିକ୍ରମ । ସଂସ୍କୃତ ଭାଷାରେ ଅନୁବାଦ ଲିଖିତ ଗୋଟିଏ ପୁରାଣକୁ ଚକ୍ଷୁ ସମ୍ମୁଖରେ ରଖି ଦେଶଭାଷାରେ ପୁରାଣ ରଚନା କଲାବେଳେ ଓଡ଼ିଆ ପୁରାଣକାରମାନେ ସାଧାରଣତଃ ନିମ୍ନୋକ୍ତ କେତୋଟି ବିଷୟ ପ୍ରତି ଅବହିତ ଥିଲେ । ଯଥା—

(କ) ମୂଳର ଆକ୍ଷରିକ ଅନୁବାଦ ।

(ଖ) ମୂଳ ବିଷୟବସ୍ତୁ ବା ଶ୍ଳୋକଗୁଡ଼ିକ ଯେଉଁ ଭାବପ୍ରକାଶ କରିଥାନ୍ତି ତା'ର ସଂକ୍ଷିପ୍ତ ରୂପ ଆହରଣ ଓ ଉପସ୍ଥାପନ ।

(ଗ) ମୂଳ ବିଷୟବସ୍ତୁ ବା ଶ୍ଳୋକର ପରିତ୍ୟାଗ ।

(ଘ) ମୂଳ ବିଷୟବସ୍ତୁ ବା ଶ୍ଳୋକର ଆଂଶିକ ଗ୍ରହଣ ଓ ସ୍ଥଳବିଶେଷରେ ତା'ର ନବୀକରଣ ।

(ଙ) ପୁରାଣାନ୍ତର ବିଷୟବସ୍ତୁର ଆହରଣ ।

(ଚ) ସମ୍ପୂର୍ଣ୍ଣ କଳ୍ପନା-ପ୍ରସୂତ ନୂତନ ଉପାଦାନର ପ୍ରବର୍ତ୍ତନ ।

ଉପରୋକ୍ତ ଛ'ଟି ଲକ୍ଷଣ ମଧ୍ୟରୁ ଶେଷ ତିନୋଟି ଆମର ଆଲୋଚ୍ୟ ସବୁଗୁଡ଼ିକ ପୁରାଣରେ ପ୍ରତିଫଳିତ । ସାରଳା ମହାଭାରତର ସର୍ବଶ୍ରେଷ୍ଠ ଲକ୍ଷ୍ୟଣୀୟ ବିଷୟ ହେଉଛି 'ଙ' ଓ 'ଚ' ଲକ୍ଷଣ । ଏ ଉଭୟ ବିଷୟର ବ୍ୟାପକ

ଅନୁସରଣ ତଥା ମୂଳ ବିଷୟର ନବୀକରଣ ('ଘ' ଲକ୍ଷଣ) ଏପରି ଏକ ସୀମାରେ ଉପନୀତ ହୋଇଛି ଯେ ମୂଳ ମହାଭାରତ ସହିତ ଓଡ଼ିଆ ମହାଭାରତର ବିଶେଷ କୌଣସି ସମ୍ପର୍କ ଥିବାର ଅନୁଭୂତ ହୁଏ ନାହିଁ । ସାରଳା ଦାସଙ୍କର ଏଇ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ନିମନ୍ତେ ଓଡ଼ିଆ ମହାଭାରତ ଏକ ସମ୍ପୂର୍ଣ୍ଣ ନବୀନ ସ୍ୱତନ୍ତ୍ର ସୃଷ୍ଟି ରୂପେ ଉଦ୍ଭାସିତ ହୋଇ ଉଠିଛି । ରାମାୟଣରେ, କିନ୍ତୁ, କବିଙ୍କର ଏପରି ସୃଷ୍ଟି-କଳ୍ପନା ସ୍ୱାଧୀନତା ବହୁ-ପରିମାଣରେ ସଙ୍କୁଚିତ ତଥା ନିୟନ୍ତ୍ରିତ । ମହାଭାରତରେ ଥିବା କାଳ୍ପନିକ ଗଳ୍ପ ସୃଷ୍ଟିର ବ୍ୟାପକତା ଓ ବହୁକ୍ଷେତ୍ରରେ ଅବାସ୍ତବତା ପରିହାରପୂର୍ବକ ମୂଳଗଳ୍ପର ଅନୁସରଣରେ ଆନ୍ତରିକତା ତଥା ବିଷୟବସ୍ତୁର ବାସ୍ତବତା ପ୍ରତି ଅଧିକ ଧ୍ୟାନ ଦେବାର ଆଭାସ ରାମାୟଣରେ ଉପଲବ୍ଧ ହୋଇଥାଏ । ଫଳରେ ସଂସ୍କୃତ ରାମାୟଣର ଶ୍ଳୋକଗତ ଅନୁବାଦ ଅପେକ୍ଷା ବହୁ ଶ୍ଳୋକରେ ଥିବା ଭାବରାଶିର ସଂକ୍ଷିପ୍ତୀକରଣ ଅଥବା ମୂଳ ଭାବଧାରାର ସାରାଂଶ ଓଡ଼ିଆ ରାମାୟଣରେ ଉପସ୍ଥାପିତ ହୋଇଅଛି । ଅନୁସରଣର ଏ ପ୍ରକ୍ରିୟାଟି ହରିବଂଶ ଓ ନୃସିଂହ ପୁରାଣରେ ଅଧିକ ଦେଖିବାକୁ ମିଳେ । ମୂଳର ବିନ୍ୟାସ ଉପସ୍ଥାପନ ବେଳେ ତାକୁ ଅଧିକ ମନୋଜ୍ଞ ଓ ଆକର୍ଷଣୀୟ କରିବାପାଇଁ ଅଧିକ ମୌଳିକ ନୂତନ ଉପାଦାନ କେବଳ ଏଥିରେ ଆହରଣ କରାଯାଇଛି । ଫଳରେ ମୂଳ ଶ୍ଳୋକରୁ ବ୍ୟତିକ୍ରମ ଥିଲେ ହେଁ କେଉଁଠି ମୂଳ ଲକ୍ଷ୍ୟର ବ୍ୟତିକ୍ରମ କରାଯାଇ ନାହିଁ । ଏପରି ନୂତନ ସୃଷ୍ଟି ପରିପ୍ରେକ୍ଷୀରେ ଅନୁକରଣଧର୍ମୀ ସ୍ୱାଧୀନତାର ଅନ୍ୟ ଏକ ବିଶିଷ୍ଟ ପ୍ରକୃତି ରୂପେ ଗୃହୀତ ହୋଇଥାଏ ।

ଧର୍ମଭାବ ପ୍ରଚାର କରିବା ରାମାୟଣ, ହରିବଂଶ, ନୃସିଂହ ପୁରାଣର ଲକ୍ଷ୍ୟ ହେଲେ ହେଁ ରାମାୟଣରେ କୌଣସି ଦାର୍ଶନିକ ଚିନ୍ତାଧାରା ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ନାହିଁ । ଦାର୍ଶନିକ ଚିନ୍ତାଧାରାର ପ୍ରଥମ ଆତ୍ମପ୍ରକାଶ ହୁଏ ହରିବଂଶରେ ଓ ଏହାଦ୍ୱାରା ଗତାନୁଗତିକ ପୌରାଣିକ ତତ୍ତ୍ୱଗୁଡ଼ିକ ଏକ ନୂତନ ବର୍ଣ୍ଣବିଭାରେ ଉଦ୍ଭାସିତ ହୋଇ ଉଠିଛନ୍ତି । ଏ ପ୍ରକ୍ରିୟାର ଅଧିକ ପ୍ରୟୋଗ ନୃସିଂହ ପୁରାଣରେ ଥିବାରୁ ଏ ପୁରାଣର କଥାଭାଗଟି ମହାଭାରତ-ହରିବଂଶ ଅନୁସରଣ କରିଥିଲେ ସୁଦ୍ଧା ଏହାର ଦାର୍ଶନିକ ଓ ତାତ୍ତ୍ୱିକ ଆଲୋଚନା ଓଡ଼ିଆ ଭାଗବତ-ପ୍ରଭାବରୁ ଅଭ୍ୟୁତ୍ଥିତ ବୋଲି ଅନୁଭୂତ ହୁଏ ।

ମୂଳ କଥାଭାଗର ସାରାଂଶ ଉପରେ ପ୍ରାଧାନ୍ୟ ଦେବା ଏହି ଛଅଗୋଟି ପୁରାଣର ଯେପରି ଏକ ବୈଶିଷ୍ଟ୍ୟ, ମୂଳ ଶ୍ଳୋକଗୁଡ଼ିକରେ ଥିବା ଭାବର ନିର୍ଯ୍ୟାସ ପ୍ରଦାନ କରିବା ହେଉଛି ଓଡ଼ିଆ ଭାଗବତର ସେହିପରି ଅନ୍ୟତମ ଗୌରବ। ମହାଭାରତ ପ୍ରଭୃତି ଛଗୋଟି ପୁରାଣ ଅଧ୍ୟୟନ କଲାବେଳେ ସେଥିପାଇଁ ମୂଳଶ୍ଳୋକର ଆକ୍ଷରିକ ଅନୁବାଦ ବା ଅନୁସରଣ କେଉଁଠି କିପରି ହୋଇଛି ସେଥିପ୍ରତି ଆମେ ବିଶେଷ ସଚେତନ ହେଉନାହୁଁ। ଅପର ପକ୍ଷରେ ଭାଗବତର ଚରମ ବୈଶିଷ୍ଟ୍ୟ ଏହାରି ଉପରେ ନିର୍ଭର କରିଥିବାରୁ ଏ ପୁରାଣର ଅନୁଶୀଳନ ବେଳେ ମୂଳଶ୍ଳୋକଗୁଡ଼ିକର ପରିଶୀଳନ ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼େ। ଦେଖିବାର କଥା, ଆମର ପୂର୍ବୋକ୍ତ ଛଅଟି ବୈଶିଷ୍ଟ୍ୟ ମଧ୍ୟରୁ ପ୍ରଥମ ଛଗୋଟି ଓଡ଼ିଆ ଭାଗବତରେ ଅନୁସୃତ ହୋଇଅଛି।

ସଂସ୍କୃତ ଭାଗବତର ବିପୁଳକାୟ ବିଷୟବସ୍ତୁକୁ କୌଣସି ଦେଶ-ଭାଷାରେ ଆକ୍ଷରିକ ଅନୁବାଦ କରିଦେଲେ ସେପରି ଅନୁବାଦର ଆକାର ବୃଦ୍ଧି ସଙ୍ଗେ ସଙ୍ଗେ ତାହା ଲୋକପ୍ରିୟ ନ ହେବାର ଆଶଙ୍କା ଯଥେଷ୍ଟ ଥିବାରୁ ମନେ ହୁଏ ଭକ୍ତକବି ଜଗନ୍ନାଥ ଦାସ ସେପରି ଅନୁବାଦ କରିବାକୁ ଆଗ୍ରହ ପ୍ରକାଶ କରି ନାହାନ୍ତି। ଫଳରେ, କେତେକ ସ୍ଥଳରେ ମୂଳ ଶ୍ଳୋକର ଆକ୍ଷରିକ ଅନୁବାଦ କରିବା ସଙ୍ଗେ ସଙ୍ଗେ ବହୁଶ୍ଳୋକରେ ଥିବା ଭାବର ନିର୍ଯ୍ୟାସ-ପ୍ରଦାନ ଉପରେ ସେ ପ୍ରାଧାନ୍ୟ ଦେଇଛନ୍ତି। ଏଥିପାଇଁ ମୂଳଭାବକୁ ପରିପୁଷ୍ଟ କରିବା ପାଇଁ ନିଜର ରୁଚି ଓ ଧାରଣା ଅନୁସାରେ ଅଧିକ ବିଷୟ ସେଥିରେ ସଂଯୋଜନ କରି ଦେଇଛନ୍ତି। ଏହାଦ୍ୱାରା ନିଜର ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ପ୍ରତିଷ୍ଠା ସହିତ ଗୋଟିଏ ଅନୁବାଦ ଗ୍ରନ୍ଥକୁ ସମ୍ପୂର୍ଣ୍ଣ ଏକ ମୌଳିକ ଗ୍ରନ୍ଥରୂପେ ଉପସ୍ଥାପନା କରିବାକୁ ସେ ସମର୍ଥ ହୋଇଛନ୍ତି।

ଓଡ଼ିଆ ଭାଗବତ ମୂଳ ସଂସ୍କୃତ ଭାଗବତର ଅନୁବାଦ ହେଲେ ହେଁ ତାହା କିପରି ବିଭିନ୍ନ ବ୍ୟତିକ୍ରମ ଭିତରେ ବିକାଶଲାଭ କରିଛି ଓ ଏପରି ଅନୁବାଦଦ୍ୱାରା ଓଡ଼ିଆର ଅନ୍ୟାନ୍ୟ ପୁରାଣଠାରୁ ଏହା କିପରି ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ହୋଇପାରିଛି, ଏ ଉଭୟଙ୍କର ସମ୍ୟକ୍ ଉପଲବ୍ଧି ପାଇଁ ଏକ ସ୍ୱତନ୍ତ୍ର ଆଲୋଚନା ଏକାନ୍ତ ଆବଶ୍ୟକ। ଭାଗବତର

ସାହିତ୍ୟକୁ ଅବଦାନ ଉପସ୍ଥାପନା କରିବା ଆମର ଲକ୍ଷ୍ୟ ଥିବାରୁ ଆମେ ଏ ବିଷୟରୁ କ୍ଷାନ୍ତ ହେଲୁଁ ।

ଆଜକୁ ପ୍ରାୟ ୭୮ ବର୍ଷ ପୂର୍ବେ ଗବେଷକ ଶ୍ରୀ ମନମୋହନ ଚକ୍ରବର୍ତ୍ତୀ ତାଙ୍କର ଗୋଟିଏ ଦୀର୍ଘ ଇଂରାଜୀ ପ୍ରବନ୍ଧରେ ଓଡ଼ିଆ ଧର୍ମ ସାହିତ୍ୟର ଭୂମିକା ଉପରେ ଯାହା ସର୍ବପ୍ରଥମେ ଆଲୋକପାତ କରିଥିଲେ- ତାଙ୍କର କିଛି ଅଂଶ ଦେଖନ୍ତୁ । ସେଥିରେ ସେ ଲେଖିଥିଲେ —

"Generally speaking, these poems are not literal translations but summaries and free adoptations of the Sanskrit original. The verses are usually simple and unornamented, the details are lengthy and tedious. Though they contain occasional passages of good descriptions and fine sentiments, they cannot be ranked high as literary compositions. Their importance lies firstly in the fact they have supplied the bulk of religious and mythological informations to a strongly religious people from generation to generation. Secondly, they form important landmarks in the development of Oriya literature. Before their time the Oriya was a rude uncouth dialect, poor in ideas, poor in word. These religious authors nursed it, imported words into it or coined words for it, and gave it some polish. They showed that the Oriya language could be made fit for expressing complex thoughts and abstract feelings, and by their own imperfect effort made it capable of being utilised in various kinds of versifications. They prepared in fact the way for the later Oriya poets Dinakrisna Das, Upendra Bhahja and Abhimanyu Samantasinhar. Any sketch, therefore, of the progress of the Oriya intellect would be materially incomplete if it fails

to give some accounts of these old religious poems"

ଏଇଂଅଭିମତର କେତେକାଂଶରେ ଥିବା ଦୋଷଦୁର୍ବଳତା ଧରି ପାରିବା ଅସମ୍ଭବ ନୁହେଁ, ହେଲେ ହେଁ ଏହାର ସାମଗ୍ରିକ ସାରବତ୍ତା ଏକାନ୍ତ ଶ୍ରଦ୍ଧାର ସହ ସ୍ୱୀକାର କରାଯାଇପାରେ । କାରଣ, ଓଡ଼ିଆରେ ଲିଖିତ ସମସ୍ତ ଧର୍ମ-ସାହିତ୍ୟକୁ ବିଚାରକୁ ନେଲେ ଏ ଉକ୍ତିର ଦୁର୍ବଳତା ସ୍ୱତଃ ପ୍ରମାଣିତ ହୋଇଥାଏ । ଅନ୍ତତଃ ଏ ଉକ୍ତିର ପ୍ରଥମ ଭାଗ ଓଡ଼ିଆ ଭାଗବତ ପ୍ରତି ଆଦୌ ପ୍ରଯୁଜ୍ୟ ନୁହେଁ, କିନ୍ତୁ ଚକ୍ରବର୍ତ୍ତୀ ମହାଶୟଙ୍କର ସୁଦୂରପ୍ରସାରୀ ଦୃଷ୍ଟି, ଗଭୀର ଅନୁଧ୍ୟାନ ଓ ଅନୁଶୀଳନ ସହିତ ପରିପକ୍ୱ ବିଚାର-ବୋଧର ପରିଚୟ ଏଥିରୁ ଯେପରି ମିଳିଥାଏ, ତାହା ତତ୍କାଳୀନ କୌଣସି ଓଡ଼ିଆ ସମାଲୋଚକଙ୍କର ଥିଲା ବୋଲି ମନେ ହୁଏ ନାହିଁ । ଓଡ଼ିଆ ଧର୍ମ-ସାହିତ୍ୟ, ବିଶେଷତଃ ପୁରାଣ-ସାହିତ୍ୟ ସଂସ୍କୃତର ଆକ୍ଷରିକ ଅନୁବାଦ ନୁହେଁ, ତାହା ମୂଳର ସାରାଂଶ କିମ୍ବା ତାହାର ସ୍ୱାଧୀନ ଅନୁସରଣ ମାତ୍ର; ତା'ର ପଦଗୁଡ଼ିକ ସରଳ ଅଳଙ୍କାରହୀନ ଓ ବହୁସ୍ଥଳରେ କବିତ୍ୱ ଗୁଣ ବିବର୍ଜିତ—କେବଳ ଭାଗବତ ବ୍ୟତୀତ ଏ ଅଭିମତ ଅନ୍ୟ ସମସ୍ତଙ୍କ ପ୍ରତି ଏକାନ୍ତ ସତ୍ୟ । ଆଲୋଚକଙ୍କର ଶେଷ ମନ୍ତବ୍ୟଟି ଅତିଶୟ ତାତ୍ପର୍ଯ୍ୟପୂର୍ଣ୍ଣ । ଧର୍ମଗ୍ରନ୍ଥ ଏ ଦେଶର ଜନତାକୁ ପୌରାଣିକ ଉପାଖ୍ୟାନ ପରିବେଷଣ କରିବା ଓ ଓଡ଼ିଆ ପରି ଏକ ଦୁର୍ବଳ ଭାଷାକୁ ବହୁ ଦିଗରୁ ଉନ୍ନତ କରି ପରବର୍ତ୍ତୀ କବିମାନଙ୍କ ଶୁଭାବିର୍ଭାବ ପାଇଁ ଏକ ଉପଯୁକ୍ତ ନିର୍ଭରଯୋଗ୍ୟ ମାର୍ଗ ପ୍ରସ୍ତୁତ କରିଦେବା—ଓଡ଼ିଆ ପୁରାଣ-ସାହିତ୍ୟର ଏପରି ମହନୀୟ ଅବଦାନ ଉପରେ ଆଜି କେହି ଏପରି ଦମ୍ଭର ସହିତ ବିଚାର ଓ ବିଶ୍ଲେଷଣ କରିଥିବାର ଆମ ଦୃଷ୍ଟିକି ଆସି ନାହିଁ । ଚକ୍ରବର୍ତ୍ତୀ ମହାଶୟଙ୍କ ଉକ୍ତିର ସାରବତ୍ତା ଉପଲବ୍ଧି ପାଇଁ ଆମେ ଆମ ଦୃଷ୍ଟିକୋଣରୁ ଓଡ଼ିଆ ଭାଗବତର ସାହିତ୍ୟିକ ଅବଦାନ ଅବଧାରଣ କରୁଛୁ ।

ପାଦର ଅକ୍ଷର ଅସମାନତା ବା ଅସ୍ଥିର ରୂପ ହେଉଛି ଅକ୍ଷର-ପ୍ରଧାନ ଓଡ଼ିଆ କବିତାର ଆଦ୍ୟ ଛନ୍ଦ । ଏ ଛନ୍ଦ ଦାଣ୍ଡିବୃତ୍ତ ନାମରେ ସର୍ବଜନ ପରିଚିତ । ଓଡ଼ିଆ ଛନ୍ଦର ବିକାଶ ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଅସମ-ଅକ୍ଷର-ସମନ୍ୱିତ ପାଦର ପ୍ରବର୍ତ୍ତନ ବୋଧହୁଏ ସଂସ୍କୃତ

ଛନ୍ଦର ବୈଷ୍ୟିକ କୌଣସି ନିର୍ଦ୍ଦିଷ୍ଟ ରୂପରେ ରୂପାୟିତ କରିପାରିବାର ଅକ୍ଷମତା ହେତୁ ସମ୍ଭବପର ହୋଇଥିଲା । ସଂସ୍କୃତ ଅକ୍ଷରବୃତ୍ତ ଛନ୍ଦରେ ଅକ୍ଷର-ସଂଖ୍ୟା ଗଣନାର ଗୁରୁତ୍ୱ ଥିଲେ ହେଁ ସେଥିରେ 'ଗଣ' ଓ 'ମାତ୍ରା'-ଗଣନାର ପ୍ରାଧାନ୍ୟ କମ୍ ନଥିଲା । ପୁନଶ୍ଚ, ମାତ୍ରାବୃତ୍ତ ଛନ୍ଦ ମାତ୍ରାନିୟମରେ ପୂର୍ଣ୍ଣତଃ ନିୟନ୍ତ୍ରିତ । ଓଡ଼ିଆ କବିତା ସଂସ୍କୃତର "ଗଣ' ଓ 'ମାତ୍ରା'-ନିୟମକୁ ପରିହାର କରିଦେଲେ ଆଉ କେଉଁ ରୂପରେ ତାହା ବିକାଶ ଲାଭ କରିବ, ଏପରି ଏକ ପ୍ରାଧାନ ବିଷୟ ସ୍ଥିର କରିବା, ବୋଧହୁଏ ଆଦିଯୁଗରେ କବିମାନଙ୍କ ସମ୍ମୁଖରେ ଏକ ସମସ୍ୟାରୂପେ ଦେଖା ଦେଇଥିଲା ।

ଅକ୍ଷର-ପ୍ରଧାନ ଛନ୍ଦରେ ପାଦର ଅକ୍ଷର ଅସମାନତା ପ୍ରବର୍ତ୍ତିତ ହୋଇ ଯେକୌଣସି ପ୍ରକାରରେ ଭାବ ଅଭିବ୍ୟକ୍ତିଦ୍ୱାରା ସେହି ସମସ୍ୟାର ସମାଧାନ କରାଯାଇଥିଲା । ପୁନଶ୍ଚ, ପଲ୍ଲୀ-ସାହିତ୍ୟର ତତ୍ତ୍ୱମାନ, କେତେକ ପ୍ରବଚନ ଓ ଗୀତ ଏଇ ଅକ୍ଷର-ଅସମାନତା ଗୁଣକୁ ଆଶ୍ରୟ କରି ଗଢ଼ି ଉଠିଥିବାରୁ ସେଇ ସ୍ତରରେ ଓଡ଼ିଆ କବିତାର ରୂପ ପ୍ରକାଶ ପାଇବା ଲେଖକମାନଙ୍କୁ ଆଦୌ ଅସ୍ୱାଭାବିକ କିମ୍ବା ବିସଦୃଶ ବୋଧ ହୋଇ ନଥିଲା । ସର୍ବୋପରି ଶ୍ରୋତାଚିତ୍ତରେ ଏ ଛନ୍ଦ କୌଣସି ଶ୍ରୁତି କଟୁ କର ମଧ୍ୟ ହୋଇ ନଥିଲା । ଜଣେ ପଢ଼ିଲେ ଅନ୍ୟ ସମସ୍ତେ ଶୁଣିବେ — ଏହାହିଁ ଯେଉଁ ପୁରାଣର ଥିଲା ପ୍ରଧାନ ଲକ୍ଷ୍ୟ, ସେ ପୁରାଣର ଛନ୍ଦରେ ପାଦର ଅସମାନତା ଶ୍ରୋତାର ଭାବଗ୍ରହଣ ପାଇଁ କୌଣସି ପ୍ରତିବନ୍ଧକ ସୃଷ୍ଟି କରୁ ନଥିଲା । ଏପରି କବିତାରେ ଦୁଇଟି ପାଦର ମେଳ ମଧ୍ୟ ଥିଲା ସମ୍ପୂର୍ଣ୍ଣ ଅପ୍ରଧାନ । ପଦଗୁଡ଼ିକ ପଢ଼ିବାର ଭଙ୍ଗୀ ଏପରି ସ୍ୱାଧୀନ ଓ ସ୍ୱତନ୍ତ୍ର ଥିଲା ଯେ କବିତାର ବିରତି ଶ୍ରୋତା ଅପେକ୍ଷା ପୁରାଣ ପଣ୍ଡାର ଇଚ୍ଛା ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା । ଶୀଘ୍ର ପଢ଼ିବା କିମ୍ବା ରହି ରହି ବିରାମ ଦେଇ ପଢ଼ିବା—କବିତାର କେଉଁ ଅଂଶକୁ କିପରି ପଢ଼ିଲେ ଶ୍ରୋତା ମନରେ ଉତ୍ସାହ, ଚମତ୍କାରଭାବ ଓ ଔତ୍ସୁକ୍ୟ ଜାତହେବ ସମୁଦାୟ ବର୍ଣ୍ଣିତ ବିଷୟବସ୍ତୁକୁ ହୃଦୟଙ୍ଗମ କରାଯାଇବ, ତାହା ପୁରାଣ-ପଣ୍ଡାର ବିଚାର-ବୁଦ୍ଧି ଉପରେ ନିର୍ଭର କରୁଥିଲା । ଯାତ୍ରି ବୃତ୍ତରେ ବିରତିର ଏ ଅଖଣ୍ଡ ସ୍ୱାଧୀନତା ଥିବାରୁ ପାଦର ଅକ୍ଷର-ଅସମାନତା ଦୋଷାବହ ବୋଲି ବିବେଚିତ ହେବାର ଆବଶ୍ୟକତା ନଥିଲା ।

ମାତ୍ରା-ଅକ୍ଷର-ବିରତି-ନିୟମ-ବହିର୍ଭୂତ ଦାଣ୍ଡିବୃତ୍ତର ସମସ୍ତ ଗୌରବ ସତ୍ତ୍ୱେ କୌଣସି ରସାତ୍ମକ ଓଡ଼ିଆ କାବ୍ୟରେ ଏ ଛନ୍ଦର ପ୍ରଚଳନ ଦେଖିବାକୁ ମିଳେନାହିଁ । ଛନ୍ଦ-ନିୟମର ଶିଥିଳତା ଏହାର ପ୍ରଧାନ କାରଣ ରୂପେ ଗ୍ରହଣ କରାଯାଇପାରେ । ଉନ୍ନତ ସୃଷ୍ଟିର ପରିପ୍ରକାଶ ଉନ୍ନତ ଛନ୍ଦ-ବୋଧ ଉପରେ ନିର୍ଭର କରେ । ନିୟମ-ନିୟନ୍ତ୍ରିତ ଛନ୍ଦ ମାଧ୍ୟମରେ ବିକଶିତ କବିତାର ଆତ୍ମିକ ରସ-ସମ୍ପଦ ଉନ୍ନତ ରସବୋଧ-ସମ୍ପନ୍ନ 'ରସିକ ଚିତ୍ତର ଅନୁକୂଳ ହୋଇଥାଏ । ନିରକ୍ଷର ଜନତା ନିକଟରେ ଛନ୍ଦର ଏ ମୂଲ୍ୟ-ବୋଧ ସମ୍ପୂର୍ଣ୍ଣ ଅନାବଶ୍ୟକ । ଯୁଗ ଯୁଗ ଧରି କବିତାର ଛନ୍ଦ ପରି ଯେଉଁ ବିଭାଗ ଉପରେ କେହି ଦୃଷ୍ଟି ଦେଉ ନଥିଲେ ଭାଗବତକାର ଜଗନ୍ନାଥ ଦାସ ସେଇ ଛନ୍ଦ ବିଭାଗର ପୁନର୍ଗଠନ ଦିଗରେ ନେତୃତ୍ୱ ନେଇ ତାଂ'ର ରୂପନିୟନ୍ତ୍ରଣର ଆବଶ୍ୟକତା ଉପରେ କଠୋର ଅନୁଶାସନ ପ୍ରବର୍ତ୍ତନ କଲେ । ଓଡ଼ିଆ ନବାକ୍ଷରୀ ଛନ୍ଦର ଅକ୍ଷର-ସମତା ତଥା କ୍ରମିକତାର ଅନୁବର୍ତ୍ତନ ସେଇ ଛନ୍ଦ-ସଙ୍ଗଠନ ମନୋବୃତ୍ତିର ବହିର୍ବିକାଶ ମାତ୍ର ।

ନଅ ଅକ୍ଷର ବିଶିଷ୍ଟ ନବାକ୍ଷରୀ ବା ଭାଗବତବାଣୀ ୫-୮-୪ ଯତିପାତ ବା ବିରତି-ନିୟମରେ ସାଧାରଣତଃ ନିୟନ୍ତ୍ରିତ ହେଲେ ହେଁ ଏଥିରେ ଦାଣ୍ଡିବୃତ୍ତର ସ୍ୱେଚ୍ଛାକୃତ ବିରତି ମଧ୍ୟ ଭିନ୍ନ ଭିନ୍ନ ରୂପରେ ଆତ୍ମପ୍ରକାଶ କରିବାରେ ଅସୁବିଧା କରୁ ନାହିଁ । ଏହାଦ୍ୱାରା ଦାଣ୍ଡିବୃତ୍ତର ବିରତି-ସ୍ୱାଧୀନତା ସଂରକ୍ଷିତ ହେବା ସଙ୍ଗେ ସଙ୍ଗେ କାବ୍ୟଗତ ଉନ୍ନତ ଛନ୍ଦବୋଧ ପରିପୁଷ୍ଟକ ନିର୍ଦ୍ଦିଷ୍ଟ ଅକ୍ଷର-ନିୟମ ମଧ୍ୟ ସହଜରେ ଅନୁସୃତ ହୋଇପାରିଛି । ଏ ବିରତି ପାଠକର ସ୍ୱାଧୀନତା ଉପରେ ନିର୍ଭର କରୁଥିବାରୁ ପ୍ରତ୍ୟେକ ପାଦର ଉଚ୍ଚାରଣଗତ ସ୍ୱରୂପ ଭିନ୍ନ ଭିନ୍ନ ହୋଇ ପଡ଼ିବା ଏକାନ୍ତ ସ୍ୱାଭାବିକ । ଉଚ୍ଚାରଣଗତ ଏଇ ଭିନ୍ନତା ହିଁ ଅକ୍ଷର-ବିରତି-ନିୟମ-ନିୟନ୍ତ୍ରିତ ଛନ୍ଦର ଚିତ୍ତାନୁରଞ୍ଜକ ସ୍ୱର-ମାଧୁର୍ଯ୍ୟରେ ପରିବର୍ତ୍ତନ ଆଣି ଶ୍ରୋତାର କର୍ଣ୍ଣକୁ କ୍ଷଣପଦରେ ନୂତନ ନୂତନ ସ୍ୱର-ବୈଭବର ଅପୂର୍ବ ମାଦକତା ପରିବେଷଣ କରିଥାଏ । ଗୋଟିଏ ଉଦାହରଣ ଦେଇ ଆମର ବକ୍ତବ୍ୟକୁ ବୁଝାଇ ଦେଉଛୁ । ବିରତି ସୂଚାଇବା ପାଇଁ ପଙ୍କ୍ତି ମଧ୍ୟରେ ଆମେ ଗୋଟିଏ ଗୋଟିଏ ରେଖା ଟାଣି ଦେଉଛୁ ।

ଏ ଘୃତ । ବତର । ମହିମା । କେ କହି । ପାରେ । ଗୁଣସୀମା ।।
ସକଳ ଦେବ । ହୋଇ ବୃକ୍ଷେ । ଫଳ ଫଳିଲେ ଅନ୍ତରିକ୍ଷେ ।।
କେତେ ହେଁ ଧନେ । ପାତ ତଳେ । ବୃକ୍ଷୁଁ ପଡ଼ିଲେ । ବାୟୁବଳେ ।।
ଶୁକ ଧାଇଁଲେ । ତାହା ଦେଖି । ପକ୍ଷୀଙ୍କ । ସଙ୍ଗତ । ଉପେକ୍ଷି ।।
ଚୋଷେ । ଅଧର । ପାନକଲେ । ଭିତରେ । ସୁରଙ୍ଗ । ଦେଖିଲେ ।।
ତହୁଁ ଗଳିଲା । ରସସାର । କ ଅବା ଦେବା । ପଟାନ୍ତର ।।
ଅମୃତାନନ୍ଦେ । ସ୍ୱାଦୁଗୁଣେ । ସୁଜନେ । ପିଅ । ଅନୁକ୍ଷଣେ ।।
ଆନନ୍ଦେ । କର । ସୁଧାପାନ । ଯେଣୁ । ପାଇବ । ଦିବ୍ୟଜ୍ଞାନ ।।
ଏ ଘୃତ । ରସ । କର ମୂଳ । ନିଗମ ବନ । ବୃକ୍ଷଫଳ ।।
ପ୍ରିୟ ଜୀବନ । ଅନ୍ତଯାଏ । ତେବେ ତରିବ । ମାୟାମୋହେ ।।
ଏବେ ହେ । ଶୁଣ । ସାଧୁଜନେ । ହରି ଚରିତ । ଶୁଦ୍ଧମନେ ।।

ଶୁଦ୍ଧପୂତ ଚିତ୍ତରେ ଯେଉଁ ହରିଚରିତ ଶୁଣିବା ପାଇଁ ଏଠାରେ ସାଧୁଜନମାନଙ୍କୁ ଅନୁରୋଧ କରାଯାଇଛି ମାୟାମୋହ ତ୍ୟାଗ ମାଧ୍ୟମରେ ଦିବ୍ୟଜ୍ଞାନ ଲାଭ ହେଉଛି ସେଇ ଚରିତ-ଶ୍ରବଣର ଅନ୍ତିମ ପରିଣତି । ପୁନଶ୍ଚ, ଯେଉଁ ଆତ୍ମତନ୍ମୟତାରେ ସେଇ ଚରିତ-ଶ୍ରବଣ କରାଯାଏ, ସେ ଆତ୍ମ-ତନ୍ମୟତା ସମ୍ପାଦନ ଦିଗରେ କବିତାର ଏଇ ନବାକ୍ଷରୀ ଛନ୍ଦ ଅଧିକ ଉପଯୋଗୀ ବୋଲି ଅନୁଭୂତ ହୁଏ । ଏଇ-ଛନ୍ଦର ସ୍ୱରୂପ ବର୍ତ୍ତମାନ ଅବଧାରଣ କରନ୍ତୁ । ଏହାର ପ୍ରତ୍ୟେକପାଦ ପାଠକ ଇଚ୍ଛାକଲେ କେଉଁଠି ବିରାମ ନ ଦେଇ ମଧ୍ୟ ପଢ଼ିପାରେ; ହେଲେ ହେଁ ୫ + ୪ ଅକ୍ଷର ଉପରେ ବିରାମ ନେବା ଏହାର ଏକ ସାଧାରଣ ପ୍ରକୃତି, କିନ୍ତୁ ପାଠକ ଇଚ୍ଛା କଲେ ଏ ପ୍ରତ୍ୟେକ ପଦକୁ ନିଜ ସୁବିଧା ଅନୁସାରେ ୩ + ୨ ଏବଂ ୨ + ୩ ଏବଂ ୬ + ୨ ରେ ଭାଙ୍ଗିଦେଇ ଅର୍ଥାତ୍ ଏଇ ସ୍ଥଳମାନଙ୍କରେ ବିରାମ ଦେଇ ପଢ଼ିପାରେ । କାରଣ ଏଇପରି କ୍ଷୁଦ୍ର କ୍ଷୁଦ୍ର ବିରାମ ଦ୍ୱାରା ଛନ୍ଦର ଗତିକୁ ମନ୍ଥର କରି କବିତାର ଭାବ ଭିତରେ ଶ୍ରୋତା ଓ ପାଠକ ଆତ୍ମତନ୍ମୟ ହେବା ପାଇଁ ସୁବିଧା ପାଏ । ଯେଉଁଠି ଶବ୍ଦଗୁଡ଼ିକ ତିନୋଟି ଅକ୍ଷରରେ ଗଠିତ, ଯଥା—'ପକ୍ଷୀଙ୍କ ସଙ୍ଗତ ଉପେକ୍ଷି' କିମ୍ବା 'ଭିତରେ ସୁରଙ୍ଗ ଦେଖିଲେ'—ସେଠାରେ ତିନି ତିନି ଅକ୍ଷର ଉପରେ ଯତିପାତ ଅତ୍ୟନ୍ତ ଶ୍ରୁତିସୁଖକର ବୋଧହୁଏ । ଆମେ ଉପରେ ଯେଉଁ ସ୍ୱର ପ୍ରକାର ବିରାମ-ଜନିତ ପଠନ-ରୀତିର ଉଲ୍ଲେଖ କଲୁଁ, ତାହା ବ୍ୟକ୍ତିଗତ ପାଠକ ନିଜ ଇଚ୍ଛା

ଅନୁସାରେ ଏହି ନଅଅକ୍ଷରକୁ ଭାଙ୍ଗି ଅନ୍ୟଭାବରେ ବୋଲିଲେ ଶ୍ରୁତି ଦୁଷ୍ଟ ନାହିଁ। ପ୍ରତ୍ୟେକ ଶବ୍ଦର ଅକ୍ଷର ସଂଖ୍ୟା ଓ ପାଦରେ ତା'ର ଅବସ୍ଥାନ ବସ୍ତୁତରେ ପ୍ରତ୍ୟେକ ପଠନ-ଭାବ ନିର୍ଭର କରୁଥିବାରୁ ପ୍ରତ୍ୟେକ ପାଦ ଭିନ୍ନ ଭିନ୍ନ ଭାବରେ ବୋଲି ଯାଇପାରେ ଓ ଏହିପରି ଭିନ୍ନଭିନ୍ନ ପଠନଭାବ ଦ୍ୱାରା ଭିନ୍ନଭିନ୍ନ ସ୍ୱର-ଲହରୀର ଆବର୍ତ୍ତ ସମ୍ଭବପର ହୁଏ । ଫଳରେ ଅକ୍ଷର ନିୟମ-ନିବଦ୍ଧ ଏହି ଛନ୍ଦରେ ଯେଉଁ ବିଚିତ୍ର ଧ୍ୱନି-ସୌନ୍ଦର୍ଯ୍ୟ ଆବର୍ତ୍ତ ଲାଭ କରେ ତାହା ଶ୍ରୋତା-ମନକୁ ଅତି ଗଭୀର ଭାବେ ଆକର୍ଷଣ କରିଥାଏ । ନବାକ୍ଷରୀ ଛନ୍ଦର ଏ ଧ୍ୱନି-ସୌନ୍ଦର୍ଯ୍ୟ ଅନ୍ୟ କୌଣସି ସମବୃତ୍ତ ଛନ୍ଦରେ ଅଛି ବୋଲି ମନେହୁଏ ନାହିଁ ।

ଭାଗବତର ଅନୁବାଦକ ଭକ୍ତକବି ଜଗନ୍ନାଥ ଦାସ ସଂସ୍କୃତ କାବ୍ୟ-ପୁରାଣ-ଶାସ୍ତ୍ରରେ ଥିଲେ ଜଣେ ଅସାଧାରଣ ପଣ୍ଡିତ । ତାଙ୍କର ଶାସ୍ତ୍ର-ପାରଦର୍ଶିତା ଭାଗବତର ହୃଦୟସ୍ପର୍ଶୀ ଅନୁବାଦ ଭିତରେ ଆମେ ସହଜ ଦେଖିବାକୁ ପାଇଥାଉଁ । କାବ୍ୟର ରସବୋଧର ସାର୍ଥକ ପରିଚୟ ମଧ୍ୟ ତାଙ୍କ ପ୍ରବର୍ତ୍ତିତ ନିପୁଣ ଛନ୍ଦ ଯୋଜନା ଭିତରେ ପାଇବା କଷ୍ଟକର ନୁହେଁ । ଦାଣ୍ଡୀବୃତ୍ତର ଅସ୍ଥିର ପାଦ ଭିତରେ ସଂସ୍କୃତ ଛନ୍ଦର ଧ୍ୱନି-ସୌନ୍ଦର୍ଯ୍ୟ ସମ୍ପୂର୍ଣ୍ଣ କଳ୍ପନାତୀତ । ତେଣୁ ଓଡ଼ିଆ ଭାଷା ଓ ଶବ୍ଦର ଉଚ୍ଚାରଣଗତ ବୈଶିଷ୍ଟ୍ୟକୁ ଆଧାରକୁ ନେଇ ସଂସ୍କୃତ କିମ୍ବା ପ୍ରାକୃତ ନବାକ୍ଷରୀ କୌଣସି ଛନ୍ଦର ଅନୁକରଣରେ ୫+୪ ଅକ୍ଷରର ଯତିପାତ ସମ୍ବଳିତ ଏପରି ଏକ ନୂତନ ଛନ୍ଦ ସେ ସୃଷ୍ଟି କରିଦେଲେ ଯାହାକୁ ଇଚ୍ଛାକଲେ ଦାଣ୍ଡୀବୃତ୍ତର ସ୍ୱାଧୀନ ପଠନ-ପଦ୍ଧତିରେ ଅତି ସହଜରେ ବୋଲିଯାଇ ପାରିବ ଓ ଯାହା ଅତି କ୍ଷୁଦ୍ର ପରିସର ମଧ୍ୟରେ ସଂସ୍କୃତ ମାତ୍ରା-ଗତ ଛନ୍ଦ-ସୌନ୍ଦର୍ଯ୍ୟର ଅଭାବପୂରଣ ଦିଗରେ ସହାୟକ ହୋଇପାରିବ । ଓଡ଼ିଆ ପୁରାଣ-ପରମ୍ପରାର ପରିସର ଭିତରେ ସଂସ୍କୃତ ଛନ୍ଦରୀତି ନିୟମ ଅନୁସରଣ କରି ଓଡ଼ିଆ ଛନ୍ଦର ସଙ୍ଗଠିତ କଳେବରର ମୂଳପତ୍ତନ ଦେବା ସେହି କ୍ଷଣଜନ୍ମା ମହାପୁରୁଷ ପଣ୍ଡିତପ୍ରବର ଜଗନ୍ନାଥ ଦାସଙ୍କ ପକ୍ଷରେ ହିଁ କେବଳ ସମ୍ଭବପର । ଯେତେବେଳେ ଶ୍ରୋତାର କାନକୁ ମୁଗ୍ଧ କରିବା ପାଇଁ ଏ ଦେଶରେ କୌଣସି ଓଡ଼ିଆ ସଙ୍ଗୀତ, ଏପରିକି କୌଣସି ଛନ୍ଦୋମୟ ଓଡ଼ିଆ ଗ୍ରନ୍ଥ ନଥିଲା, ଯେତେବେଳେ

ଭାଗବତରେ ଏହି ନବାକ୍ଷରୀ ଛନ୍ଦ ତା'ର ଉଚ୍ଚାରଣଗତ ଭିନ୍ନ ଭିନ୍ନ ସ୍ୱର-ସମ୍ପଦରେ ଏ ଦେଶ କଣ୍ଠରେ ନବ ନବ କାବ୍ୟିକ ଛନ୍ଦର ରସଧାରା ପରିବେଷଣ କରିବାକୁ ସମର୍ଥ ହୋଇଥିଲା ।

ଦେଶର ସାକ୍ଷରନିରକ୍ଷର ଆବାଳବୃଦ୍ଧବନିତାଙ୍କ କଣ୍ଠକୁହୁରେ ହରିନାମାମୃତ-ଝଙ୍କାର ସଙ୍ଗେ ଅମୃତନିସ୍ୟନ୍ଦୀ ଏହି ସାଙ୍ଗୀତିକ ରସ ଯୁଗ ଯୁଗ ଧରି ପରିବେଷଣ କରିବାରେ ଏହି ଛନ୍ଦ ଯେପରି ସମର୍ଥ ହୋଇଛି, ତାହା ଥରେ ଚିନ୍ତାକଲେ ସେହି ଛନ୍ଦର ସ୍ରଷ୍ଟାଙ୍କ ଗଭୀର ଛନ୍ଦ-ବୋଧ ପ୍ରତି ସମ୍ମାନ ନ ଜଣାଇ ରହିହୁଏ ନାହିଁ । ନବାକ୍ଷରୀଛନ୍ଦ ଯେଉଁ କାଳକୁ ଛନ୍ଦ-ସୌନ୍ଦର୍ଯ୍ୟ ଦୃଷ୍ଟିରୁ ତାଲିମ ଦେଇଥିଲା ସେହି କାଳ ପରବର୍ତ୍ତୀ ସମୟରେ କାବ୍ୟିକ ଛନ୍ଦର ମାଧୁର୍ଯ୍ୟକୁ ଅଭିନନ୍ଦନ କରିନେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । କାବ୍ୟିକ ସମବୃତ୍ତ ଛନ୍ଦର ନିୟମିତ ଗଠନ-ପରିପାଟୀ, ବିଷମବୃତ୍ତର ବିଭିନ୍ନ ସମ-ଅସମ, ପାଦବିନ୍ୟାସ, ଏ ଉଭୟ ରୂପଭଙ୍ଗୀରୁ ଫୁଟି ଉଠୁଥିବା ବିଚିତ୍ର ଧ୍ୱନି-ବୈଚିତ୍ର୍ୟର ଇତିହାସ ଅନୁଧ୍ୟାନ କଲାବେଳେ ଏ ଦିଗରେ ନବାକ୍ଷରୀ-ଛନ୍ଦର ଅଭିନବ ଭୂମିକାକୁ ଅବହେଳା କରିବା ଆଦୌ ସମ୍ଭବପର ନୁହେଁ ।

ଜଗନ୍ନାଥ ଦାସ ହେଉଛନ୍ତି ନବାକ୍ଷରୀ ଛନ୍ଦରେ ଓଡ଼ିଆ କାବ୍ୟିକ ଭାଷାର ଆଦ୍ୟ ଜନକ । ଭାଗବତର ଭାଷା ଯେଉଁ ଉପାୟରେ କାବ୍ୟାଭିମୁଖୀ ଭାଷାରେ ରୂପାନ୍ତରିତ ହୋଇଅଛି ତାହାର ପରିଚୟ ଲାଭ ପାଇଁ ନିମ୍ନଲିଖିତ ଉଦ୍ଧୃତିର ସ୍ୱରୂପ ନିରୀକ୍ଷଣ କରନ୍ତୁ ।

ଶ୍ରୀ ଶୁକ ଉବାଚ :—

ଜିତ ଆସନ ଜିତ ପ୍ରାଣ । ଜିତ ବିଷୟ ଇନ୍ଦ୍ରିଗଣ ॥
ସ୍ଥୂଳ ଶରୀରେ ବୁଦ୍ଧି ବଳେ । ମନକୁ ସ୍ଥାପିବ ନିଶ୍ଚଳେ ॥
ବିଶେଷେ ଗୋବିନ୍ଦ ଶରୀର ସ୍ଥୂଳକ ମଧ୍ୟେ ସ୍ଥୂଳତର ॥
ଯହିଁ ସଂସାର ପରିମାଣ । ଭୂତ ଭବିଷ୍ୟ ବର୍ତ୍ତମାନ ॥
ବ୍ରହ୍ମାଣ୍ଡ ବସେ ଯାର ଦେହେ । ସପ୍ତାବରଣେ ଯୁକ୍ତ ହୁଏ ॥
ବିରାଜ ପୁରୁଷ ଏ ମଧ୍ୟେ । ବସେ ଧାରଣା ଅନୁବାଦେ ॥
ବ୍ରହ୍ମାଣ୍ଡ ଚତୁର୍ଦ୍ଦଶପୁର । ପ୍ରମାଣ ଶରୀର ଯାହାର ॥
ଶୁଣ କହିବା ଅଧ ଊର୍ଦ୍ଧ୍ୱେ । ବିରାଟ ପ୍ରତି ଅଙ୍ଗ ମଧ୍ୟେ ॥
ପାତାଳ ବସେ ପାଦତଳ । ତା ପାଦ ଅଗ୍ର ରସାତଳ ॥

ଚରଣ ଗୁଲଫ ମହାତଳ । ଜଙ୍ଘ ଯୁଗଳ ତଳାତଳ ॥
ସୁତଳ ବସେ ଜାନୁ ଯୁଗେ । ବିତଳାତଳ ଉରୁଭାଗେ ॥
ଜଘନ ଦେଶେ ମହୀତଳ । ନାଭି ବିବର ନଭସ୍ଥଳ ॥
ଜ୍ୟୋତି ସମୂହ ପରକାଶେ । ହୃଦରେ ସ୍ୱର୍ଲୋକ ହିଁ ବସେ ॥
କଣ୍ଠ ଆଶ୍ରି ଅଛି ମହର୍ଲୋକ । ବଦନେ ବସେ ଜନ ଲୋକ ॥
ଲଲାଟେ ତପଲୋକ ବସେ । ମସ୍ତକ ଦେଶେ ସତ୍ୟ ବସେ ॥

( ୨ୟ ସ୍କନ୍ଧ, ୧ମ ଅଧ୍ୟାୟ )

ହିସାବ କରି ଦେଖିଲେ ଜଣାଯିବ ଯେ ଏଥିରେ ବ୍ୟବହୃତ ଶବ୍ଦର ସଂଖ୍ୟା ପ୍ରାୟ ୧୦୩ । ଇନ୍ଦ୍ର, ସ୍ଥାପିବ ଓ ପରକାଶ—ଏଇ ତିନୋଟି ତଦ୍ଭବ ଶବ୍ଦକୁ ବାଦ୍ ଦେଲେ ଖାଣ୍ଟି ଓଡ଼ିଆ ଶବ୍ଦ 'ବସ' ୯ ଥର ଓ ଅନ୍ୟାନ୍ୟ ଓଡ଼ିଆ ଶବ୍ଦର ସଂଖ୍ୟା ଆଠ । ଯଥା—ଯହିଁ, ଯାର ବା ଯାହାର, ହୁଏ, ଶୁଣ, କହିବା, ତା, ଏ । ଅବଶିଷ୍ଟ ଅଧିକାଂଶ ଶବ୍ଦ ସଂସ୍କୃତ ଓ ଏଥିରୁ ଅଧିକ ଭାଗ ସଂସ୍କୃତ ଭାଗବତରୁ ଆହୃତ ।

ଭାଗବତର ଭାଷା-ବୈଭବ ଉପଲବ୍ଧି ପାଇଁ ଓଡ଼ିଆର ଆଦିପୁରାଣ ମହାଭାରତରୁ କିଛି ଅଂଶ ଶୁଣନ୍ତୁ । ପ୍ରଭେଦ ଆପଣ ନିଜେ ନିଜେ ଅନୁଭବ କରି ପାରିବେ ।

"ଦୁର୍ଯୋଧନ ବୋଇଲା ମାତା ଗୋ ତୋତେ କହଇ ବିଶ୍ୱାସ
ଭୀମା ସଭା ମଧ୍ୟେ ମୋତେ କହିଲା ହିଂଘାସ ।
ମନହିଂ ସେ ଜାଣଇ ଗୋ ହୃଦରେ ଯେତେ ପାପ
ମାତା ହିଂ ସେ ଜାଣଇଂ ପୁତ୍ରର ଯେତେ ବାପ ।
ଗାନ୍ଧାରୀ ବୋଇଲେ ବାବୁ ତୁମ୍ଭ ସେ ମନ୍ଦକଲୁ
ଆପଣାର ମନ୍ଦପଣେ ସମସ୍ତ କାର୍ଯ୍ୟ ନାଶ କଲୁ ।

ଯୁଧିଷ୍ଠିର ତୋହର ଯୁଗତେ ଅଟଇ ଜ୍ୟେଷ୍ଠ ଭ୍ରାତ
ତାହାକୁ ନିତ୍ୟ ତୁ ବୋଲୁ ବସ ହୋ ଧର୍ମସୁତ ।
ସେ ବିଦ୍ୟମାନେ ନୋହନ୍ତି କି ତୋର ପଞ୍ଚୁ ଭାଇ
ଆପଣାର ଛିଦ୍ର କଥା ଆପଣେ ସେ ଲୁଚାଇ ।

ପଣ୍ଡୁ ଧୃତରାଷ୍ଟ୍ର ଯେ ନୋହନ୍ତି ନା ଭିନ୍ନ
ତୋତେ ଲାଜ ନୋହଇ କି ଯୁଧିଷ୍ଠିରଙ୍କ ଅଭିମାନ ।

ସୋହୋଦ୍ରେ ହିଂସାସ ଯେ କଲୁ ତୁ ଯୁଗତେ
କାଟେଣି ପାପ ଆସି ଦୁଷାଇଲୁ ତୋତେ ।

ଦୁର୍ଯୋଧନ ବୋଇଲ ମା ଗୋ ମୋହର ପିତା ଧୃତରାଷ୍ଟ୍ର
ଗାନ୍ଧାରସେନ ଦୁହିତା ତୁ ବଂଶେଣ ଗରିଷ୍ଟ ।
ପିତା ଧୃତରାଷ୍ଟ୍ର ଗାନ୍ଧାରୀ ମୋର ମାତା
ଗୋଲକ ପୁତ୍ର ବୋଲି ଖିମା ବୋଲଇ ଅମର୍ଜିତା ।
ଖିଷ୍ଟୁ ଭ୍ରରସର୍ବାଙ୍ଗେ ହସିଲେ ତାହା ଶୁଣି
ଲଜେ ଅପମାନ ପାଇଲା ଗୋସାମଣୀ ।
ଗାନ୍ଧାରୀ ବୋଇଲେ ତୁ ପଣ୍ଡିତ ମୋର ପୁତ୍ର
ପାଣ୍ଡବଙ୍କୁ ହିଂସାସ କଲୁନ ଯେ ବହୁତ ।
ଆପଣାର ଶରୀରେ ପଡ଼ୁଛି ଅଂସାଇଂ
ପରକୁ ହସୁ କମ୍ପା ନାସିକାରେ ହସ୍ତଦେଇ ।

(ଆଦିପର୍ବ ୧ମ ଖଣ୍ଡ ପୃ: ୪୫୬-୫୭)

ମହାଭାରତ ରଚନା କଲାବେଳେ ସାରଳା ଦାସଙ୍କ ସମ୍ମୁଖରେ ଥିଲା ଏ ଦେଶର ଏକ ନିରକ୍ଷର ଜନତା । ଏ ଜନତା ଯେଉଁ ଭାଷାରେ କଥାବାର୍ତ୍ତା କରେ, ଯେଉଁ ଶବ୍ଦକୁ ଯେପରି ଭାବେ ଉଚ୍ଚାରଣ କରେ, ସଂସ୍କୃତର ଯେଉଁ ଶବ୍ଦକୁ ସେ ବୁଝିପାରିବାର ସମ୍ଭାବନା ଥାଏ, ସାରଳା ଦାସ ସେଇ କଥିତ ଭାଷା, ତା'ର ଉଚ୍ଚାରଣ ସ୍ୱରୂପ ତଥା ସର୍ବଜନପରିଚିତ ସାଧୁ ଶବ୍ଦକୁ ନିଜ ମହାଭାରତରେ ବିନିଯୋଗ କରିଥିବାର ଦେଖିବାକୁ ମିଳେ । ଆମର ଉପର ଉଦ୍ଧୃତର ଆଦ୍ୟ ପ୍ରାନ୍ତ ସର୍ବସ୍ୱ ଏଇ ସତ୍ୟରେ ଲିଖିତ । ପାରିବାରିକ ତଥା ସାମାଜିକ ଜୀବନରେ ବଂଶର ମର୍ଯ୍ୟାଦା ରକ୍ଷା କରିବା ପ୍ରତ୍ୟେକ ବ୍ୟକ୍ତିର ସ୍ଥିତି-ପ୍ରତିଷ୍ଠା ଦିଗରେ ଏକ ପରମ କର୍ତ୍ତବ୍ୟ । କଥିତଭାଷା-ମାଧ୍ୟମରେ ଏଇ କର୍ତ୍ତବ୍ୟବୋଧ ପ୍ରତି ଜନତାର ଦୃଷ୍ଟି କପରି ଆକର୍ଷଣ କରାଯାଇଛି ତାହା ଲକ୍ଷ୍ୟ କରିବା କଥା । ଏହାର ପରିଣତି ସ୍ୱରୂପ ଏହା ଜନତାର ଚିତ୍ତକୁ ଏପରି ପ୍ରଭାବିତ କରିଛି ଯେ ଏଥିରେ ଥିବା 'ଗୋଲକପୁତ୍ର' ଶବ୍ଦ ଓ ଉକ୍ତି ପଦ 'ମନସ୍ୱଂ ସେ ଜାଣଇ' ଇତ୍ୟାଦି, 'ସେ ବିଦ୍ୟମାତେନ ନୋହନ୍ତି' ଇତ୍ୟାଦି ଓ 'ଆପଣାର ଶରୀରେ' ଇତ୍ୟାଦି) ଆଜି ଏକ ଏକ ଜନପ୍ରିୟ ଲୋକପ୍ରବଚନରେ ପରିଣତ ହୋଇପଡ଼ିଛି ।

ଅପର ପକ୍ଷରେ ସଂସ୍କୃତ ଶ୍ଳୋକକୁ ଓଡ଼ିଆରେ ଅନୁବାଦ କଲାବେଳେ ଜଗନ୍ନାଥ ଦାସ ଅତି ନିଃସଙ୍କୋଚରେ ମୂଳ ସଂସ୍କୃତ ଶବ୍ଦଗୁଡ଼ିକୁ ଅପରିବର୍ତ୍ତିତ ରୂପରେ ଆହରଣ କରିଛନ୍ତି । ଏହାଦ୍ୱାରା କଥିତଭାଷା ନିମ୍ନଶ୍ରେଣୀର ପୁରାଣ ଭାଷାର ଅପରିଚ୍ଛନ୍ନ ରୂପ ସମ୍ପୂର୍ଣ୍ଣ ବଦଳିଯାଇ ଏକ ନବୀନ ବେଶରେ ତାହା ଆମ ସମ୍ମୁଖରେ ପ୍ରତିଭାତ ହେଉଛି । ପୁରାଣଭାଷାର ଅନାକର୍ଷଣୀୟ ରୂପ ପରିବର୍ତ୍ତେ ଏଥିରେ ଦେଖାଦେଇଛି ଏପରି ଏକ ଭାଷା ଯାହା ନୂତନ ପ୍ରାଣ ବିଭବରେ ସତତ ପରିସ୍ପନ୍ଦିତ, ମର୍ଯ୍ୟାଦା ବା ଆଭିଜାତ୍ୟ-ବୋଧରେ ନିତ୍ୟ ଦୀପ୍ତିମନ୍ତ ହୋଇ ଉଠୁଛି । ଏପରି ପରିବର୍ତ୍ତିତ ଗୁରୁଗମ୍ଭୀର ଭାଷାର ଉନ୍ନତ ରୂପ-ପରିପାଟୀ ଯେ ପରବର୍ତ୍ତୀ ସମୟରେ ବିକଶିତ କାବ୍ୟିକ ଭାଷାର ମୂଳଭିତ୍ତି, ତାହା ନିଃସନ୍ଦେହରେ ସ୍ୱୀକାର କରାଯାଇପାରେ ।

ଏ ଭାଷାରେ ଭାବର ଅଭିବ୍ୟକ୍ତି ମଧ୍ୟ ଅନ୍ୟ ଏକ ଲକ୍ଷଣୀୟ ବୈଶିଷ୍ଟ୍ୟ । ଯେଉଁ ଭାବ ବିନ୍ଦୁ ସାଧାରଣ ଶବ୍ଦ ଭିତରେ ଫୁଟିଉଠେ, ସେ ଭାବକୁ ସଂସ୍କୃତ ଶବ୍ଦର ପରିସର ଭିତରେ ସଜାଇ ଦେଲେ ତା'ର ରୂପମର୍ଯ୍ୟାଦାରେ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ଭାବ-ଅଭିବ୍ୟକ୍ତିର ଶାଳୀନତା ସେଥିରୁ ସ୍ୱତଃ ଆତ୍ମପ୍ରକାଶ କରିଥାଏ । ଏଥିପାଇଁ ପ୍ରଥମେ ଆବଶ୍ୟକ ହୁଏ ସ୍ରଷ୍ଟା ଚିତ୍ତର ଅପୂରନ୍ତ ସୌନ୍ଦର୍ଯ୍ୟବୋଧ । ଏଇ ସୌନ୍ଦର୍ଯ୍ୟବୋଧ ମଧ୍ୟ ବହୁ ରୂପରେ ବିକାଶଲାଭ କରିବାର ସମ୍ଭାବନା ଥିଲେ ସୁଦ୍ଧା ଗୋଟିଏ କ୍ଷୁଦ୍ର ପରିସର ଭିତରେ ତାହା ସାଧାରଣତଃ ଦୁଇଟି ରୂପ ଧାରଣ କରିଥାଏ । ଏଥିରୁ ପ୍ରଥମଟି ହେଉଛି ସଂକ୍ଷିପ୍ତତା ଓ ଦ୍ୱିତୀୟଟି ହେଉଛି ସ୍ରଷ୍ଟାର ବସ୍ତୁର-ବୋଧ । ଗୋଟିଏ ବିଷୟର ବହୁଳ ବର୍ଣ୍ଣନା ହେଲେ, ସମୟରେ ତାହା ଅଯଥା ଅତିରଞ୍ଜନରେ ପର୍ଯ୍ୟବସିତ ହୋଇଯାଏ । ସାର୍ଥକ ସ୍ରଷ୍ଟା, ତେଣୁ ସବୁଥା ବର୍ଣ୍ଣନା-ପ୍ରିୟତା ପରିହାର ପୂର୍ବକ ବର୍ଣ୍ଣିତ ବିଷୟର ସଂକ୍ଷିପ୍ତରୂପ ପ୍ରଦାନ କରିଥାନ୍ତି । ବସ୍ତୁର-ବୋଧ ମଧ୍ୟ ବହୁ ରୂପରେ ଆତ୍ମ-ପ୍ରକାଶ କରିଥାଏ । ଉପଯୁକ୍ତ ଭାବର ଚୟନ, ଭାବାଶ୍ରୟୀ ଶବ୍ଦର ସାର୍ଥକ ନିର୍ବାଚନ, କବିତାରେ ଶବ୍ଦ ରାଶିର ଉପଯୁକ୍ତ ସ୍ଥାନ ନିରୂପଣ—ଏ ପ୍ରତ୍ୟେକ ସ୍ଥଳରେ ସ୍ରଷ୍ଟାର ବସ୍ତୁରବୋଧ ନ ଥିଲେ କବିତାର ଭାଷା ଶିଥିଳ ଓ ଅନାକର୍ଷଣୀୟ ହେବାର ଆଶଙ୍କା ଯଥେଷ୍ଟ ଅଛି ।

ଯେଉଁ କେତୋଟି ମୌଳିକ କାବ୍ୟ-ଗୁଣ ପ୍ରତ୍ୟେକ କଳାକାରଠାରେ ଆମେ ସାଧାରଣତଃ ଦେଖିବାକୁ ପାଇଥାଉଁ, ଜଗନ୍ନାଥ ଦାସ ଥିଲେ ସେ ସବୁ ଗୁଣରେ ବିଭୂଷିତ । ଜଣେ ସାର୍ଥକନାମା କଳାକାର ଯେଉଁ ମାନସିକ ଆଭିମୁଖ୍ୟ ନେଇ ଉନ୍ନତ କଳା ସୃଷ୍ଟିରେ ଆତ୍ମ-ନିବିଷ୍ଟ ଚିତ୍ତ ହୋଇଥାଏ, ଭାଗବତ ଅଧ୍ୟୟନ କଲାବେଳେ ଜଗନ୍ନାଥ ଦାସଙ୍କଠାରେ ଅନୁରୂପ କଳାକାରର ଭାବ-ମୂର୍ତ୍ତି ଟି ଆମେ ସ୍ପଷ୍ଟତଃ ଉପଲବ୍ଧି କରିଥାଉଁ । ଏ ଗ୍ରନ୍ଥର ଯେକୌଣସି ପୃଷ୍ଠା ଓଲଟାଇ ଦେଇ ତା'ର ପଦଗୁଡ଼ିକର ବିନ୍ୟାସ-କୌଶଳ ଥରେ ଧୀର ଚିତ୍ତରେ ନିରୀକ୍ଷଣ କରନ୍ତୁ, ସେଥିରେ ଆପଣମାନେ ଦେଖିବାକୁ ପାଇବେ ସ୍ରଷ୍ଟା-ଚିତ୍ତର ସେଇ ଅପୂରନ୍ତ ସୌନ୍ଦର୍ଯ୍ୟ-ବୋଧ ଯାହା ଭାବର ଆହରଣ, ଶବ୍ଦର ନିର୍ବାଚନ ଓ ତା'ର ପ୍ରୟୋଗ, ବର୍ଣ୍ଣନାର ସଂଯମ ଓ ସଂକ୍ଷିପ୍ତତା, ରୂପାୟନ ଓ ପରିବେଷଣରେ ଉନ୍ନତ ବିଚାର-ବୋଧ ଉପରି ଏକକ ଅବସ୍ଥାନ କରି ରଚନାକୁ ରସସିକ୍ତ କରି ତୋଳିଛନ୍ତି । ସ୍ଥଳବିଶେଷରେ ମଧ୍ୟ ଅଛି ସ୍ରଷ୍ଟା ଚିତ୍ତର ଅଳଙ୍କରଣ ପ୍ରବୃତ୍ତି । ଏହା ସାଧାରଣତଃ ଅନୁପ୍ରାସ ଅଳଙ୍କାରଠାରେ ସୀମିତ । ଏହା ଶ୍ରୋତାର ମନକୁ ଓ କର୍ଣ୍ଣକୁ ମୁଗ୍‌ଧ କରିବା ପାଇଁ ଉଦ୍ଦିଷ୍ଟ; କିନ୍ତୁ ଦେଖିବାର କଥା, ଭାଗବତ ଏକ ଭକ୍ତିମୂଳକ ଅନୁବାଦ ଗ୍ରନ୍ଥ ହୋଇଥିବାରୁ ଏଥିରେ କାବ୍ୟ-ସୁଲଭ ବିବିଧ ଅଳଙ୍କାରର ବହୁଳ ପ୍ରୟୋଗ କରିବାର ସ୍ୱାଧୀନତା କବିଙ୍କର ନଥିବା ଏକାନ୍ତ ସ୍ୱାଭାବିକ । ତଥାପି ଏ କଥା ସତ୍ୟ ଯେ ନିଜର ସୀମିତ ପରିସର ମଧ୍ୟରେ ସୁଦ୍ଧା ଜଗନ୍ନାଥ ଦାସ କବିତାର ସାଙ୍ଗୀତିକତା ସନ୍ନିବିଷ୍ଟ କରିବାରେ ଅପୂର୍ବ ଦକ୍ଷତା ପ୍ରଦର୍ଶନ କରିଛନ୍ତି, ଯାହାର ସୂଚନା ଆମେ ଆମର ପୂର୍ବ ଆଲୋଚନାରେ ଦେଖାଇ ଦେଇଛୁ । ନିରପେକ୍ଷ ମାନସିକଭାବେ ବିଚାର କଲେ ଆମେ ସ୍ପଷ୍ଟ ଅନୁଭବ କରିବୁ ଯେ ଏହା ଏକ ଭକ୍ତିଗ୍ରନ୍ଥ ହେଲେହେଁ ଏଥିରେ ପ୍ରକୃଷ୍ଟ କବିତାର ବୈଶିଷ୍ଟ୍ୟ କମ ନାହିଁ । ପରବର୍ତ୍ତୀ ସମୟରେ ଯେଉଁ ସମୁନ୍ନତ ବିଶାଳ ଛନ୍ଦ-ସାହିତ୍ୟ ଏ ଦେଶରେ ବିକଶିତ ହୋଇଛି ସେଇ ଛନ୍ଦୋବଦ୍ଧ କାବ୍ୟର ପରମ୍ପରାଗତ ଆଦ୍ୟ ସ୍ରୋତ ଆମେ ନିଃସନ୍ଦେହରେ ପ୍ରଥମେ ଭାଗବତଠାରେ ନିରୀକ୍ଷଣ କରିପାରିବୁ ।

ଓଡ଼ିଆ ଭାଗବତର ଐତିହାସିକ ଜନପ୍ରିୟତା ଏ ପୁସ୍ତକ-ଆବିର୍ଭାବର ଐତିହାସିକ ପୃଷ୍ଠଭୂମିକା ଉପରେ ପ୍ରତିଷ୍ଠିତ ବୋଲି

ଯେଉଁମାନେ କହିଥାନ୍ତି ସେମାନଙ୍କର ଏଇ ଅଭିମତକୁ ଅସ୍ୱୀକାର କରିଦେବାର କୌଣସି କାରଣ ନାହିଁ । କାରଣ ଗୌଡ଼ୀୟ ପ୍ରେମ ଧର୍ମରେ ଦୀକ୍ଷିତ ଲୋକଚିତ୍ତ ଯେତେବେଳେ ନିଜର ତୃଷା ନିବାରଣ ପାଇଁ ସନ୍ତୃଷ୍ଟ ନୟନରେ ଅପେକ୍ଷା କରିଥିଲା ଓଡ଼ିଆ ଭାଗବତର ଅମୀୟ ବାଣୀ ଏଇ ତୃଷାନିବାରଣ ଦିଗରେ ପ୍ରଧାନ ଭୂମିକା ଗ୍ରହଣ କରିଥିବା ସମ୍ପୂର୍ଣ୍ଣ ସ୍ୱାଭାବିକ । କେବଳ ଏତିକି ଆଲୋଚନା କଲେ ଆମର ମନେହୁଏ, ଏ ପୁସ୍ତକର ସାହିତ୍ୟିକ ବୈଶିଷ୍ଟ୍ୟ ତଥା ଭକ୍ତି-ଧର୍ମ ପ୍ରତିଷ୍ଠା ଦିଗରେ ତା'ର ଅବିସ୍ମରଣୀୟ ଅବଦାନ ସମ୍ପୂର୍ଣ୍ଣ ଉପେକ୍ଷିତ ହୋଇଯିବାର ଆଶଙ୍କା ଯଥେଷ୍ଟ ଅଛି । ସାହିତ୍ୟ ଉପରେ ଧର୍ମ ପ୍ରଚାରରେ ମୁଖ୍ୟ ଅଂଶ ଗ୍ରହଣ କରେ ଗୋଟିଏ ରସକଲ୍ଲୋଳ, ଗୋଟିଏ ବିଦଗ୍ଧ ଚିନ୍ତାମଣି, ଗୋଟିଏ ମଥୁରାମଙ୍ଗଳ ତାର ସାକ୍ଷ୍ୟ ପ୍ରଦାନ କରିଥାନ୍ତି । ସାହିତ୍ୟିକ ବୈଶିଷ୍ଟ୍ୟ ଓ ଭକ୍ତିଭାବର ଅପୂର୍ବ ସମନ୍ୱୟ ଭାଗବତରେ ସମ୍ପାଦିତ ହୋଇ ଏ ଦେଶର ଜନଚିତ୍ତକୁ କିପରି ପ୍ରଭାବିତ କରିବାକୁ ସମର୍ଥ ହୋଇଛି ତାହାର ସାମାନ୍ୟ ପରିଚୟ ବର୍ତ୍ତମାନ ଆମେ ଉପସ୍ଥାପନା କରୁଛୁ ।

ପୁରାଣର ପଞ୍ଚ ଲକ୍ଷଣ, ଏପରିକି ଦଶ ଲକ୍ଷଣ ସହିତ ଅନ୍ୟ କେତୋଟି ବୈଶିଷ୍ଟ୍ୟ ସଂସ୍କୃତ ଭାଗବତରେ ପରିଦୃଷ୍ଟ ହୋଇଥାଏ । ଓଡ଼ିଆ ଭାଗବତ ବହୁ ଅଂଶରେ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ, ଏପରିକି ବହୁ ବ୍ୟତିକ୍ରମ ଭିତରେ ମଧ୍ୟ ତା'ର ବିଶୃଙ୍ଖଳ ଅନୁସରଣ କରିଥିବାରୁ ଏହା ମୂଳ ଭାଗବତର ପୁରାଣ-ଗତ ସମସ୍ତ ରସ ବିଭବ ଓଡ଼ିଆ ପ୍ରାଣରେ ପରିବେଷଣ କରିବାରେ ସମର୍ଥ ହୋଇଅଛି । ପୁରାଣ-ସାହିତ୍ୟ ଅତି ପ୍ରାଚୀନ ହେଲେହେଁ ତା'ର ଆଦିରୂପ ଓ ଆଦିଲକ୍ଷ୍ୟ କାଳକ୍ରମେ ପରିବର୍ତ୍ତନ ଭିତରେ ଗତିକରି ପରିଶେଷରେ ଏପରି ଏକ ଭାବ-ମୂର୍ତ୍ତି ଆହରଣ କଲା ଯେଉଁଥିରେ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମମତବାଦ ପ୍ରଚାର କରିବାର ଲକ୍ଷ୍ୟଟି ଅତି ସ୍ପଷ୍ଟ ହୋଇ ଦେଖାଦେଇଥିଲା । ସମୟକ୍ରମେ ଏଥିରେ ଧର୍ମଭାବ ସହିତ ଧର୍ମ ଦର୍ଶନ ମଧ୍ୟ ନିଜର ସ୍ୱତନ୍ତ୍ର ଆସନ ଅଧିକାର କରିବାରୁ ପ୍ରତ୍ୟେକ ପୁରାଣ ଏକ ଏକ ଧର୍ମଗ୍ରନ୍ଥ ରୂପେ ଏ ଦେଶ ଲୋକଙ୍କ ଦ୍ୱାରା ଗୃହୀତ ହେଲା । ପୁରାଣର ସମସ୍ତ ଲକ୍ଷଣ ରୂପାୟିତ କରିବା ସଙ୍ଗେ ସଙ୍ଗେ ଏକ ବଶିଷ୍ଟ ଧର୍ମ ତଥା ଧର୍ମ-ଦର୍ଶନର ପ୍ରଚାର ମାଧ୍ୟମ ରୂପେ

ଭାଗବତ ଯେପରି ପରିକଳ୍ପିତ ଓ ପରିଣତ ହୋଇଅଛି ସେପରି ଅନୁରୂପ ଗୌରବ ଅନ୍ୟ ପୁରାଣମାନଙ୍କରେ ପ୍ରାପ୍ତ ଦେଖିବାକୁ ମିଳେ ନାହିଁ । ପୁନଶ୍ଚ, ଏହି ଧର୍ମ ଓ ଦର୍ଶନର ଅନ୍ତରାଳରୁ ଯେଉଁ ଶାଶ୍ୱତ, ଚିରନ୍ତନ ବାଣୀ ବିଭବ ଓ ସାର୍ବଜନୀନ ଚିନ୍ତାଧାରା ଫୁଟି ଉଠିଛି ତାହା ଏକାନ୍ତଭାବେ ଅନନ୍ୟସାଧାରଣ ପରି ଅନୁଭୂତ ହୁଏ । ଭାଗବତ ହେଉଛି ଶ୍ରୀକୃଷ୍ଣ କାହାଣୀ-ସର୍ବସ୍ୱ ଏକ ଭକ୍ତିମୂଳକ ଧର୍ମଗ୍ରନ୍ଥ । ଏହାର ଦୁଇଟି ସ୍କନ୍ଧ (ଦଶମ ଓ ଏକାଦଶ)ରେ ଏହି କାହାଣୀର ପରିପୂର୍ଣ୍ଣ ଚିତ୍ର ଅଙ୍କିତ ହେଲେ ହେଁ ଅନ୍ୟାନ୍ୟ ସ୍କନ୍ଧର ପ୍ରତ୍ୟେକ ବିଷୟ ଓ ଉପାଦାନ ଭିତରେ ଶ୍ରୀକୃଷ୍ଣଙ୍କ ମହିମା ଓ ଗୌରବର ଗାନ କମ୍ ପ୍ରଚାର କରାଯାଇ ନାହିଁ । ବିଷୟବସ୍ତୁର ଏହି ଏକକ ବୈଶିଷ୍ଟ୍ୟ ମଧ୍ୟରେ ଭାରତୀୟ ଆଧ୍ୟାତ୍ମିକ ଚିନ୍ତାର ସମସ୍ତ ନିର୍ଯ୍ୟାସ ବୈଦିକ ସଂହିତା-ବ୍ରାହ୍ମଣ-ଉପନିଷଦ ସ୍ମୃତି ଶାସ୍ତ୍ର ସହିତ ଷଡ଼-ଦର୍ଶନର ଅପୂର୍ବ ସମାବେଶ ଏହାର ଏପରି ଏକ ଦାର୍ଶନିକ ରୂପ ଅନ୍ୟ କୌଣସି ପୁରାଣରେ ଅଛି ବୋଲି ମନେହୁଏ ନାହିଁ । ଭାରତୀୟ ଭାବନାର ଚାରୋଟି ମୁକ୍ତିମାର୍ଗ କର୍ମ, ଜ୍ଞାନ, ଭକ୍ତି ଓ ଯୋଗ ମଧ୍ୟ ଏଥିରେ ସମୁଚିତ ଆସନ ଅଧିକାର କରିଛନ୍ତି । ହେଲେ ହେଁ ଯୋଗମୂଳକ ଭକ୍ତି ଧର୍ମ ପ୍ରଚାର ହେଉଛି ଭାଗବତର ପ୍ରଧାନ ଅନ୍ତଃସ୍ୱର । ଏହି ସ୍ୱରଟି ଏପରିଭାବେ ରୂପାୟିତ ହୋଇଛି ଯେ ତାହା ଏକ ସାମ୍ପ୍ରଦାୟିକ ଧର୍ମ-ବିଶ୍ୱାସକୁ ଅବଲମ୍ବନ କରିଥିଲେ ସୁଦ୍ଧା ସେଥିରୁ ଏକ ସାର୍ବଜନୀନ ଭାବ-ଧାରା ସ୍ୱତଃ ପରିସ୍ଫୁରିତ ହେଉଥିବାର ଅନୁଭୂତ ହୁଏ । ଜାତି-ଧର୍ମ ବର୍ଣ୍ଣ-ଶ୍ରେଣୀ-ନିରପେକ୍ଷ ଧର୍ମ-ଧାରଣାଟି ଫୁଟିଉଠିବା ଏପରି ଯୋଗମୂଳକ ଭକ୍ତିଧର୍ମର ଚରମ ପରାକାଷ୍ଠା ହୋଇଥିବାରୁ ଏହା ବହୁ ମତବାଦର ଭକ୍ତ ଚିତ୍ତକୁ ଆଲୋଡ଼ନ କରିବାକୁ ସମର୍ଥ ହୋଇଥାଏ । ସର୍ବଲୋକ ହୃଦୟଗ୍ରାହୀ ଏପରି ଏକ ଐକାନ୍ତିକ ଭକ୍ତିଭାବନା ବହୁଲୋକରେ ପ୍ରଚାରିତ ହୋଇ ଚିରନ୍ତନ ଆବେଦନରେ ସଦା ଦୀପ୍ତିମନ୍ତ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ ।

ଏକ ଉନ୍ନତ ପରିକଳ୍ପନା, ଶୈଳ୍ପିକ ସମ୍ପଦ ଓ ସୁରୁଚିର ଭାବ ବିଭବରେ ବିମଣ୍ଡିତ ଭାଗବତକୁ ଓଡ଼ିଆରେ ଅନୁବାଦ ତଥା ଅନୁସରଣ କଲାବେଳେ ଜଗନ୍ନାଥ ଦାସ ଜଣେ ସୁଦକ୍ଷ କଳାକାରର ଚକ୍ଷୁରେ ତତ୍କାଳୀନ ଓଡ଼ିଆ ଭାଷା ଓ ସାହିତ୍ୟର ଦୟନୀୟ ଅବସ୍ଥା ପ୍ରତି ଦୃଷ୍ଟି

ଉକ୍ଷେପ କରିଥିବାର ଅନୁଭୂତ ହୁଏ । ମହାଭାରତ ଓ ରାମାୟଣର ଶ୍ରୋତା ଥିଲେ ଦେଶର ନିରକ୍ଷର ଜନତା; କିନ୍ତୁ ଜଗନ୍ନାଥ ଦାସ ଏଇ ଜନତା ସହିତ ଦେଶର ପଣ୍ଡିତ ସମାଜକୁ ମଧ୍ୟ ଚକ୍ଷୁ ସମ୍ମୁଖରେ ରଖି ଭାଗବତ ରଚନା କରିଥିଲେ । ଫଳରେ ନିଜ ରଚନାଟିକୁ ସର୍ବଜନବୋଧ କରିବା ସଙ୍ଗେ ସଙ୍ଗେ ପଣ୍ଡିତ ସମାଜରେ ତାଙ୍କର ମର୍ଯ୍ୟାଦା କପରି ସୁରକ୍ଷିତ ହୋଇ ପାରିବ, ସେଥିପ୍ରତି ମଧ୍ୟ ସେ ଅଙ୍ଗୀବ ସଚେତନ ଥିଲେ । ଓଡ଼ିଆ ଭାଗବତର କାବ୍ୟସୁଲଭ ପରିକଳ୍ପନାର ପରିସର ଭିତରେ ଭାଷାର ନବୀକରଣ, ଭାବନିବେଦନର ସହଜ ପରିପାଟୀ ତଥା ଛନ୍ଦ-ଯୋଜନାର ଅଭିନବ ପ୍ରୟାସ ଜଣେ ସାର୍ଥକନାମା କଳାକାରର ରସବୋଧ ହେତୁ ସମ୍ଭବପର ହୋଇଥିଲା ବୋଲି ମନେହୁଏ । ଓଡ଼ିଆ ଭାଗବତ, ତେଣୁ, ସାମ୍ପ୍ରଦାୟିକ ମତବାଦ ଦୃଷ୍ଟିରୁ କେବଳ ଏକ ସାଧାରଣ ଧର୍ମଗ୍ରନ୍ଥ ନୁହେଁ, ତାହା ମଧ୍ୟ ଓଡ଼ିଆ କାବ୍ୟିକ ପରମ୍ପରାର ଆଦ୍ୟ ପ୍ରତିଷ୍ଠାତା । 'ତେଲି ଭାଗବତ'ର ଦୁର୍ନାମ ଏହାର ମହନୀୟ ସାରସ୍ୱତ ବିଭବକୁ ମଳିନ କରିଦେବାରେ କେବେ ସମର୍ଥ ହୋଇନାହିଁ ।

ଅନ୍ୟ ସମସ୍ତ ପୁରାଣ ଯେକୌଣସି ଲୋକ ଯେକୌଣସି ଅବସ୍ଥାରେ ପଢ଼ିପାରେ, ଶୁଣିପାରେ ମଧ୍ୟ; କିନ୍ତୁ ପାଠକ ଓ ଶ୍ରୋତା ଉଭୟେ ଶୁଦ୍ଧଚିତ୍ତ ସମ୍ପନ୍ନ ନ ହେଲେ ଭାଗବତ ପଢ଼ାପିବା ବିଧିସମ୍ମତ ନୁହେଁ । ଚିତ୍ତର ଶୁଦ୍ଧତା ଉପରେ ଏପରି ପ୍ରାଧାନ୍ୟ ଦେବା ଭାଗବତ ପାରାୟଣର ସର୍ବପ୍ରଥମ ଆବଶ୍ୟକତା ଥିବାରୁ ଏ ପୁରାଣରେ ଭକ୍ତିଧର୍ମ କପରି ପ୍ରତିଷ୍ଠିତ ତାହାହିଁ ସୂଚିତ ହେଉଛି ମାତ୍ର । ନିଜର ଆରାଧ୍ୟ ଦେବତାଙ୍କ ପାଖରେ ଆତ୍ମସମର୍ପଣ କରି ତାଙ୍କ ନାମକୀର୍ତ୍ତନ ଓ ଶ୍ରବଣରେ ତନ୍ମୟ ହେବା ତଥା ଆତ୍ମାକୁ ପରମାତ୍ମାଙ୍କଠାରେ ବିଲୀନ କରିଦେବା ଭକ୍ତି-ଧର୍ମର ଚରମ ନିଦର୍ଶନ । ଏଇ ଆତ୍ମତନ୍ମୟତାର ପରିପୂର୍ଣ୍ଣ ସାର୍ଥକତା ପ୍ରତିପାଦନ ଦିଗରେ ଭାଗବତର ସ୍ୱତଃସ୍ଫୂର୍ତ୍ତ ଭାଷା, ମୁଗ୍ଧିତ ଭାବ ଓ ଲଳିତ ଛନ୍ଦ ଏକ ଏକ ଗୌରବମୟ ଭୂମିକା ଗ୍ରହଣ କରିଥିବାର ଦେଖିବାକୁ ମିଳେ । ଜନତା ମଧ୍ୟରେ ଭକ୍ତିଭାବ ପ୍ରଚାର କରିବା ଯେଉଁ ଗ୍ରନ୍ଥର ଥିଲା ମୌଳିକ ଲକ୍ଷ୍ୟ, ଉପରୋକ୍ତ ତିନୋଟି ସାହିତ୍ୟିକ ଆଭିମୁଖ୍ୟ ସେଇ ଲକ୍ଷ୍ୟ ପରିପୂରଣର ଥିଲେ କେବଳ ଉପାୟ ମାତ୍ର ।

ଭକ୍ତି ଗ୍ରନ୍ଥ ଭାଗବତର ବିଷୟ ପରିବେଷଣ କୌଶଳ ଏକ ସ୍ୱତନ୍ତ୍ର ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ନଅଟି ଅକ୍ଷରର ଏକ କ୍ଷୁଦ୍ର ପରିସର ଭିତରେ ଫୁଟି ଉଠିଥିବା ଭାବକୁ ଶିକ୍ଷିତ ଓ ଅଶିକ୍ଷିତ ଯେକୌଣସି ଲୋକ ଥରେ ଶୁଣି ମନେ ରଖିପାରିବା ଅତିଶୟ ସହଜ । ଏ ଗ୍ରନ୍ଥର ପ୍ରତ୍ୟେକ ପଦ ଗଦ୍ୟର ଭାବ-ଦ୍ୟୋତକ ଥିବାରୁ ଶ୍ରୋତା ଶୁଣିଥିବା ଭାବକୁ ସହଜରେ ମନେ ରଖି ତା'ର ଯଥାର୍ଥ ତାତ୍ପର୍ଯ୍ୟ ଉପଲବ୍ଧି କରିବା ତଥା ଆଲୋଚନା କରିବାର ସୁବିଧା ପାଉଥାଏ । ଅଦ୍ଭୁତ ଭାବର ଏପରି ଗଦ୍ୟର ମନନ ଫଳରେ ଶ୍ରୋତା ଭଗବାନଙ୍କୁ ସ୍ମରଣ ତଥା ତାଙ୍କ ଚରଣ କମଳରେ ତନ୍ମୟ ହୋଇ ରହିବାରେ ସମର୍ଥ ହୋଇଥାଏ । ଟିକିଏ ଦୃଷ୍ଟିରୁ ଦେଖିଲେ ଜଣାଯିବ ଯେ ଭାଗବତ ହେଉଛି ଏକ ଧ୍ୟାନର ସାହିତ୍ୟ । ଶ୍ରୋତାର ଧ୍ୟାନାନୁକୂଳ ହେବା ଦିଗରେ ଯାହା ଯାହା ଏକାନ୍ତ ଆବଶ୍ୟକ, ସେ ସବୁ ଏହାର ପାଠବେଳେ ଅନୁସୃତ ହୋଇଥାଏ । ଭାଗବତକୁ ଧୀରେ ଧୀରେ ପଢ଼ିବା, ସମୟ ବିଶେଷରେ ସମସ୍ତ ଶ୍ରୋତାଙ୍କର ଏକସ୍ୱରରେ କୌଣସି ନିର୍ଦ୍ଦିଷ୍ଟ ପଦକୁ ଉଚ୍ଚ ସ୍ୱରରେ ଆବୃତ୍ତି କରିବା-ଧ୍ୟାନ ନିମଗ୍ନ ହେବା ପାଇଁ ଉଦ୍ଦିଷ୍ଟ ଏ ପ୍ରକାର ପଠନଶୈଳୀର ପଶ୍ଚାତ୍ତରେ ଭକ୍ତର ଯେଉଁ ଭାବମୂର୍ତ୍ତିଟି ଫୁଟିଉଠେ ସେଥିରେ ଭାଗବତର ଭାଷା, ଭାବ ଓ ଛନ୍ଦର ଭୂମିକା ଲୁଚିଯିବା ଆଦୌ ସମ୍ଭବ ନୁହେଁ ।

ବ୍ୟକ୍ତି ତଥା ସମାଜର ନୈତିକ ଜୀବନକୁ ପ୍ରେମ ଓ ଭକ୍ତିର ବନ୍ଧନରେ ଶୃଙ୍ଖଳିତ କରି ତାକୁ ଏକ ସମୁନ୍ନତ ଆଧ୍ୟାତ୍ମିକ ଦିଗ୍‌ବଳୟ ପ୍ରତି ଆକର୍ଷଣ କରିବା ଓଡ଼ିଆ ଭାଗବତ-ଜନ୍ମର ପରମ ସାର୍ଥକତା । ଏଇ ଆଧ୍ୟାତ୍ମିକ ଜୀବନର ସଙ୍ଗଠନ ଓ ସଂରକ୍ଷଣ ତାର ଭାଷା-ଭାବ-ଛନ୍ଦର ମଧ୍ୟର ସମନ୍ୱୟ ମାଧ୍ୟମରେ ଯେପରି ସମ୍ଭବପର ହୋଇଥିଲା ତାହା ଅନ୍ୟ ପୁରାଣ କ୍ଷେତ୍ରରେ ଏକାନ୍ତ ବିରଳ କହିଲେ ଚଳେ । ଭାଗବତର ଜନପ୍ରିୟତା ଜଗନ୍ନାଥ ଦାସଙ୍କ ଏଇ କାବ୍ୟିକ ସମନ୍ୱୟର ଏକ ଅମୃତମୟ ପରିଣତି ବ୍ୟତୀତ ଅନ୍ୟ କିଛି ନୁହେଁ । କାବ୍ୟ-ଧର୍ମର ପୃଷ୍ଠଭୂମି ଉପରେ ଭକ୍ତି ଭାବର ଏପରି ସଫଳ ପ୍ରତିଷ୍ଠା ସମଗ୍ର ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟ ସାଧାରଣ କୃତିତ୍ୱ ।

ଭାଗବତର ପଶ୍ଚାତ୍ତରେ ଜଗନ୍ନାଥ ଦାସଙ୍କର ଯେଉଁ ଭାବ-ମୂର୍ତ୍ତିଟି ଫୁଟି ଉଠିଛି ସେଥିରେ ଭକ୍ତି ଓ ସାହିତ୍ୟିକ କଳା ପ୍ରଧାନ ସ୍ଥାନ ଅଧିକାର

କରିଥିଲେ ହେଁ 'ଯୋଗ'ର ଭୂମିକା ଆଦୌ ଉପେକ୍ଷଣୀୟ ନୁହେଁ । ଏହି ଯୋଗ ଥିଲା ଭକ୍ତି ପ୍ରତିଷ୍ଠାର ଏକ ସାଧନ-ପ୍ରଣାଳୀ ମାତ୍ର । ଗ୍ରନ୍ଥରେ ଯୋଗର ପ୍ରାଧାନ୍ୟ ନ ଥିବାରୁ ଏଥିରେ ଏହାକୁ ସମ୍ୟକ୍ ଉପଲବ୍ଧି କରିପାରିବା ସମ୍ଭବ ନୁହେଁ । ଚୈତନ୍ୟ ଭିବାକର ଦାସଙ୍କ 'ଜଗନ୍ନାଥ-ଚରିତାମୃତ' ଜଗନ୍ନାଥ ଦାସଙ୍କ ଯେଉଁ ଭକ୍ତିଯୋଗ ସାଧକର ଭାବମୂର୍ତ୍ତି ଅଙ୍କନ କରିଛି ତାହା ଭାଗବତର ଅନ୍ତର୍ଧ୍ୟାନ ଭିତରେ ଉପଲବ୍ଧି କରିବା ସର୍ବାଦୌ ସମ୍ଭବପର । ଜଗନ୍ନାଥ ଦାସଙ୍କ ନାମରେ ପ୍ରଚଳିତ ଆଜିର ବହୁ ଗ୍ରନ୍ଥରେ ଯୋଗ-ସାଧନର ଯେଉଁ ଚିତ୍ର ଦେଖିବାକୁ ମିଳେ, ତା'ର ଅନୁରୂପ ଛବି ଓଡ଼ିଆ ଭାଗବତରେ ଉପଲବ୍ଧ ହୁଏ ନାହିଁ । ସେଥିପାଇଁ ମନେହୁଏ ମହାଦେବ ଦାସ ଦ୍ୱାଦଶ ସ୍କନ୍ଧରେ ବିଶେଷତଃ ଦ୍ୱାରିକା ଦାସ ତ୍ରୟୋଦଶ ସ୍କନ୍ଧରେ 'ଯୋଗ' ଉପରେ ଅଧିକ ପ୍ରାଧାନ୍ୟ ଦେଇ ଜଗନ୍ନାଥ ଦାସଙ୍କ ପରିକଳ୍ପିତ ଧର୍ମ-ଧାରଣାକୁ ଲୋକରେ ପ୍ରଚାର କରିବାକୁ ଯତ୍ନଶୀଳ ହୋଇଛନ୍ତି । ମହାଦେବ ଦାସଙ୍କ ଅନୁବାଦର ସ୍ୱାତନ୍ତ୍ର୍ୟ ଉପଲବ୍ଧି ପାଇଁ ବେଦର ଉତ୍ପତ୍ତି ଓ ବିଭାଜନ ସମ୍ପର୍କରେ ଶୌନକ ମୁନିଙ୍କ ପ୍ରଶ୍ନରେ ସୂତ ଯାହା କହିଥିଲେ ତାହାର ପଦ୍ୟଚୟ ଆମେ ଏଠାରେ ଉଦ୍ଧାର କରି ଦେଉଛୁଁ ।

"ଯେଉଁ ସମୟରେ ପରମେଷ୍ଠୀ ବ୍ରହ୍ମା (ପୂର୍ବ ସୃଷ୍ଟିର ଜ୍ଞାନ ସମ୍ପାଦନ ପାଇଁ) ଏକାଗ୍ରଚିତ୍ତ ଥିଲେ, ସେତେବେଳେ ନିଜ ହୃଦୟାକାଶରୁ (କଣ୍ଠ-ତାଳୁ ଆଦି ସ୍ଥାନର ସଂଘର୍ଷ ବ୍ୟତିରେକ) ଏକ ଅତ୍ୟନ୍ତ ବିଚକ୍ଷଣ ଅନାହତ ନାଦ ପ୍ରକାଶ କରିଥିଲେ । ନିଜ ମନୋବୃତ୍ତି ନିରୋଧ କଲେ ଜୀବ ମଧ୍ୟ ଏଇପରି ନାଦ ଶ୍ରବଣ କରିଥାଏ । ହେ ଶୌନକ । ଯୋଗୀମାନେ ଏହି ଅନାହତ ନାଦକୁ ଶ୍ରବଣକରି ଏହାର ପ୍ରଭାବରୁ ଅନ୍ତଃକରଣର ଦ୍ରବ୍ୟ (ଅଧିଭୂତ) କ୍ରିୟା (ଅଧ୍ୟାତ୍ମ) ଏବଂ କାରକ (ଅଧିଦୈବ) ରୂପକ ମଳକୁ ନଷ୍ଟ କରିଦେଇଥାନ୍ତି । ଫଳରେ (ଏମାନେ ପରମ ଗତିରୂପ ମୋକ୍ଷଲାଭ କରିବାରୁ) ଏମାନଙ୍କର ଜନ୍ମ ମୃତ୍ୟୁ ରୂପକ ସଂସାର-ଚକ୍ରରୁ ମୁକ୍ତି ପାଇଥାନ୍ତି । ଏହି ଅନାହତ ନାଦରୁ ଅକାର, ଉକାର, ମକାର ରୂପ ତିନମାତ୍ରା ଯୁକ୍ତ ଓଁକାରର ପ୍ରକାଶ ହୁଏ । ଏହି ଓଁକାର ଶକ୍ତିବଳରେ ପ୍ରକୃତି ଅବ୍ୟକ୍ତରୁ ବ୍ୟକ୍ତ ରୂପରେ ପରିଣତ ହୋଇଯାଏ । ଓଁକାର ସ୍ୱୟଂ

ଅବ୍ୟକ୍ତ ଓ ଅନାଦି, ଏହା ପରମାତ୍ମା ସ୍ୱରୂପ ହେବାରୁ ସ୍ୱୟଂ ପ୍ରକାଶ ମଧ୍ୟ। ଯେଉଁ ପରମବସ୍ତୁ ଭଗବାନ ବ୍ରହ୍ମ ବା ପରମାତ୍ମା ନାମରେ ଅଭିହିତ, ତାହାଙ୍କ ସ୍ୱରୂପ-ବୋଧ ଏହି ଓଁକାରଦ୍ୱାରା ସିଦ୍ଧ ହୋଇଥାଏ। ଯେତେବେଳେ ଶ୍ରବଣେନ୍ଦ୍ରିୟର ଶକ୍ତି ଲୁପ୍ତ ହୋଇଯାଏ, ସେତେବେଳେ ମଧ୍ୟ ଓଁକାରର ସମସ୍ତ ଅର୍ଥପ୍ରକାଶ କରୁଥିବା ସ୍ଫୋଟତତ୍ତ୍ୱକୁ ଯେ ଶୁଣିଥାଏ, ସେ ପରମାନନ୍ଦଙ୍କ ବିଶୁଦ୍ଧ ସ୍ୱରୂପ ଉପଲବ୍ଧି କରିଥାଏ। ଏହି ଓଁକାର ପରମାତ୍ମାଙ୍କ ହୃଦୟାକାଶରୁ ପ୍ରକାଶ ପାଇ ବେଦରୂପା ବାଣୀରୂପରେ ଅଭିବ୍ୟକ୍ତ ହୋଇଥାଏ। ଓଁକାର ହିଁ ନିଜ ଆଶ୍ରୟଭୂତ ପରମାତ୍ମା ପରଂବ୍ରହ୍ମଙ୍କର ସାକ୍ଷାତ୍ ବାଚକ, ଓଁକାର ହିଁ ସମ୍ପୂର୍ଣ୍ଣ ମନ୍ତ୍ର, ଉପନିଷଦ ଏବଂ ବେଦର ସନାତନ ବୀଜ। ହେ ଶୌନକ ! ଓଁକାରର ତିନିବର୍ଣ୍ଣ, ଯଥା—ଅ, ଉ ମ। ଏହି ତିନିବର୍ଣ୍ଣ ହେଉଛନ୍ତି ସତ୍ତ୍ୱ, ରଜ ଓ ତମ ତିନି ଗୁଣ, ଋକ୍, ଯଜୁଃ, ସାମ ତିନିବେଦ, ଭୂଃ, ଭୁବଃ, ସ୍ୱଃ ତିନି ଅର୍ଥ (ବ୍ୟାହୃତି) ଓ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ତିନି ବୃତ୍ତି ରୂପରେ ତିନି ତିନି ସଂଖ୍ୟାର ଭାବକୁ ଧାରଣ କରିଥାନ୍ତି।" (ଶ୍ରୀମଦ୍‌ଭାଗବତ ୧୨ ସ୍କନ୍ଧ ୩୭-୪୨ ଶ୍ଳୋକ)।

ମୂଳର ଏହି ଅଂଶକୁ ଭାଗବତର ଅନୁରୂପ ଅଂଶ ସହିତ ମିଳାଇ ଅନୁଧ୍ୟାନ କରନ୍ତୁ।

"ପ୍ରଥମେ ବ୍ରହ୍ମା ଯେତେବେଳେ । ଯୋଗଧ୍ୟାନରେ ନିଦ୍ରା ଗଲେ ॥
ନିରାକାର ବ୍ରହ୍ମେ ଲଗାଇ । ବସେ ସମାଧି ଲୟ ପାଇ ॥
ତାଙ୍କ ହୃଦୟରୁ ପ୍ରଥମ । ଆକାଶ ଶୂନ୍ୟରୂପୀ ନାମ ॥
ନାଦ ସେ ଜନମ ହୋଇଣ । ତା ପ୍ରଭୁ ବିନ୍ଦୁ ଜାତ ପୁଣ ॥
ସେ ବିନ୍ଦୁ ନିରାକାର ବ୍ରହ୍ମ । ପରମବ୍ରହ୍ମ ପରଂ ଧାମ ॥
ଯାହାକୁ କଲେ ଉପାସନା । ଆତ୍ମ ନିର୍ମଳ ମହାତ୍ମା ॥
ସଂସାର ଜନ୍ମ ମରଣାଦି । ତରେ ନିର୍ବାଣ ଭକ୍ତ ଭେଦି ॥
ବିନ୍ଦୁ ତ୍ରିଗୁଣାତ୍ମକ ହୋଇ । ବ୍ରହ୍ମା ବିଷ୍ଣୁ ରୁଦ୍ର ବୋଲାଇ ॥
ତ୍ରିରୂପ ଏକାକ୍ଷର ବ୍ରହ୍ମ । ଅବ୍ୟକ୍ତରୂପୀ ସ୍ୱୟଂଧାମ ॥
ସେ ଏକାକ୍ଷର ତ୍ରିସ୍ୱର । ବିନ୍ଦୁ ମଧ୍ୟ ଅର୍ଦ୍ଧମାତ୍ରାର ॥
ଯୋଗମାୟା ସ୍ୱରୂପୀ ସେହି । ସେ ମାୟା ତ୍ରିଗୁଣ ସର୍ଜଇ ॥

ପଞ୍ଚମାତ୍ରା ଯେ ଏକାକ୍ଷର । ଆକାର ଉକାର ମକାର ॥
ଲକାର ବକାର ଏ ପଞ୍ଚ । ଏ ପଞ୍ଚମାତ୍ରା ଏକ ସଞ୍ଚ ॥
ଅର୍ଦ୍ଧମାତ୍ରା ବିନ୍ଦୁ ସ୍ୱରୂପ । ଏ ବାସୁଦେବ ରସରୂପ ॥
ଏକାକ୍ଷର ନିର୍ଗୁଣ ହୋଇ । ପଞ୍ଚାତ୍ମା ପ୍ରଳୟ ସର୍ଜଇ ॥
ଯେ ଜାଣି ନମସ୍ତେ ଭଜନ୍ତି । ବ୍ରହ୍ମରେ ଲୀନ ସେ ହୁଅନ୍ତି ॥
ଏ ବ୍ରହ୍ମ ଶବଦରେ ନାଦ । ଯେ ଜନ କରେ ଆତ୍ମାଭେଦ ॥
ଅର୍ଦ୍ଧରାତ୍ରେ ଏକାନ୍ତେ ବସି । ଯୋଗଧାରଣା ଭାବେ ରସି ॥
ଆତ୍ମା ସୁଷୁପ୍ତି ଅବସ୍ଥାରେ । ଲୟ ଶବଦ ନିରାଧାରେ ॥
ତେବେ ସେ ଶବଦ ଶୁଣଇ । ଶୁଣିଲେ ସଂସାରୁ ତରଇ ॥
ଶୂନ୍ୟ ଦୃଷ୍ଟିରେ ମନ ଦେଇ । ଶରୀର ଚେଷ୍ଟା କରୁନାହିଁ ॥
ତେବେ ବ୍ରହ୍ମ ଦର୍ଶନ ପାଇ । ଶାନ୍ତ ସମ ଦୃଷ୍ଟି ଭଜଇ ॥
ମନ ବଚନେ ଅଗୋଚର । ସେ ବ୍ରହ୍ମ ଥାଇ ଅନ୍ତଦୂର ॥
ଅବ୍ୟକ୍ତ ଆକାଶ ସ୍ୱରୂପୀ । ସେ ଥାଇ ସର୍ବଭୂତେ ବ୍ୟାପୀ ॥
ଆକାଶ ହୃଦୟ ମଧ୍ୟରେ । ଜୀବ ପରମ ପରସ୍ପରେ ॥
ସେ ପୁଣି ଭ୍ରୂରୁ ମଧ୍ୟେ ସ୍ଥାନ । ଶୁଦ୍ଧ ସ୍ଫଟିକ ସ୍ୱରୂପେଣ ॥
ପରମାତ୍ମା ରୂପେ ପ୍ରକାଶ । ଗଗନେ ବିଦ୍ୟୁ ଜ୍ୟୋତ୍ସ୍ନା ଭାସ ॥
ସେ ପୁଣି ଭ୍ରୂରୁମଧ୍ୟେ ଉର୍ଦ୍ଧ୍ୱେ । ଦ୍ୱାଦଶାଙ୍ଗୁଳ ପରେ ଶୁଦ୍ଧେ ॥
ସହସ୍ରଦଳ କମଳରେ । ନାନା ରସାବ୍ଧି ଲୀଳା କରେ ॥
ସେ ମଧ୍ୟେ ନିରାକାର ବ୍ରହ୍ମ । ବାଲୁକା ସମାନ ସେ ଧାମ ॥
ଜ୍ୟୋତିର୍ମୟ ସୂକ୍ଷ୍ମ ପ୍ରକାଶ । ତୀକ୍ଷ୍ଣ ବାଳାଗ୍ର ସଦୃଶ ॥
ପରମ ପରମାତ୍ମା ବୋଲନ୍ତି । ସେ ଅଂଶୁ ଅବତାର ହୋନ୍ତି ॥
ହୃଦ ପଦ୍ମରେ ଜୀବଆତ୍ମା । ଅଙ୍ଗୁଠି ମାତ୍ରେ ରୂପ ସୂକ୍ଷ୍ମା ॥
ଦ୍ୱିଭୁଜେ ଶଙ୍ଖଚକ୍ର ଧର । ଅଶେଷ ଜୀବରେ ପ୍ରଚର ॥
ପ୍ରଫୁଲ୍ଲ ପଦ୍ମ ପ୍ରାୟେ ମୁଖ । ପୀତାମ୍ବର ଧାରୀ ସୁରେଖ ॥
ଅଷ୍ଟଦଳ କମଳପରେ । ଅଷ୍ଟଶକ୍ତି ଚଉପାଶରେ ॥
ଶୁଦ୍ଧ ସୁବର୍ଣ୍ଣେ ପ୍ରାୟେ ଆଭା । ମୃହାସ ପ୍ରାୟ ମୁଖ ଶୋଭା ॥
ସପ୍ତଶିଖା ମୁକୁଟମଣି । ରତ୍ନ ଜଡ଼ିତ ଶୋଭା ଜିଣି ॥
ସେ ଜୀବ ଆତ୍ମା ସେ ପୁରୁଷ । ସର୍ବଜୀବେ ପୂରି ଅଭ୍ୟାସ ॥

ମାୟାରେ ରଜ ତମ ଗୁଣେ । ଆବୋରିଛନ୍ତି ଅନୁକ୍ଷଣେ ॥
ସେ ଜୀବାତ୍ମା ହିଁ ଈଶ୍ୱ ରୂପ । ପରମାତ୍ମା ଜ୍ୟୋତି ସ୍ୱରୂପ ॥
ସତ୍ତ୍ୱ ଗୁଣରେ ଯୁକ୍ତ ସେହି । ଶୁଦ୍ଧ ଶୁକ୍ଳ ସ୍ୱରୂପ ବହି ॥
ଯେ ଭ୍ରୂରୁ ମଧ୍ୟେ ଛନ୍ତି ବସି । କୁଣ୍ଠ ବୈକୁଣ୍ଠ ନାମ ଭାଷି ॥
ଅର୍ଦ୍ଧମାତ୍ରା ତଳେ ଅଛନ୍ତି । ଏଠାରେ ନିରାକାର ସ୍ଥିତି ॥
ବ୍ରହ୍ମ ପ୍ରକାଶ ହୋଇଛନ୍ତି । ପଞ୍ଚ ସ୍ୱରୂପ ବ୍ରହ୍ମ ଜ୍ୟୋତି ॥
ଏକାକ୍ଷର ବ୍ରହ୍ମ ପ୍ରଣବ । ଶବଦରୂପୀ ହଂସଜୀବ ॥
ତାଙ୍କର ତହୁଁ ଉତପନ୍ନ । ଅକାରାନ୍ତ ଚଉଦ ବର୍ଣ୍ଣ ॥
ଚଉଦ ସ୍ୱର ଏ ବୋଲନ୍ତି । ଏ ଭାବେ ଅକ୍ଷରର ଗତି ॥

(ଭାଗବତ ୧୨ଶ ସ୍କନ୍ଧ ୬ଷ୍ଠ ଅଧ୍ୟାୟ)

ଏଥିରେ ଅକ୍ଷରମାନଙ୍କ ବିକାଶର ଯେଉଁ ଚିତ୍ର ଦିଆଯାଇଛି ତାହା ମୂଳର ଅନୁସରଣ ହେଲେହେଁ କେତେକ ବ୍ୟତିକ୍ରମ ମଧ୍ୟ ଅଛି । ଆମେ ଉପରେ ଯେଉଁ ଦୁଇଟି ଉଦ୍ଧୃତି ଦେଇଛୁ, ତାହାର ତୁଳନାମୂଳକ ଆଲୋଚନା ଦେଖନ୍ତୁ ।

ମୂଳରେ ଥିବା ପ୍ରଥମ ଦୁଇଟି ଶ୍ଳୋକର ଅନୁବାଦ ହେଉଛି ଓଡ଼ିଆର ପ୍ରଥମ ସାତୋଟି ପଦ । ଏହାହିଁ ଗୋଟିଏ ଦିଗରୁ ଏକ ବିଶ୍ୱସ୍ତ ଅନୁବାଦ । ଓଡ଼ିଆର ଅବଶିଷ୍ଟାଂଶ ମୂଳର ଅନୁବାଦ ନୁହେଁ; ତାହା ବରଂ ଅନୁସରଣମୂଳକ ବ୍ୟତିକ୍ରମର ନିଦର୍ଶନ । ଏହା, ପୁଣି ଦୁଇଭାଗରେ ବିଭକ୍ତ । ଯଥା:

(କ) ମୂଳରେ ଥିବା "ଓଁକାର ପରମାତ୍ମା ପରଂବ୍ରହ୍ମ ସାକ୍ଷାତ ବାଚକ" ଉକ୍ତିଟି ଯୋଗ ସୂତ୍ରର ସମାଧିପାଦ ୨୭ ସୂତ୍ରର ପ୍ରତିଧ୍ୱନି ମାତ୍ର । ଓଡ଼ିଆରେ ଏହାର ଆକ୍ଷରିକ ଅନୁବାଦ ନ ଥିଲେ ହେଁ ଏହି ଭାବର ସ୍ପଷ୍ଟୀକରଣଟି ଓଡ଼ିଆ କବିତାରେ ରୂପାୟିତ ହୋଇଛି । ପ୍ରଣବ ଯେଉଁ ପରଂବ୍ରହ୍ମଙ୍କର ବାଚକ, ସେ ପରମାତ୍ମାଙ୍କର ସ୍ୱରୂପ ଦୁଇଟି । ଯଥା :—ସାକାର ଓ ନିରାକାର । ସାକାର ରୂପ ଦ୍ୱିଭୁଜ-ଶଙ୍ଖ ଚକ୍ରଧାରୀ ରୂପେ ପ୍ରକଟିତ । ନିରାକାର ରୂପ ନିରାକାରବ୍ରହ୍ମ, ଜ୍ୟୋତିର୍ମୟ ସୂକ୍ଷ୍ମ ରୂପରେ ଅଭିବ୍ୟକ୍ତ । ପରମାତ୍ମାଙ୍କ ଏ ଉଭୟବିଧ ରୂପର ବିଶ୍ଳେଷଣ ମୂଳ କବିତାଂଶର ଏକ ବିଶଦୀକରଣ ବ୍ୟତୀତ ଅନ୍ୟ

କରୁଛୁ ନାହିଁ । ମୂଳରେ ପ୍ରଣବର ମାତ୍ରା ସଂଖ୍ୟା ତିନ, ଅନୁବାଦରେ ଏ ସଂଖ୍ୟା ପାଞ୍ଚରୂପେ ଯାହା ଗୃହୀତ ତାହା ଏକ ପ୍ରଧାନ ବ୍ୟତିକ୍ରମ୍ ।

(ଝ) ସଂସ୍କୃତରେ ପ୍ରଣବ ବା ଓଁକାରର ଥିଲ ତିନୋଟି ମାତ୍ରା; ଯଥା:— ଅ, ଉ, ମ । ଓଡ଼ିଆରେ ଲକାର ଓ ବକାର ମିଶି ଏହା ପଞ୍ଚମାତ୍ରା ରୂପେ ପରିକଳ୍ପିତ । ତନ୍ତ୍ରମତରେ ଲକାରର ଅର୍ଥ ନାଦ ବା ଅର୍ଦ୍ଧମାତ୍ରା ଓ ବକାରର ଅର୍ଥ ବିନ୍ଦୁ ବ୍ରହ୍ମ । ତେଣୁ ଏଇ ପଞ୍ଚମାତ୍ରା ହେଉଛି ଅ, ଉ, ମ, ବିନ୍ଦୁ ଓ ଅର୍ଦ୍ଧମାତ୍ରା । ଏଠାରେ ମନେରଖିବା ଉଚିତ୍ ଯେ ଏଇ ପଞ୍ଚମାତ୍ରା ବିଶିଷ୍ଟ ପ୍ରଣବର ନାମ ହେଉଛି ଦୀର୍ଘ ସୂକ୍ଷ୍ମ ପ୍ରଣବ; କିନ୍ତୁ ତିନମାତ୍ରାର ପ୍ରଣବର ନାମ ହ୍ରସ୍ୱ ସୂକ୍ଷ୍ମ ପ୍ରଣବ ହେଉଛି ଓଡ଼ିଆ ଯୋଗ-ସାହିତ୍ୟର ଏକ ପ୍ରଧାନ ବୈଶିଷ୍ଟ୍ୟ । ଅନୁବାଦ ବେଳେ ସାମାନ୍ୟ ବ୍ୟତିକ୍ରମ ମାଧ୍ୟମରେ ମୂଳର ସମସ୍ତ ସ୍ୱରୂପରେ କିପରି ନବୀନତା ସମ୍ପାଦିତ ହୋଇପାରେ ଏହା ହେଉଛି ତା'ର ଏକ ପ୍ରକୃଷ୍ଟ ଉଦାହରଣ ।

ଓଡ଼ିଆର ଅଷ୍ଟମ ପଦଠାରୁ ଶେଷ ପର୍ଯ୍ୟନ୍ତ ଯାହା ବର୍ଣ୍ଣିତ କରିଯାଇଛି ତାହା ପ୍ରଣବ-ସାଧନାର ଏକ ସଂକ୍ଷିପ୍ତ ଚିତ୍ର । ତାହା ମୂଳତଃ ଯୋଗ-ଶାସ୍ତ୍ରର ଅନ୍ତର୍ଗତ । ଏଥିରେ ମୂଳର ଅନୁସରଣ ନବୀନ ରୂପରେ ଏକ ମୌଳିକ ରୂପ-ବିଭବରେ ବିମଣ୍ଡିତ । ମୂଳ ଶ୍ଳୋକଗୁଡ଼ିକର ଆକ୍ଷରିକ ଅନୁବାଦ ଓଡ଼ିଆରେ ନ ଥିଲେ ସୁଦ୍ଧା ମୂଳର ଭାବ-ଧାରା କେଉଁଠି ବ୍ୟାହତ ହୋଇଛି ବୋଲି ମନେହୁଏ ନାହିଁ । ବରଂ ଯୋଗ ସାଧନାର ଏକ ପୂର୍ଣ୍ଣ ବିବରଣୀ ଦେଇ ମୂଳକୁ ଅଧିକ ଶ୍ରୀସମ୍ପନ୍ନ କରାଯାଇଛି ।

ଓଡ଼ିଆ ଭାଗବତର ଉଦ୍ଧୃତାଂଶ ତାନ୍ତ୍ରିକ ଶବ୍ଦ ବ୍ରହ୍ମ ଭାବନା ଦ୍ୱାରା ପ୍ରଭାବିତ ହୋଇ ଏହାକୁ ମୂଳଠାରୁ ସଂପୂର୍ଣ୍ଣ ପୃଥକ୍ ରୂପ ପ୍ରଦାନ କରିଥିବାର ଅନୁଭୂତ ହୁଏ । ତାନ୍ତ୍ରିକ ନାଦ-ବ୍ରହ୍ମର ପଞ୍ଚମାତ୍ରା-କଳ୍ପନା ହେତୁ ଏଇ ଭିନ୍ନତା ଅଧିକ ସ୍ପଷ୍ଟ ହୋଇ ପଡ଼ୁଛି । ବୈଦିକ ପ୍ରଣବର ଅ, ଉ, ମ ଓ ଅର୍ଦ୍ଧମାତ୍ରା ପାଇଁ ଚିତ୍ତବୃତ୍ତିର ଚାରି ଅବସ୍ଥା ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ ଏବଂ ଏ ଚାରିଙ୍କ ପାଇଁ ଚାରିବେଦ ନିର୍ଦ୍ଦିଷ୍ଟ ହୋଇଥିବାର ଦେଖିବାକୁ ମିଳେ ।

ଏହାହିଁ ବୈଦିକ ହ୍ରସ୍ୱ-ପ୍ରଣବ; କିନ୍ତୁ ତାନ୍ତ୍ରିକ ସାଧନାରେ ଏ ସ୍ୱରମାନ ସହ ବିନ୍ଦୁ ମିଳିତ ହେବାରୁ ଧ୍ୟାନର ପଞ୍ଚମ ଅବସ୍ଥା ତୁରୀୟାତୀତ ଗୃହୀତ ହୋଇଥିଲା । ଏହି ପଞ୍ଚମ ଅବସ୍ଥା ସହିତ ସାମିଲ କରିବା ପାଇଁ ସ୍ୱର ବେଦ ପରେ ଅନ୍ୟ କୌଣସି ବେଦ ନ ଥିବାରୁ ଓଡ଼ିଆ ସାଧକମାନେ ସମାଧିର ପଞ୍ଚମ ଅବସ୍ଥା ସୂଚାଇବା ପାଇଁ ଶିଶୁବେଦକୁ ଗ୍ରହଣ କରି ନେଇଥିଲେ । ସାର୍ଦ୍ଧପ୍ରଣବର ପଞ୍ଚମାତ୍ରା, ପଞ୍ଚ ଧ୍ୟାନାବସ୍ଥା ଓ ପଞ୍ଚବେଦର ଯେପରି ବିଶଦଚିତ୍ର ପରବର୍ତ୍ତୀ ସମୟର ଓଡ଼ିଆ ଯୋଗ-ସାହିତ୍ୟରେ ଆମେ ଦେଖିବାକୁ ପାଇଥାଉଁ, ମହାଦେବ ଦାସଙ୍କ ଏହି ଅନୁବାଦରେ ତା'ର ଆଭାସ ପରିଲକ୍ଷିତ ହୁଏ । ଜଗନ୍ନାଥ ଦାସ ଅନ୍ୟତ୍ର ବୈଦିକ ପ୍ରଣବର ତିନିମାତ୍ରାକୁ ଯେପରି ଅନୁବାଦ କରିଥିଲେ ଦିବାକର ଦାସ ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ ଦର୍ଶନ ଭିତରେ ପ୍ରଣବରୂପୀ ଜଗନ୍ନାଥଙ୍କୁ ପାଞ୍ଚମାତ୍ରାରେ ଫୁଟାଇ ଉଠାଉଥିଲେ ମାତ୍ର । ମହାଦେବ ଦାସଙ୍କ ପରି ପରବର୍ତ୍ତୀ ଲେଖକମାନେ ଦିବାକର ଦାସଙ୍କ ଭାବଧାରା କେବଳ ଅନୁସରଣ କରିଥିଲେ । ଓଡ଼ିଆ ଧର୍ମମୂଳକ ସାହିତ୍ୟକୁ ଏ ଦେଶର ସମାଲୋଚକମାନେ ବିଭିନ୍ନ ନାମରେ ନାମିତ କରିଥିଲେ ହେଁ ତା'ର ସାର୍ଥକ ନାମ ହେଉଛି ଯୋଗ-ସାହିତ୍ୟ । ଓଡ଼ିଆ ଯୋଗ ସାହିତ୍ୟର ଏକମାତ୍ର ନିର୍ଯ୍ୟାସ ହେଉଛି ସାର୍ଦ୍ଧ ପ୍ରଣବର ପରିକଳ୍ପନା ଓ ଶ୍ରୀଜଗନ୍ନାଥ ଦର୍ଶନ ଭିତରେ ସେହି ପରିକଳ୍ପନାର ସଫଳ ରୂପାୟନ—ଏହାହିଁ ପରବର୍ତ୍ତୀ ସମୟରେ ଏକ ବିଶିଷ୍ଟ ଆଧ୍ୟାତ୍ମିକ ଚେତନାର ପରିପ୍ରକାଶ ରୂପେ ଲୋକରେ ଗୃହୀତ ହୋଇଥିଲା । ପରମ୍ପରାରେ ପ୍ରଚଳିତ ପ୍ରଣବର ସାର୍ବମାନ୍ୟତା ସନ୍ଦର୍ଶନ କଲେ ଜଗନ୍ନାଥ ଦାସଙ୍କ ନାମରେ ଭଣିତା ଥିବା ଯୋଗମୂଳକ ଗ୍ରନ୍ଥମାନଙ୍କ ପୃଷ୍ଠାରେ ଆମେ ଜଗନ୍ନାଥ ଦାସଙ୍କ ଯେଉଁ ଭାବମୂର୍ତ୍ତିଟି ଦେଖିବାକୁ ପାଉ ତାହା ଭାଗବତକାର ଜଗନ୍ନାଥ ଦାସଙ୍କ ଭାବମୂର୍ତ୍ତିଠାରୁ ବିଶେଷ ପୃଥକ୍ ବୋଲି ଆଦୌ ଅନୁଭୂତ ହୁଏ ନାହିଁ ।



ବି. ଦ୍ର. ସହାୟକ ଗ୍ରନ୍ଥ—Studies in Epics and Purans of India, by A. D. Pusalker. ପ୍ରବନ୍ଧର ପ୍ରଥମାଂଶରେ ଥିବା ସଂସ୍କୃତ ପୁରାଣର ଉପାଦାନ ଏଇଥିରୁ ଗୃହୀତ ।

# ଜଗନ୍ନାଥ ଦାସ, ଶଙ୍କର ଦେବ ଓ ଶ୍ରୀଚୈତନ୍ୟ ମହାପ୍ରଭୁ

କୁମାରକବି ଅରକ୍ଷିତ ପ୍ରଧାନ

ସମୁଦ୍ର ସହିତ ମିଳିତ ହେବାପାଇଁ ସୃଷ୍ଟିରେ ଅସଂଖ୍ୟ ନଦୀ ପ୍ରବାହିତ ହେଲ ଭଳି, ପରମାତ୍ମାଙ୍କର ପରମ ଧାମରେ ପହଞ୍ଚିବା ପାଇଁ ଅସଂଖ୍ୟ ମତ ବା ପଥ ରହିଛି, ତାହା ମଧ୍ୟରୁ ତିନୋଟି ପବିତ୍ରତମ ପଥ ହେଉଛି ଯୋଗ, ଜ୍ଞାନ ଏବଂ ଭକ୍ତି । ମୁଖ୍ୟ ମୁଖ୍ୟ ନଦୀଗୁଡ଼ିକରେ ଅନେକ ଶାଖା ପ୍ରଶାଖା ନଦୀ ଥିବା ଭଳି ଯୋଗ, ଜ୍ଞାନ ଏବଂ ଭକ୍ତିମାର୍ଗରେ ଅନେକ ଶାଖା ଉପଶାଖା ମଧ୍ୟ ରହିଛି । ଏହି ତିନୋଟି ମାର୍ଗ ମଧ୍ୟରେ ଅପେକ୍ଷାକୃତ ଭକ୍ତିମାର୍ଗ ସମସ୍ତଙ୍କ ପାଇଁ ସହଜ ଏବଂ ସରଳ ।

ଜ୍ଞାନ ଏବଂ ଯୋଗମାର୍ଗ ଭଳି ଭକ୍ତିମାର୍ଗ ମଧ୍ୟ ବେଦରୁ ଜନ୍ମ ! ପ୍ରାଥମିକ ପର୍ଯ୍ୟାୟରେ ଭକ୍ତିମାର୍ଗକୁ ବେଦରୁ ଉଦ୍ଧାର କରି ନାରଦ, ଗର୍ଗ, ଶାଣ୍ଡିଲ୍ୟ ପ୍ରଭୃତି ମୁନିମାନେ ସର୍ବସାଧାରଣ ପ୍ରଚ୍ଛର କରିବାର ଉଦ୍ୟମ କରିଥିଲେ । କିନ୍ତୁ ଭଗବାନ କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ରଚିତ ଶ୍ରୀମଦ୍ ଭାଗବତ ଗ୍ରନ୍ଥ ମହାପୁରାଣ, ଭକ୍ତିମାର୍ଗକୁ ସର୍ବ ଜନାଦୃତ କରିବାର ଗୌରବ ଲାଭ କଲା ! ଅଠର ହଜାର ଶ୍ଳୋକ ବିଶିଷ୍ଟ ଏହି ଭାଗବତ ଗ୍ରନ୍ଥ କେବଳ ଭାରତବର୍ଷ ନୁହେଁ ସମଗ୍ର ବିଶ୍ୱରେ ଏକ ସୁଦୁର୍ଲଭ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ —

"ଦାରିଦ୍ର୍ୟ ଦୁଃଖ ଜ୍ୱର ଦାହିତାନାଂ
ମାୟା ପିଶାଚୀ ପରିମର୍ଦ୍ଦିତାନାମ
ସଂସାର ସିନ୍ଧୌ ପରି ପତିତାନାଂ
କ୍ଷମାୟ ବୈ ଭାଗବତଂ ପ୍ରଗର୍ଜ୍ଜତି ।"

(ଭାଗବତ ମାହାତ୍ମ୍ୟ ୬।୪୨)

ଅର୍ଥାତ୍, ଦାରିଦ୍ର୍ୟ, ଦୁଃଖ, ବ୍ୟାଧି ଦହନ କରି, ମାୟା ରୂପକ ପିଶାଚୀର ମନମର୍ଦ୍ଦନ କରି ସଂସାର ସମୁଦ୍ରରୁ ସହଜରେ ପରିତ୍ରାଣ କରିବା ପାଇଁ ଭାଗବତ ସିଂହନାଦ କରୁଛନ୍ତି ।

ଭାଗବତ ମାହାତ୍ମ୍ୟରେ ଆହୁରି କୁହାଯାଇଛି—

"ଅଲଂ ବ୍ରତୈରଲଂ ତୀର୍ଥୈରଲଂ ଯୋଗୈରଲଂ ମଖୈଃ—
ଅଲଂ ଜ୍ଞାନ କଥାଲାପୈ ଭକ୍ତିରେକୈବ ମୁକ୍ତିଦା ।"

(୨।୨୧)

ଅର୍ଥାତ୍ ବ୍ରତ, ତୀର୍ଥ, ଯୋଗ, ଯଜ୍ଞ ଏବଂ ଜ୍ଞାନଚର୍ଚ୍ଚା ଆଦି ଅନେକ ସାଧନର କୌଣସି ଆବଶ୍ୟକତା ନାହିଁ । ଏକମାତ୍ର ଭକ୍ତି ହିଁ ମୁକ୍ତି ଦେବାକୁ ସମର୍ଥ ଅଟେ ! ଭକ୍ତି କଲ୍ଲୋଳରେ ସୁଶୋଭିତ ଏହି ଭାଗବତ ରସାର୍ଣ୍ଣବ ସିନ୍ଧୁରୁ ରତ୍ନ ସଂଗ୍ରହ କରି ଭକ୍ତି ରାଜ୍ୟରେ ଗଙ୍ଗା, ଯମୁନା, ସରସ୍ୱତୀ ସମ ପ୍ରସିଦ୍ଧି ଲାଭ କରିଥିବା ତିନିଜଣ ମହାମାନବ ହେଲେ ମହାପ୍ରଭୁ ଶ୍ରୀଚୈତନ୍ୟ, ଭକ୍ତକବି ଅତିବଡ଼ି ଜଗନ୍ନାଥ ଦାସ ଏବଂ ଶ୍ରୀମନ୍ତ ଶଙ୍କର ଦେବ ! ଭାରତମାତାର ପରମ ସୌଭାଗ୍ୟ ଯେ ଏପରି ତିନିଜଣ ମହାପୁରୁଷଙ୍କୁ ଏକ ସଙ୍ଗେ ବକ୍ଷରେ ଧାରଣ କରିବାର ଗୌରବ ଲାଭ କରିଥିଲା । ଅବଶ୍ୟ ଏମାନଙ୍କର ଜୀବିତାବସ୍ଥାରେ ଏବଂ କିଞ୍ଚିତ ପୂର୍ବ ଓ ପରବର୍ତ୍ତୀ କାଳରେ ଆହୁରି ଅନେକ କବି ମହାପୁରୁଷ ଓ ଧର୍ମ ପ୍ରବର୍ତ୍ତକ ଜନ୍ମଲାଭ କରିଥିଲେ; ସେମାନଙ୍କ ମଧ୍ୟରେ ମିଥିଳା କବି ବିଦ୍ୟାପତି, ଚଣ୍ଡୀଦାସ, ରାମାନନ୍ଦୀ ସମ୍ପ୍ରଦାୟର ପ୍ରତିଷ୍ଠାତା ରାମାନନ୍ଦ (୧୪୦୦-୧୪୭୦) ସନ୍ଥ କବୀର (୧୩୯୮-୧୪୩୦) ବଲ୍ଲଭାଚାର୍ଯ୍ୟ (୧୪୭୯-୧୫୩୧) ସନ୍ଥ ଜ୍ଞାନେଶ୍ୱର ଓ ମାଧବାଚାର୍ଯ୍ୟ (୧୪୮୫-୧୫୩୩) ତୁକାରାମ (୧୬୦୮) ଗୁରୁନାନକ (୧୪୬୯-୧୫୩୯) ଗୋସ୍ୱାମୀ ତୁଳସୀ ଦାସ । (୧୫୩୦-୧୬୨୩) ସୁର ଦାସ (୧୫୮୩) ମୀରାବାଇ (୧୫୦୦-୧୫୪୬) ଏହାଛଡ଼ା

ଓଡ଼ିଶାର କବି ଉତ୍କଳ କବିତା ଉର୍ବଶୀ ମଠ ଖାକୁଦେବ, ସାରଳା ଦାସ, କବିଚନ୍ଦ୍ର ଦିବାକର ମିଶ୍ର, ରାଜଗୁରୁ ଗୋଦାବରୀଶ ମିଶ୍ର, ଶିଶୁ ଅନନ୍ତ, କୃପାସିନ୍ଧୁ, ବଳରାମ ଦାସ, ଯଶୋବନ୍ତ ଦାସ, ମହାପୁରୁଷ ଅଚ୍ୟୁତାନନ୍ଦ ଦାସ, ରାମଚନ୍ଦ୍ର ସ୍ୱାମୀ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ମାତ୍ର ଭାଗବତର ଭାବ ସମୁଦ୍ର ମଧ୍ୟରେ, ଏ ତିନି ମହାପ୍ରାଣଙ୍କର ଯେଉଁ ମହାମିଳନ ଘଟିଛି ତାହା ବର୍ଣ୍ଣନାତୀତ ! ଏ ତିନି ମହାପୁରୁଷଙ୍କ ପ୍ରବର୍ତ୍ତିତ ମାର୍ଗର ମୂଳାଧାର ଥିଲା ଭାଗବତ ! ଶ୍ରୀଚୈତନ୍ୟ ଭାଗବତର ଗୋପୀଭାବକୁ "ରାଗାନୁଗା ଭକ୍ତି" ନାମରେ ଗ୍ରହଣ କରିଥିଲେ । ଜଗନ୍ନାଥ ଦାସ ଗୋସ୍ୱାମୀ ଭାଗବତର ଜ୍ଞାନ ଏବଂ ଭକ୍ତି ମାର୍ଗକୁ ମିଶାଇ "ଜ୍ଞାନମିଶ୍ରା ଭକ୍ତି" ଭାବରେ ଗ୍ରହଣ କରିଥିଲେ ଏବଂ ଶଙ୍କର ଦେବ ଭାଗବତରୁ "ଏକ ସରଣୀୟା" ମାର୍ଗକୁ ଆବିଷ୍କାର କରିଥିଲେ ! ଜଗନ୍ନାଥ ଦାସ ଓ ଶଙ୍କର ଦେବ ଭାଗବତକୁ ନିଜେ ନିଜ ଭାଷାରେ ପଦ୍ୟାନୁବାଦ କରିଥିଲେ । ଶ୍ରୀଚୈତନ୍ୟ ସ୍ୱୀୟ ଗୌଡ଼ୀୟ ସମ୍ପ୍ରଦାୟର ସିଦ୍ଧାନ୍ତ ଗ୍ରନ୍ଥ ଭାବରେ ଭାଗବତକୁ ଗ୍ରହଣ କରିଥିଲେ ।

ସ୍ୱ ସ୍ୱ ମାର୍ଗ ସମର୍ଥିତ ପ୍ରସ୍ଥାନତ୍ରୟୀର ଟୀକା ଯାହାର ଥାଏ ତାହାକୁ ସମ୍ପ୍ରଦାୟ ଭାବରେ ଗ୍ରହଣ କରାଯାଏ । (ଉପନିଷଦ, ବେଦାନ୍ତ ଦର୍ଶନ ଓ ଗୀତାକୁ ପ୍ରସ୍ଥାନତ୍ରୟୀ କୁହାଯାଏ) ! ଶ୍ରୀଚୈତନ୍ୟ "ରାଗାନୁଗା ମାର୍ଗ" ଉପରେ ଏହି ପ୍ରସ୍ଥାନତ୍ରୟୀର ଟୀକା କରି ନଥିଲେ । ତାଙ୍କ ମତରେ—

"ସର୍ବ ବେଦାନ୍ତ ସାରଂ ହି ଶ୍ରୀଭାଗବତ ମିଷ୍ୟତେ ।"

(ଭାଗବତ ୧୨।୧୩।୧୫)

ସମସ୍ତ ବେଦାନ୍ତର ସାର ହିଁ ଭାଗବତ !

ଚାରିବେଦ ଉପନିଷଦେ ଯତ କିଛୁ ହୟ ।<br>
ତାର ଅର୍ଥଲୈଞା ବ୍ୟାସ କରିଲ ସଞ୍ଚୟ ॥<br>
ଯେଇ ସୂତ୍ରେ ଯେଇ ଋକ୍ ବିଷୟ ବଚନ ।<br>
ଭାଗବତେ ସେଇ ଋକ୍ ଶ୍ଳୋକ ନିବନ୍ଧନ ॥<br>
ଅତଏବ ସୂତ୍ରେର ଭାଷ୍ୟ ଶ୍ରୀ ଭାଗବତ ।<br>
ଭାଗବତେର ଶ୍ଳୋକ ଉପନିଷଦ ଏକମତ ॥

(ଚୈତନ୍ୟ ଚରିତାମୃତ ୨।୨୫।୯୭-୯୮)

ତେଣୁ ପ୍ରସ୍ଥାନତ୍ରୟୀର ଟୀକା କରିବା ଆବଶ୍ୟକ ନାହିଁ । ଅବଶ୍ୟ ପ୍ରସ୍ଥାନତ୍ରୟୀର ଟୀକା ହୋଇପାରି ନଥିବାରୁ ଶ୍ରୀଚୈତନ୍ୟଙ୍କ ପରବର୍ତ୍ତୀ କାଳରେ ଗୌଡ଼ୀୟ ମତ ପ୍ରଚାର ପାଇଁ ଜୟପୁର ରାଜଦରବାରରେ ଅସୁବିଧା ହେଲା; ମାତ୍ର ଓଡ଼ିଶାର ପ୍ରସିଦ୍ଧ ବୈଷ୍ଣବ କବି ବଳଦେବ ବିଦ୍ୟାଭୂଷଣ ରାଗାନୁଗା ମାର୍ଗ ସମର୍ଥନରେ "ଗୋବିନ୍ଦ ଭାଷ୍ୟ" ନାମରେ ପ୍ରସ୍ଥାନତ୍ରୟୀର ଟୀକା ଲେଖିବାରେ ଏ ଅସୁବିଧା ଦୂର ହେଲା । ତେଣୁ ଶ୍ରୀଚୈତନ୍ୟ ଭାଗବତ ଗ୍ରନ୍ଥକୁ କପରି ଦେଖୁଥିଲେ ସହଜରେ ଅନୁମେୟ !

ବଙ୍ଗ ଦେଶର ନଦୀୟା ଜିଲ୍ଲା ମାୟାପୁର ଗ୍ରାମ ! ଏହି ଗ୍ରାମର ଜଗନ୍ନାଥ ମିଶ୍ରଙ୍କ ଔରସରେ ଭଗବାନ ଶ୍ରୀଚୈତନ୍ୟ ଖ୍ରୀ ୧୪୮୬ ଖ୍ରୀଷ୍ଟାବ୍ଦ ଫେବ୍ରୁଆରି ମାସ ଫାଲଗୁନ ପୂର୍ଣ୍ଣିମା ଦିନ ଜନ୍ମଲାଭ କରିଥିଲେ ! ଶ୍ରୀଚୈତନ୍ୟଙ୍କୁ ୨୪ ବର୍ଷ ବୟସ ହେବା ପରେ ସେ ୧୫୧୦ ଖ୍ରୀଷ୍ଟାବ୍ଦ ଜାନୁଆରି ମାସ ମାଘ ସଂକ୍ରାନ୍ତି ଦିନ କେଶବ ଭାରତୀଙ୍କ ଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରି ସେହି ବର୍ଷ ଶ୍ରୀକ୍ଷେତ୍ର ଧାମକୁ ଆସିଲେ । ଶ୍ରୀଜଗନ୍ନାଥ ଧାମ ଥିଲା ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଧର୍ମ ପ୍ରଚାରର ପ୍ରାଣକେନ୍ଦ୍ର । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ସମୁଦାୟ ଜୀବନକାଳ ଥିଲା ୦୮ । ବର୍ଷ ତାହା ମଧ୍ୟରେ ସନ୍ନ୍ୟାସ ଜୀବନ ଥିଲା ୨୪ ବର୍ଷ । ଏହି ୨୪ ବର୍ଷ ମଧ୍ୟରୁ ୬ବର୍ଷ ତୀର୍ଥାଟନରେ ଏବଂ ଅବଶିଷ୍ଟ ୧୮ ବର୍ଷ କାଳ ଏକାଦିକ୍ରମେ ଶ୍ରୀକ୍ଷେତ୍ର ଜଗନ୍ନାଥ ଧାମରେ ଅତିବାହିତ ହୋଇଥିଲା ଖ୍ରୀ ୧୫୩୩ ରେ ଶ୍ରୀଜଗନ୍ନାଥ ଧାମରେ ଏହାଙ୍କର ବ୍ରହ୍ମ ପ୍ରାପ୍ତି ହେଲା !

ଭାଗବତର ଗୋପୀଭାବ ଉପରେ ପର୍ଯ୍ୟବସିତ ଥିଲା ଶ୍ରୀଚୈତନ୍ୟଙ୍କ "ରାଗାନୁଗାମାର୍ଗ" ! ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଯେଉଁ ଭାବରେ ଦେଖୁଥିଲେ ତାହା କାମ—କାମନାର ଆବେଗ ନଥିଲା—

"ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ତାରେ ବଲି କାମ
କୃଷ୍ଣେନ୍ଦ୍ରିୟ ପ୍ରୀତି ବାଞ୍ଛା ଧରେ ପ୍ରେମନାମ"
(ଚୈତନ୍ୟ ଚରିତାମୃତ)

ପରମାତ୍ମାଙ୍କ ସହିତ ଆତ୍ମାମିଳନର ଅନୁରାଗକୁ ପ୍ରେମ କୁହାଯାଏ ଯେଉଁଠି ପ୍ରେମ, ପ୍ରେମୀ ଓ ପ୍ରେମପାତ୍ର ଏ ତିନି ଭାବ ସମ୍ମିଳିତ ହୋଇ ଦେହ ଜ୍ଞାନଶୂନ୍ୟ କରିଥାଏ, ତାହାକୁ ପ୍ରକୃତ ପ୍ରେମ କୁହାଯାଏ, ପ୍ରିୟତମଙ୍କ

ମିଳନରେ ଯେଉଁଠି ଯୁକ୍ତାଯୁକ୍ତ ବସ୍ତୁର ଜ୍ଞାନ ରହେ ତାହାଙ୍କୁ ବିଶୁଦ୍ଧ ପ୍ରେମ କୁହାଯିବ ନାହିଁ । ଶ୍ରୀକୃଷ୍ଣ ଚିନ୍ତନରେ ଗୋପୀମାନଙ୍କର ଦେହ ଜ୍ଞାନ ନଥିଲା—

"ତନ୍ମନସ୍କା ସ୍ତଦାଳାପା ସ୍ତଦ୍‌ବିଚେଷ୍ଟା ସ୍ତଦାତ୍ମିକାଃ
ତଦ୍‌ଗୁଣାନେବ ଗାୟନ୍ତ୍ୟୋ ନାତ୍ମାଗାରାଣି ସସ୍ମରୁଃ"
(ଭାଗବତ ୧୦ । ୩୦ । ୪୪)

ଅର୍ଥାତ୍ ଗୋପୀମାନଙ୍କ ମନ ଶ୍ରୀକୃଷ୍ଣମୟ ହୋଇ ଯାଇଥିଲା । ଶ୍ରୀକୃଷ୍ଣଙ୍କ କଥା ବ୍ୟତିତ ଏମାନଙ୍କ ବାଣୀରେ ଆଉ କୌଣସି କଥା ପ୍ରକଟ ହେଉ ନଥିଲା, ଏମାନଙ୍କ ଶରୀର କେବଳ ଶ୍ରୀକୃଷ୍ଣଙ୍କ ପାଇଁ ତନ୍ମୟ ହେଉଥିଲା । ଏମାନଙ୍କର ପ୍ରତି ରୋମ କୃଷ୍ଣମୟ ଥିଲା । ଏମାନେ କେବଳ ଶ୍ରୀକୃଷ୍ଣଙ୍କ ଗୁଣ ଏବଂ ଲୀଳା ଗାନରେ ଅହୋରାତ୍ର ବ୍ୟସ୍ତ ଥିଲେ, ଏମାନେ ଶ୍ରୀକୃଷ୍ଣ ଚିନ୍ତନରେ ଏପରି ତନ୍ମୟ ଥିଲେ ଯେ ବହୁ ସମୟରେ ଦେହ ଜ୍ଞାନ ମଧ୍ୟ ରହୁନଥିଲା, ସେଠାରେ ଘର ଚିନ୍ତାର ପ୍ରଶ୍ନ କେଉଁଠି ଉଠୁଛି—

"ଗୋପ୍ୟଃ କୃଷ୍ଣେବନଂ ଯାତେ ତମନୁଦ୍ରୁତ ଚେତସଃ
କୃଷ୍ଣଲୀଳାଃ ପ୍ରଗାୟନ୍ତ୍ୟୋ ନିନ୍ୟୁର୍ଦୁଃଖେନ ବାସରାନ୍"
(ଭାଗବତ ୧୦ । ୩୫ । ୧)

ଶ୍ରୀକୃଷ୍ଣ ପ୍ରତିଦିନ ଗାଈ ଚରାଇବା ପାଇଁ ବନକୁ ଚାଲିଯିବା ପରେ ଗୋପୀମାନଙ୍କର ଚିତ୍ତ ମଧ୍ୟ ଶ୍ରୀକୃଷ୍ଣଙ୍କ ସହିତ ଚାଲିଯାଏ । ଗୋପୀମାନେ କେବଳ ଶ୍ରୀକୃଷ୍ଣ ଚିନ୍ତନ ଏବଂ ତାଙ୍କ ଲୀଳାଗାନ କରି କରି ଦିନକୁ ବଡ଼ କଠିନରେ ଅତିକ୍ରମ କରନ୍ତି—

"ୟା ଦୋହନେଽବହନନେ ମଥନୋପଲେପ
ପ୍ରେଙ୍ଖେଙ୍ଖନାର୍ଭରୁଦିତୋକ୍ଷଣମାର୍ଜନାଦୌ
ଗାୟନ୍ତିଚୈନମନୁରକ୍ତଧିୟୋଽଶ୍ରୁକଣ୍ଠ୍ୟୋ
ଧନ୍ୟାବ୍ରଜସ୍ତ୍ରିୟୋ ଉରୁକ୍ରମ ଚିତ୍ତୟାନାଃ"
(ଭାଗବତ ୧୦।୪୪।୧୫)

ସେହି ବ୍ରଜ ଗୋପୀମାନେ ଧନ୍ୟ, ନିରନ୍ତର ଶ୍ରୀକୃଷ୍ଣରେ ତାଙ୍କର ଚିତ୍ତ ଲାଗି ରହିବା କାରଣରୁ ପ୍ରେମପୂର୍ଣ୍ଣ ହୃଦୟରେ ଅଶ୍ରୁ ଝରି ନୟନଜନିତ ଗଦ୍‌ଗଦ୍ କଣ୍ଠରେ ଶ୍ରୀକୃଷ୍ଣଲୀଳା ଗାନ କରନ୍ତି, ଗୋପୀମାନେ ଦୁଧ ଦୁହିଁବା

ସମୟରେ, ଦଧି ମନ୍ଥନ କାଳରେ, ଧାନକୁଟିବା ସମୟରେ ଘରଲିପିବା ସମୟରେ, ଶିଶୁକୁ ଦୋଳରେ ଝୁଲାଇବା ସମୟରେ, କାନ୍ଦୁଥିବା ଶିଶୁକୁ ବୁଝାଇ ଶାନ୍ତ କରିବା ସମୟରେ, ଶିଶୁକୁ ଗାଧୋଇ ଦେବା ସମୟରେ, ଘର ଝାଡ଼ୁ ଦେବା ସମୟ ଆଦି ସମସ୍ତ କର୍ମରେ ଯେଉଁମାନେ ଶ୍ରୀକୃଷ୍ଣ ଗୁଣ ଗାନରେ ମସ୍ତ ରହୁଥିଲେ !

"ଏତାଃ ପରଂ ତନୁ ଭୃତୋ ଭୁବି ଗୋପବଧ୍ୱୋ
ଗୋବିନ୍ଦ ଏବ ନିଖିଳାତ୍ମନି ରୂଢ ଭାବାଃ
ବାଞ୍ଛନ୍ତି ଯଦ୍ ଭବଭିୟୋ ମୁନୟୋ ବୟଂ ଚ
କିଂ ବ୍ରହ୍ମଜନ୍ମ ଭିରନନ୍ତ କଥା ରସସ୍ୟ"

(ଭାଗବତ ୧୦।୪୭।୫୮)

ଏହି ପୃଥିବୀରେ କେବଳ ଗୋପୀମାନେ ଶରୀର ଧାରଣ କରିବା ଶ୍ରେଷ୍ଠ ଏବଂ ସଫଳ କାରଣ ଏମାନେ ସର୍ବାତ୍ମା ଭଗବାନ ଶ୍ରୀକୃଷ୍ଣଙ୍କର ପରମ ପ୍ରେମମୟ ଦିବ୍ୟ ମହାଭାବରେ ସ୍ଥିତ ଅଛନ୍ତି । ପ୍ରେମର ଏହି ସର୍ବଶ୍ରେଷ୍ଠ ଉଚ୍ଚସ୍ଥିତି ସଂସାର ଉପରେ ଭୀତ ମୁମୁକ୍ଷୁ ଜନମାନଙ୍କ ପାଇଁ କେବଳ ନୁହେଁ ବଡ଼ ବଡ଼ ମୁନି ଏବଂ ମୁକ୍ତପୁରୁଷ ତଥା ସମସ୍ତ ଭକ୍ତ-ମାନଙ୍କ ପାଇଁ ମଧ୍ୟ ବାଞ୍ଛନୀୟ ଅଟେ । ଏହା ସତ୍ୟ ଅଟେ, ଶ୍ରୀକୃଷ୍ଣଲୀଳା ଶ୍ରବଣରେ ରସ ଲାଗିଗଲେ ଉଚ୍ଚକୁଳରେ ଜନ୍ମ କିମ୍ବା ବ୍ରାହ୍ମଣମାନଙ୍କର ସଂସ୍କାର ପ୍ରାପ୍ତି ହେବା ଏବଂ ବଡ଼ ବଡ଼ ଯଜ୍ଞ ଓ ଯୋଗମାର୍ଗରେ ଦୀକ୍ଷିତ ହେବାର ଆବଶ୍ୟକତା ନାହିଁ ।

"ଅନ୍ୟାଶ୍ଚ ତଦ୍‌ନୁଧ୍ୟାନନିବୃତ୍ତ ଶେଷ ବୃତ୍ତୟଃ
ନାଭ୍ୟଜାନ ନିଭଂ ଲୋକମାତ୍ମ ଲୋକଂ ଗତାଇବଃ"

(ଭାଗବତ ୧୦।୩୯।୧୫)

ଭଗବାନଙ୍କ ସ୍ୱରୂପ ଧ୍ୟାନ ଆସିବାମାତ୍ରେ ଗୋପୀମାନଙ୍କର ଚିତ୍ତବୃତ୍ତି ସର୍ବଥା ନିବୃତ୍ତ ହୋଇଯାଏ, ଅର୍ଥାତ୍ ସମାଧିସ୍ଥ—ଆତ୍ମାରେ ସ୍ଥିତ ହୋଇଯାଏ । ଏହି ସମୟରେ ସେମାନେ ଶରୀର ଏବଂ ସଂସାରକୁ ଭୁଲି ଯାଆନ୍ତି । ତେଣୁ—

"ଅତଏବ ଗୋପୀ ଗଣେର ନାହିଁ କାମ ଗନ୍ଧ
କୃଷ୍ଣ ସୁଖ ହେତୁ କରେ ପ୍ରେମେର ସମ୍ବନ୍ଧ"
(ଚୈତନ୍ୟ ଚରିତାମୃତ)

ଭଗବତବର୍ଣ୍ଣିତ ଏହି ଗୋପୀଭାବକୁ ବିଶୁଦ୍ଧ ପ୍ରେମ କୁହାଯାଏ । ଗୋପୀ ପ୍ରେମର ସ୍ୱରୂପ ନିର୍ଣ୍ଣୟ କରି ରୂପ ଗୋସ୍ୱାମୀ କହିଛନ୍ତି—

"ଦର୍ଶନେ ସ୍ପର୍ଶନେ ବାପି ଶ୍ରବଣେ ଭାଷଣେଽପିବା
ହୃଦୟସ୍ୟ ଦ୍ରବତ୍ୱଂ ଯତ୍ ପ୍ରେମ ଇତିକଥ୍ୟତେ"

ଅର୍ଥାତ୍ ପ୍ରିୟତମଙ୍କର ଦର୍ଶନ, ସ୍ପର୍ଶନ ଏବଂ ତାଙ୍କ କଥା କହିବାରେ ଶୁଣିବାରେ ହୃଦୟର ଦ୍ରବଭୂତ ଅବସ୍ଥାକୁ ପ୍ରେମ କୁହାଯାଏ !

ଗୋପୀମାନଙ୍କର ଏହି ସୁମଧୁର ଭାବକୁ ପ୍ରେମଭକ୍ତି କୁହାଯାଏ । ଯାହା ଭକ୍ତିମାର୍ଗର ସର୍ବଶ୍ରେଷ୍ଠ ଏବଂ ସର୍ବ ଶେଷସ୍ତର ବୋଲି ଏହି ମାର୍ଗର ଭକ୍ତମାନେ କହନ୍ତି ! ଭକ୍ତିରାଜ୍ୟରେ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଏବଂ ମଧୁର ବା ପ୍ରେମରସ (କାହାର କାହାର ମତରେ ଶାନ୍ତରସକୁ ମିଶାଇ ପଞ୍ଚରସ) ଏ ସମସ୍ତ ରସ ମଧ୍ୟରେ ପ୍ରେମରସ ହିଁ ଶ୍ରେଷ୍ଠରସ ! ଆକାଶାଦି ପଞ୍ଚ ମହାଭୂତର ଗୁଣ ଯେପରି କ୍ରମାନ୍ୱୟରେ ପୃଥିବୀ ତତ୍ତ୍ୱରେ ପରିପୂର୍ଣ୍ଣ ହୋଇଛନ୍ତି ଠିକ୍ ସେହିପରି ଦାସ୍ୟ ଆଦି ଚାରିରସ ପ୍ରେମ ରସରେ ମିଳିତ ହୋଇଥାନ୍ତି । ତେଣୁ ସମସ୍ତ ରସରେ ପ୍ରେମରସ ହିଁ ଶ୍ରେଷ୍ଠରସ । ରହସ୍ୟ ମଞ୍ଜରୀ କାବ୍ୟରେ ପ୍ରାଚୀନ ଓଡ଼ିଆ କବି ଦେବଦୁର୍ଲ୍ଲଭ ଦାସ ଏ ବିଷୟରେ ଏକ ସ୍ଥାନରେ କହିଛନ୍ତି—

ଚାରି ଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର ।
ଏ ଭକ୍ତି ଅଟଇ ଜୋର ଗୋପୀମାନଙ୍କର ॥
ଏହାଙ୍କ ଭଜନ ଭକ୍ତି ପ୍ରେମଭକ୍ତି କହି ।
ବିନା ପ୍ରେମଭକ୍ତିରେ ସାକ୍ଷାତ ମୋତେ ନାହିଁ ॥

ବେଦାନ୍ତ ସାର ଗୁପ୍ତଗୀତାରେ ବଳରାମ ଦାସ କହିଛନ୍ତି—

"ଆତ୍ମାକୁ ନାରୀ ବେଶ କରି । ଶ୍ରୀରାଧା ଅଙ୍ଗରେ ବିହରି ॥
କୃଷ୍ଣ ଆସ୍ୱାଦ ତହିଁ ହୋଇ । ଏହାକୁ ପ୍ରେମଭକ୍ତି କହି ॥"

ଏହି ଗୋପୀ ଭାବର ଭକ୍ତ ଥିଲେ ଶ୍ରୀଚୈତନ୍ୟ—

"ଗୋପୀଭାବେ ବିରହେ ପ୍ରଭୁ ବ୍ୟାକୁଳ ହଇୟା ।।
ଆଲୁଲନାଥେ ଗେଲା ପ୍ରଭୁ ସେବାରେ ଛାଡ଼ିୟା ।।"

(ଚୈତନ୍ୟ ଚରିତାମୃତ)

ଶ୍ରୀକୃଷ୍ଣ ବିରହରେ ଗୋପୀମାନଙ୍କର ଯେଉଁ ଅବସ୍ଥା ହୋଇଥିଲା, ନାମ ଭଜନ କୀର୍ତ୍ତନ ସମୟରେ ଶ୍ରୀଚୈତନ୍ୟଙ୍କର ସେହି ଭାବ ପ୍ରକଟ ହେଉଥିଲା । ଏହି ଭାବକୁ ଶ୍ରୀଚୈତନ୍ୟ "ରାଗାନୁଗା" ଭାବରେ ଗ୍ରହଣ କରିଥିଲେ । ତାଙ୍କ ମତରେ—

କର୍ମ ତପ ଯୋଗ ଜ୍ଞାନ ବିଧି ଭକ୍ତି ଜପ ଧ୍ୟାନ
ଇହାହୈତେ ମାଧୁର୍ଯ୍ୟ ଦୁର୍ଲଭ ।
କେବଳ ଯେ ରାଗମାର୍ଗେ ଭଜେ କୃଷ୍ଣ ଅନୁରାଗେ
ତାରେ କୃଷ୍ଣ ମାଧୁର୍ଯ୍ୟ ସୁଲଭ ।।

(ଚୈତନ୍ୟ ଚରିତାମୃତ)

ତେଣୁ ଏହି ରାଗାନୁଗା ମାର୍ଗ ସମର୍ଥନରେ ଆଧାରିତ ଗ୍ରନ୍ଥମାନଙ୍କର କଥାମୃତ ଶ୍ରବଣରେ ଶ୍ରୀଚୈତନ୍ୟ ପରମାନନ୍ଦ ଲାଭ କରୁଥିଲେ । ଏହି ଗ୍ରନ୍ଥମାନଙ୍କ ମଧ୍ୟରେ ଜୟଦେବ ଗୋସ୍ୱାମୀଙ୍କ 'ଗୀତଗୋବିନ୍ଦ', ଚଣ୍ଡୀଦାସ ଓ ବିଦ୍ୟାପତିଙ୍କର 'ବ୍ରଜବୋଲି', ରାୟରାମାନନ୍ଦଙ୍କ 'ଜଗନ୍ନାଥ ବଲ୍ଲଭ ନାଟକ' ଏବଂ ବିଲ୍ୱମଙ୍ଗଳ କବିଙ୍କର 'କୃଷ୍ଣ କର୍ଣ୍ଣାମୃତ' ଅନ୍ତର୍ଭୁକ୍ତ । ଏହି ଗ୍ରନ୍ଥଗୁଡ଼ିକ ଶ୍ରୀଚୈତନ୍ୟଙ୍କର ଅତି ପ୍ରିୟ ଥିଲା—

"ଚଣ୍ଡୀଦାସ ବିଦ୍ୟାପତି    ରାୟେର ନାଟକ ଗୀତି
କର୍ଣ୍ଣାମୃତ ଶ୍ରୀ ଗୀତଗୋବିନ୍ଦ ।
ସ୍ୱରୂପ ଦାମୋଦର ସନେ    ମହାପ୍ରଭୁ ରାତ୍ର ଦିନେ
ନାଚେ ଗାଏ ପରମ ଆନନ୍ଦ ।।"

(ଚୈ. ଚ.)

ଏହି ରାଗମାର୍ଗରେ ଶ୍ରୀଚୈତନ୍ୟ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଗ୍ରହଣ କରୁଥିଲେ । ଅଳ୍ପଦିନ ମଧ୍ୟରେ ଏହି ମାର୍ଗ ଏତେ ଲୋକପ୍ରିୟ ହୋଇ ଉଠିଲା ଯେ ତାଙ୍କ ଜୀବିତାବସ୍ଥାରେ ମଧ୍ୟ ଓଡ଼ିଶା

ଏବଂ ବଙ୍ଗ ଦେଶରେ ଚୈତନ୍ୟଙ୍କ ପ୍ରେମ ଭକ୍ତିର ପ୍ରବଳ ବନ୍ୟା ପ୍ଲାବିତ ହେବାକୁ ଲାଗିଲା ! ଚୈତନ୍ୟଙ୍କ ପୂର୍ବରୁ ଅବଶ୍ୟ ଓଡ଼ିଶା ମାଟିରେ ଏହି ରସର ରସିକ ଈଶ୍ୱର ପୁରୀ, ମାଧବେନ୍ଦ୍ର ପୁରୀ ଏବଂ ରାମାନନ୍ଦ ପ୍ରଭୃତି କେତେ ଜଣ ଥିଲେ । ମାତ୍ର ଶ୍ରୀଚୈତନ୍ୟଙ୍କ ଯୋଗୁ ଏହା ଦେଶବ୍ୟାପ୍ତ ହେଲା ବୋଲି କହିଲେ ଭୁଲ ହେବ ନାହିଁ ।

ପୁରୁଷୋତ୍ତମ କ୍ଷେତ୍ରର ପୂର୍ବ ଭାଗରେ ଅବସ୍ଥିତ, ବ୍ରହ୍ମଗିରି ଅଞ୍ଚଳରେ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ ସୁ-ପ୍ରସିଦ୍ଧ କପିଳେଶ୍ୱର ପୁର ଗ୍ରାମ । ଏହି ଗ୍ରାମର ପ୍ରଥମାଂଶରେ ପୁରାଣପଣ୍ଡା ଭଗବାନ ଦାଶଙ୍କ ଔରସରେ ଭାଦ୍ରବ ମାସ ରାଧା ଜନ୍ମାଷ୍ଟମୀ ଦିନ ମଧ୍ୟାହ୍ନରେ ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀଙ୍କର ଜନ୍ମ । ଏ ମହାପୁରୁଷଙ୍କ ଜନ୍ମ ସମ୍ବତ୍ସର ଏବେ ମଧ୍ୟ ରହସ୍ୟାବୃତ । ଏ ମହାତ୍ମାଙ୍କ ଜୀବନୀ ଉପରେ ଗବେଷକମାନେ ଭିନ୍ନ ଭିନ୍ନ ମତ ପ୍ରକାଶ କରିଛନ୍ତି । ସେମାନଙ୍କ ମଧ୍ୟରେ ଜଗନ୍ନାଥ ଦାସଙ୍କ ଜନ୍ମ ଖ୍ରୀଷ୍ଟାବ୍ଦ ସ୍ଥିର କରିବାକୁ ଯାଇ କେହି କେହି ଖ୍ରୀ ୧୪୭୭ କହୁଥିବା ବେଳେ କେହି କେହି ଖ୍ରୀ ୧୪୮୭, ୧୪୯୦, ୧୪୯୧ ଏବଂ ୧୪୯୨ ବୋଲି ଲେଖିଛନ୍ତି ।

ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀଙ୍କ ଜୀବନୀ ଉପରେ ସଂସ୍କୃତ ଭାଷାରେ "ସୁଧାସମୁଦ୍ର" ନାମରେ ଖଣ୍ଡିଏ ଗ୍ରନ୍ଥ ରହିଛି, ଯାହାର ରଚୟିତା ହେଉଛନ୍ତି ରୂପ ସନାତନଙ୍କ କନିଷ୍ଠ ଭ୍ରାତା ଶ୍ରୀବଲ୍ଲଭ (ଅନୁପମ)ଙ୍କ ପୁତ୍ର, ଗୌଡ଼ୀୟ ବୈଷ୍ଣବ ଦର୍ଶନର ପ୍ରକାଣ୍ଡ ପଣ୍ଡିତ ଶ୍ରୀ ଜୀବ ଗୋସ୍ୱାମୀ ! ମାତ୍ର "ସୁଧାସମୁଦ୍ର" ଗ୍ରନ୍ଥ ଜୀବ ଗୋସ୍ୱାମୀଙ୍କର ନୁହେଁ ବୋଲି କେତେକ ଗୌଡ଼ୀୟ ବୈଷ୍ଣବ ମତ ପ୍ରଦାନ କରନ୍ତି । ସେମାନଙ୍କ ମତରେ—

ତତ୍ତ୍ୱ ସନ୍ଦର୍ଭ, ଭଗବତ ସନ୍ଦର୍ଭ, ପରମାତ୍ମ ସନ୍ଦର୍ଭ, କୃଷ୍ଣ ସନ୍ଦର୍ଭ, ଭକ୍ତି ସନ୍ଦର୍ଭ, ପ୍ରୀତି ସନ୍ଦର୍ଭ ଆଦି ଷଟ୍ ସନ୍ଦର୍ଭ, ଭାଗବତ ଟୀକା, ସ୍ତବମାଳା ଟୀକା, ଗୋପାଳ ତାପିନୀ ଟୀକା, ଭକ୍ତି ରସାମୃତସିନ୍ଧୁ ଟୀକା, ଉଜ୍ଜ୍ୱଳ ନୀଳମଣି ଟୀକା, ଲଘୁ ଭାଗବତାମୃତ ଟୀକା, ବ୍ରହ୍ମ-ସଂହିତା ଟୀକା, ମାଧବ ମହୋତ୍ସବ ମହାକାବ୍ୟ, ଗୋପାଳ ଚମ୍ପୂ, ହରି ନାମାମୃତ ବ୍ୟାକରଣ, ଲଘୁ ବୈଷ୍ଣବ ତୋଷିଣୀ ଆଦି ଜୀବ

ଗୋସ୍ୱାମୀଙ୍କ ରଚନାଶୈଳୀ ସହିତ "ସୁଧାନିଧିମ୍" ରଚନାଶୈଳୀର ଆଦୌ ସମ୍ପର୍କ ନାହିଁ । ତେଣୁ ଏହା ଜୀବ ଗୋସ୍ୱାମୀଙ୍କ ରଚନା ନୁହେଁ । ଅନ୍ୟ କେହି ଜଣେ ସଂସ୍କୃତ ପଣ୍ଡିତ ଏହାକୁ ଲେଖି ଜୀବ ଗୋସ୍ୱାମୀଙ୍କ ନାମରେ ଭଣିତ କରିଥାଇପାରେ ।

ଯାହାହେଉ "ସୁଧାନିଧିମ୍" ଯଦି ଜୀବ ଗୋସ୍ୱାମୀଙ୍କ ଲେଖା ସତ୍ୟ ହୁଏ, ତେବେ ଏହା ହେଉଛି ଅତିବଡ଼ିଙ୍କ ଜୀବନୀ ଉପରେ ପ୍ରଥମ ଗ୍ରନ୍ଥ ଏବଂ ଏହା ଗୋସ୍ୱାମୀଙ୍କ ଜୀବଦଶାରେ ଲେଖା ଯାଇଅଛି । ଯଦି ନୁହେଁ, ତେବେ ରଚନାକାଳ ସ୍ଥିର କରିବାର ଉପାୟ ନାହିଁ । ଏ ଗ୍ରନ୍ଥରେ ମଧ୍ୟ ଅତିବଡ଼ିଙ୍କ ଜନ୍ମ ବର୍ଷ ସମ୍ବନ୍ଧରେ ଉଲ୍ଲେଖ ନାହିଁ ।

ଅତିବଡ଼ି ଜଗନ୍ନାଥ ଦାସଙ୍କ ଜୀବନୀ ଉପରେ ଦ୍ୱିତୀୟ ଗ୍ରନ୍ଥ ହେଉଛି ଦିବାକର ଦାସଙ୍କ "ଜଗନ୍ନାଥ ଚରିତାମୃତ" । ଦିବାକର ଦାସ ହେଉଛନ୍ତି କଟକ ଜିଲ୍ଲା ଠେଙ୍ଗଣ ଗ୍ରାମନିବାସୀ ଅତିବଡ଼ି ସମ୍ପ୍ରଦାୟର ବୈଷ୍ଣବ କବି । ଜଗନ୍ନାଥ ଦାସଙ୍କ ପ୍ରଥମ ଷୋଳଜଣ ଶିଷ୍ୟମାନଙ୍କ ମଧ୍ୟରେ ବନମାଳୀ ଦାସ ଥିଲେ ଅନ୍ୟତମ । ବନମାଳୀଙ୍କ ଶିଷ୍ୟ କୃଷ୍ଣକେଳି, କୃଷ୍ଣକେଳିଙ୍କ ଶିଷ୍ୟ କିଶୋରୀ କିଶୋର, କିଶୋରୀ କିଶୋରଙ୍କ ଶିଷ୍ୟ ଥିଲେ ଦିବାକର । ତେଣୁ "ଜଗନ୍ନାଥ ଚରିତାମୃତ" ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ରଚିତ ହୋଇଥିବାର ଅନୁମାନ କରାଯାଏ ! ଶ୍ରୀଚୈତନ୍ୟଙ୍କ ଜୀବନୀ ଉପରେ କୃଷ୍ଣ ଦାସ କବିରାଜ କୃତ "ଚୈତନ୍ୟ ଚରିତାମୃତ," ବୃନ୍ଦାବନ ଦାସଙ୍କ "ଚୈତନ୍ୟ ଭାଗବତ" ଏବଂ ଲୋଚନ ଦାସଙ୍କ "ଚୈତନ୍ୟ ମଙ୍ଗଳ" ଗ୍ରନ୍ଥ ଭଳି ଜଗନ୍ନାଥ ଦାସଙ୍କ ଜୀବନୀ ଉପରେ "ଜଗନ୍ନାଥ ଚରିତାମୃତ" ଏକ ଉପାଦେୟ ଗ୍ରନ୍ଥ ! ଗୋବିନ୍ଦ ଦାସଙ୍କ ଡାଇରୀରୁ ତଥ୍ୟ ସଂଗ୍ରହ କରି କବିରାଜ ଚୈତନ୍ୟ ଚରିତାମୃତ ଲେଖିବା ଭଳି ଗୁରୁ କିଶୋରୀ କିଶୋରଙ୍କ ଲେଖାରୁ ତଥ୍ୟ ସଂଗ୍ରହକରି "ଜଗନ୍ନାଥ ଚରିତାମୃତ" ଲେଖିଛନ୍ତି ବୋଲି ଗ୍ରନ୍ଥକର୍ତ୍ତା ସ୍ୱୟଂ କହିଛନ୍ତି—

"ଗୁରୁଙ୍କ ଲେଖାରୁ ସୂଚନା । ପାଇ ଯା କରୁଛି ବର୍ଣ୍ଣନା ॥"

(୨୪ ଅଧ୍ୟାୟ)

ଏହି "ଜଗନ୍ନାଥ ଚରିତାମୃତ" ଗ୍ରନ୍ଥ ଉପରେ ପରବର୍ତ୍ତୀ କାଳର ସମସ୍ତ ଗବେଷକମାନେ ଭରସା କରିଛନ୍ତି । ଏହି ଗ୍ରନ୍ଥରେ ଦିବାକର

ଦାସ, ଜଗନ୍ନାଥ ଦାସଙ୍କର ଜନ୍ମତିଥି ଓ ଅପ୍ରକଟ ତିଥି ଉପରେ ଲେଖିଛନ୍ତି—

“ଭାଦ୍ର ସେ ଶୁକ୍ଳାଷ୍ଟମୀ ଦିନ । ମଧ୍ୟାହ୍ନ କାଳେ ହୋଇଲେ ଜନ୍ମ ॥”
(ପ୍ରଥମ ଅଧ୍ୟାୟ)

ଶୁକ୍ଳ ସପ୍ତମୀ ମକର । ଅପ୍ରକଟ ସେହି ଦିନର ॥
(୨୪ ଅଧ୍ୟାୟ)

ଅତିବଡ଼ିଙ୍କ ଜୀବନକାଳ ହେଲା ୭୦ ବର୍ଷ ।

ଷାଠିଏ ବର୍ଷ ବୟସରେ ପ୍ରେମ ସ୍ଥାପି ସ୍ଥାନେ ଗମିଲେ ॥

୧୮ ବର୍ଷ ବୟସରେ ତାଙ୍କର ଶ୍ରୀଚୈତନ୍ୟଙ୍କ ସହିତ ସାକ୍ଷାତ ହେଲା—

ଅଷ୍ଟାଦଶ ବରଷଠାରେ । ଶ୍ରୀଚଇତନ୍ୟ ଭେଟ ହେଲେ ॥

ଏଥିରୁ ଜଗନ୍ନାଥ ଦାସଙ୍କ ଜନ୍ମ ସମୟ ଖ୍ରୀ ୧୪୯୨ ଏବଂ ତିରୋଧାନ ଖ୍ରୀ ୧୫୫୨ ହେବାକଥା । କିନ୍ତୁ ସେ ଲେଖିଛନ୍ତି ନିଜ ଲେଖା ଭାଗବତର ଦଶମସ୍କନ୍ଧ ବର୍ଣ୍ଣିତ ଶ୍ରୀକୃଷ୍ଣସ୍ତୁତି ଅତିବଡ଼ ବଟ ଗଣେଶଙ୍କ ନିକଟରେ ପାଠ କରୁଥିବା ଅବସ୍ଥାରେ ତାଙ୍କର ଶ୍ରୀଚୈତନ୍ୟଙ୍କ ସହିତ ପ୍ରଥମ ସାକ୍ଷାତ ହେଲା—

ଅତିବଡ଼ ଶ୍ରୀ ଜଗନ୍ନାଥ । ପ୍ରଥମ ସ୍କନ୍ଧ ଭାଗବତ ॥
ଶ୍ରୀକୃଷ୍ଣସ୍ତୁତିର ବିସ୍ତର । ପଢ଼ନ୍ତି ଗଣେଶ ଆଗର ॥

× × × ×

ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ॥
ବଟ ତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥
ପ୍ରେମ ବଶରେ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ॥

ତେଣୁ ଶ୍ରୀଚୈତନ୍ୟଙ୍କ ସହିତ ସାକ୍ଷାତ ହେଲାବେଳକୁ ଜଗନ୍ନାଥ ଦାସ ଭାଗବତ ଲେଖା ଶେଷ କରିସାରିଥିଲେ । ଏଠାରେ ବିଚାର କରିବାର କଥା ଏହି ଯେ, ୧୮ ବର୍ଷ ବୟସରେ ବହୁ ଶାସ୍ତ୍ରରେ ସୁପଣ୍ଡିତ ହୋଇ ଭାଗବତ ଭଳି ଏକ ତତ୍ତ୍ୱପୂର୍ଣ୍ଣ ବୃହତ୍‌କଳେବର ବିଶିଷ୍ଟ ଗ୍ରନ୍ଥକୁ ରଚନା କରିବା ସମ୍ଭବ କି ? ଭାଗବତ ବ୍ୟତୀତ ଅତିବଡ଼ି ଜଗନ୍ନାଥ ଦାସଙ୍କ ରଚିତ ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ଆହୁରି ୫୮ ଖଣ୍ଡ ଗ୍ରନ୍ଥର ତାଲିକା

ପରମେଶ୍ୱର ବିଶ୍ୱାଳ, ପାଠକ ସଂସଦ ସମ୍ପାଦିତ "ଓଡ଼ିଶାର ଭକ୍ତକବି" ଗ୍ରନ୍ଥର "ଭକ୍ତକବି ଜଗନ୍ନାଥ ଦାସ" ପ୍ରବନ୍ଧରେ ଦେଇଛନ୍ତି । କିନ୍ତୁ ଆଜି କୌଣସି ଲେଖା ଭାଗବତର ସ୍ଥାନ ପୂର୍ଣ୍ଣ କରିପାରି ନାହିଁ । ତାହା ବ୍ୟାସଙ୍କ ସଂସ୍କୃତ ଭାଗବତର ନବାକ୍ଷରୀ ଛନ୍ଦରେ ଓଡ଼ିଆ ପଦ୍ୟାନୁବାଦ ହୋଇଥିଲେ ମଧ୍ୟ ଜଗନ୍ନାଥ ଦାସଙ୍କର ବେଦ ବେଦାନ୍ତ ଉପରେ ଚମତ୍କାର ପାଣ୍ଡିତ୍ୟ ଥିବାର ପରିଚୟ ଦିଏ ! ବେଦର ଏହି ମନ୍ତ୍ର—

"ବିଷ୍ଣୋର୍ନୁକଂ ବୀର୍ଯ୍ୟାଣି ପ୍ରବୋଚଂ<br>ଯଃ ପାର୍ଥିବାନି ବିମମେ ରଜାଂସି<br>ଯୋ ଅସ୍କଭାୟଦୁତ୍ତରଂ ସଧସ୍ଥମ<br>ବିଚକ୍ରମାଣ ସ୍ତ୍ରେଧୋ ରୁଗାୟଃ".

(ଋଗ୍‌ବେଦ ୧।୧୫୪।୧)

ତାହା ସ୍କନ୍ଦ ଭାଗବତରେ ଜଗନ୍ନାଥ ଦାସ ଏହି ମନ୍ତ୍ରକୁ ଏପରି ସୁନ୍ଦର ଭାବେ ପ୍ରକାଶ କରିଛନ୍ତି—

ଯେ ବିଷ୍ଣୁ ମହିମା ସଂସାରେ । କେଉଁଣ ସଂଖ୍ୟା କରିପାରେ ॥<br>ଯେ କବି ଭୂମି ରେଣୁ ଗଣି । ସେହୁ ନ ପାରିବ ପ୍ରମାଣି ॥<br>ଯେ ବିଷ୍ଣୁ ପଦ୍ମପାଦ ଘାତେ । ବ୍ରହ୍ମାଣ୍ଡ ଫାଟିଲା ଉପରେ ॥<br>ସ୍ୱ ର୍ଦ୍ଧ୍ୱ ମ ଗୁଡ଼ ଭୂମିଗତେ । ଆକାଶୁ ପଡ଼ନ୍ତେ ଉପରେ ॥<br>ନିଜ ଶରୀର ଧାର ହେଲ । ଯେ ଷୋଡ଼ଷ ବ୍ରହ୍ମାଣ୍ଡ କମ୍ପିଲ ॥<br>ଏ ମନ୍ତ୍ର ହରିର ମହିମା । କେ କହିପାରେ ଗୁଣ ସୀମା ॥

ବେଦବେଦାଙ୍ଗ, ଉପନିଷଦ, ଗୀତା ଆଦି ଅନେକ ତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥର ଭାବକୁ ଅତିବଡ଼ ଭାଗବତରେ ଏପରି ଚମତ୍କାର ପଦବିନ୍ୟାସ କରିଛନ୍ତି ଯାହାର ଆଦୌ ପଟାନ୍ତର ନାହିଁ । ଭାରତବର୍ଷର ଆଉ ଯେତେ ପ୍ରାଦେଶିକ ଭାଷାରେ ଭାଗବତର ପଦ୍ୟାନୁବାଦ ହୋଇଛି ତାହା ମଧ୍ୟରେ ଅତିବଡ଼ ଭାଗବତ ଯେ ପ୍ରଥମ ସ୍ଥାନ ଅଧିକାର କରିବ ସନ୍ଦେହ ନାହିଁ । ଅତିବଡ଼ଙ୍କ ତିରୋଧାନ ହେବାର ମାତ୍ର ୫୦ ବର୍ଷ ପରେ ତାଙ୍କ ଜନ୍ମସ୍ଥାନ କପିଳେଶ୍ୱର ପୁର ଶାସନର ପଡ଼ୋଶୀ ଗ୍ରାମ କାନ୍ଥଦେବ ପୁର ଗ୍ରାମର ଧାନବନ୍ଧୁ ଖାଡ଼ଙ୍ଗା ସେହି ନବାକ୍ଷରୀ ଛନ୍ଦରେ ଭାଗବତକୁ

ପଦ୍ୟାନୁବାଦ କରିଛନ୍ତି । ଯାହା ଖାଡ଼ଙ୍ଗା ଭାଗବତ ନାମରେ ପରିଚିତ । ମାତ୍ର ତାହା ଜଗନ୍ନାଥ ଦାସଙ୍କ ଭାଗବତର ସମ୍ମାନକୁ ସାମାନ୍ୟ ମାତ୍ର କ୍ଷୁନ୍ନ କରିପାରିନାହିଁ । ତେଣୁ ଭାଗବତ ଅନୁବାଦ୍ ଜଗନ୍ନାଥ ଦାସ ଗୋସ୍ୱାମୀଙ୍କର ସର୍ବଶ୍ରେଷ୍ଠ ଏବଂ ସର୍ବଶ୍ରେଷ୍ଠ ରଚନା ସନ୍ଦେହ ନାହିଁ । ଏହା ମଧ୍ୟ ସତ୍ୟ ଯେ ଶ୍ରୀଚୈତନ୍ୟଙ୍କ ସାକ୍ଷାତ ବେଳକୁ ତାଙ୍କର ଭାଗବତ ଲେଖା ସରିଛି । କାରଣ ଭାଗବତ ଅଧ୍ୟାୟ ଭଣିତାରେ ଦାସ ମହାପୁରୁଷ ନିଜକୁ ବିପ୍ର ଜଗନ୍ନାଥ ଦ୍ୱିଜ ଜଗନ୍ନାଥ ଭାବରେ ପ୍ରକାଶ କରିଛନ୍ତି । ତେଣୁ ଏଥିରେ ଯେଉଁ 'ଦାସ' ଶବ୍ଦ ପ୍ରୟୋଗ କରିଛନ୍ତି ତାହା ବ୍ରାହ୍ମଣମାନଙ୍କର ସମ୍ମାନୋଚିତ 'ଦାଶ' ଉପାଧିବିଶେଷ । ଶ୍ରୀଚୈତନ୍ୟଙ୍କ ସାକ୍ଷାତ୍ ପରେ ଅତିବଡ଼ି ସନ୍ନ୍ୟାସ ଧର୍ମ ଗ୍ରହଣ କଲେ । ସନ୍ନ୍ୟାସୀ ହେବାପରେ ସମ୍ମାନୋ-ଚିତ 'ଦାଶ' ଉପାଧି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ 'ଦାସ'ରେ ପରିଣତ ହୋଇଥିବା ଯୁକ୍ତିଯୁକ୍ତ ଅଟେ । ଏ ସମସ୍ତ କଥାରୁ ଜଣାଯାଏ ଅତିବଡ଼ି ୧୮ ବର୍ଷ ବୟସରେ ଏତେ ଗ୍ରନ୍ଥ ଲେଖିବା ସମ୍ଭବ ନୁହେଁ । ତେଣୁ ଚୈତନ୍ୟଙ୍କ ସାକ୍ଷାତ ସମୟକୁ ଅତିବଡ଼ିଙ୍କୁ ଆହୁରି ଅଧିକ ବର୍ଷ ବୟସ ହୋଇଥିବା ଅନୁମାନ ହୁଏ ।

ଅତିବଡ଼ିଙ୍କର କନିଷ୍ଠ ସଖା ଅଚ୍ୟୁତାନନ୍ଦ ଉଦୟ କାହାଣୀରେ ପଞ୍ଚସଖାଙ୍କ ଜନ୍ମ ସମୟ ଏପରି ଲେଖିଛନ୍ତି—

"ପରୁଶିଲୁ ରାମ ଜନମ ଅଙ୍କ
ଅଛି ହିଁ ଗୁପତ ବଡ଼ ବିବେକ ।
ଡାହାଣ ଅଙ୍କକୁ ଗୁଣିବୁ ଯେବେ
ବାମ ଅଙ୍କ ଗୋଟି ମିଶାଅ ତେବେ ।
ଏମନ୍ତ ସାଲ ହୋଇବ ନିକର
ଶୁଣ ରାମଚନ୍ଦ୍ର ଏଥି ଭିତର ।
ଶତଭୁଜ କରି ମଣି ରତ୍ନରେ
ତଣ୍ଡ ଘନ ଯେଣ୍ଟ ଓଡ଼ ରାଷ୍ଟ୍ରରେ ।
ଏହି ଅଙ୍କେ ମୁହିଁ ଜନମ ହେଲି
ଅଚ୍ୟୁତ ପାମର ନାମ ପାଇଲି ।
ତିନି ଶତର ପକ୍ଷ ପୁର ଯେବେ
ଅନନ୍ତ ଶିଶୁ ଜନମିଲା ତେବେ ।

ତାର ସଙ୍ଗେ ଯେବେ ଭୂଜ ମିଶିଲା
ଜଗନ୍ନାଥ ଦାସ ଉଦୟ ହେଲା ।
ଏହି ଅଙ୍କେ ଯଶୋବନ୍ତଟି ଜାତ
ବଳରାମ ଗୁର ପୂର୍ବେ ଉଦ୍ଧତ ।”

ଅତି କଷ୍ଟସାଧ୍ୟ ଏହି ପଦ୍ୟକୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ "ଓଡ଼ିଆ ସାହିତ୍ୟ ପରିଚୟ” ଗ୍ରନ୍ଥରେ ଏପରି ଅର୍ଥ କରିଛନ୍ତି—

ବଳରାମ ଦାସ ଖ୍ରୀ: ୧୪୭୩, ଶିଶୁ ଅନନ୍ତ ୧୪୭୫, ଜଗନ୍ନାଥ ଓ ଯଶୋବନ୍ତ ୧୪୭୬, ଅଚ୍ୟୁତ ୧୪୮୯ । ପଞ୍ଚସଖାଙ୍କ ଜନ୍ମ ସମୟ ଏହା କେତେକ ଯୁକ୍ତିସଙ୍ଗତ ହେଲେ ମଧ୍ୟ ମହାମହୋପାଧ୍ୟାୟ ସଦାଶିବ ମିଶ୍ରଙ୍କ "ଜଗନ୍ନାଥ ଦାସ ଗୋସ୍ୱାମୀ” ଗ୍ରନ୍ଥ ଲିଖିତ ଜଗନ୍ନାଥ ଦାସଙ୍କ ଜନ୍ମ ୧୪୯୦ ଖ୍ରୀଷ୍ଟାବ୍ଦକୁ ଅନେକ ଲେଖକମାନେ ଗ୍ରହଣ କରିଛନ୍ତି ଏବଂ ଏହି ସିଦ୍ଧାନ୍ତ ଉପରେ ଜଗନ୍ନାଥ ଦାସଙ୍କ ପଞ୍ଚଶତ ବାର୍ଷିକ ପାଳନ କରା-ଯାଉଛି ।

ସେ ଯାହାହେଉ ଚୈତନ୍ୟଙ୍କ ସାକ୍ଷାତ ପରେ ଜଗନ୍ନାଥ ଦାସ ସନ୍ନ୍ୟାସୀ ହେଲେ ଏବଂ ଚୈତନ୍ୟଙ୍କ ପରାମର୍ଶ କ୍ରମେ ମତ୍ତବଳରାମ ଦାଶଙ୍କ ଠାରୁ ଦୀକ୍ଷା ଗ୍ରହଣ କଲେ । ମତ୍ତବଳରାମ ଦାସଙ୍କୁ ଦାଣ୍ଡିରାମାୟଣ, ବେଦାନ୍ତ ସାରଗୁପ୍ତ ଗୀତା ଆଦିର ଲେଖକ କୃପାସିନ୍ଧୁ ବଳରାମ ଦାସ ବୋଲି କେହି କେହି ଅନୁମାନ କରନ୍ତି । କିନ୍ତୁ କୃପାସିନ୍ଧୁ ବଳରାମ ଦାସଙ୍କର ଗୁରୁ ନଥିଲେ ଜ୍ୟେଷ୍ଠ ସଖା ଥିଲେ । ମତ୍ତବଳରାମ ବ୍ରାହ୍ମଣ ଥିଲେ । ପଞ୍ଚସଖା ବଳରାମ ଶୂଦ୍ର ଥିଲେ । ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥ-ମାନଙ୍କରେ ମତ୍ତବଳରାମ ଦାଶଙ୍କର ପରିଚୟ ଏପରି ଆସିଛି—

ଚୈତନ୍ୟ ଦକ୍ଷିଣ ଦେଶର ତୀର୍ଥ ଭ୍ରମଣ ସାରି ପୁରୀ ଫେରିବା ବେଳେ ମତ୍ତବଳରାମ ଦାସ ତାଙ୍କୁ ରାମସିଙ୍ଗା ବଜାଇ ସ୍ୱାଗତ କରିଥିଲେ—

"ରାମସିଙ୍ଗା ବଜାଇତେ ବଡ଼ାଇ ପଣ୍ଡିତ ।
ବଳରାମ ଦାସ ଆସେ ହଇୟା ପୁଲକିତ ।

× × ×

ପ୍ରେମରସେ ମହାମତ୍ତ ବଳରାମ ଦାସ ।
ଯାହାର ବାତାସେ ସବ ପାପହୟ ନାଶ ॥
× × ×
ଉତ୍କଳ ଦେଶେତେ ଜନ୍ମ ବଳରାମ ଦାସ ।
ଋଗ୍ରେୋକୁଳୋଦ୍ଭବ ତହେଁ । ସଂସାରେ ଉଦାସ ॥"

ଅତିବଡ଼ ଜଗନ୍ନାଥ ଦାସ ଗୋସ୍ୱାମୀଙ୍କ ଜୀବନ ଦର୍ଶନ, ରଚନା "ଜ୍ଞାନମିଶ୍ରା ଭକ୍ତି" ଉପରେ ମହାପୁରୁଷ ଅଚ୍ୟୁତାନନ୍ଦ, ଗୋପାଳ ଓଡ୍ରିକ, ମହାଦେବ ଦାସ, ଦିବାକର ଦାସ, ନନ୍ଦ ଦାସ, ରାମ ଦାସ, ଶ୍ରବଣ ଚରିତ, ବ୍ୟାସକବି ଫକୀରମୋହନ ସେନାପତି, ଶ୍ୟାମସୁନ୍ଦର ରାଜଗୁରୁ, ମଧୁସୂଦନ ଦାସ, ନୀଳକଣ୍ଠଚରଣ ରଥ, ମହାମହୋପାଧ୍ୟାୟ ସଦାଶିବ ମିଶ୍ର, ଡକ୍ଟର ମାୟାଧର ମାନସିଂହ, ଡକ୍ଟର ହରେକୃଷ୍ଣ ମହତାବ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, କେଦାରନାଥ ମହାପାତ୍ର, ଡକ୍ଟର ବ୍ରଜମୋହନ ମହାନ୍ତି, ଚିନ୍ତାମଣି ପଟ୍ଟନାୟକ, ଗୌରୀକୁମାର ବ୍ରହ୍ମା, ଡକ୍ଟର ବଂଶୀଧର ମହାନ୍ତି, ଅଧ୍ୟାପକ ସର୍ବେଶ୍ୱର ଦାସ, ଅଧ୍ୟାପିକା କେତକୀ ନାୟକ, ନୀଳମଣି ମିଶ୍ର, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ସୁରେନ୍ଦ୍ର ମହାନ୍ତି, କାହ୍ନୁଚରଣ ମିଶ୍ର, କୁଞ୍ଜବିହାରୀ ତ୍ରିପାଠୀ, ନିତ୍ୟାନନ୍ଦ ବିଦ୍ୟାବିନୋଦ, ଦେବକୀନନ୍ଦନ ଦାସ, ମନମୋହନ ଚକ୍ରବର୍ତ୍ତୀ ଓ ବିଜୟଚନ୍ଦ୍ର ମଜୁମଦାର ପ୍ରଭୃତି ବହୁ କବି ଓ ଲେଖକମାନେ ଉଣା ଅଧିକେ ଲେଖି ଯାଇଛନ୍ତି । ଏଠାରେ କେବଳ ଗୋସ୍ୱାମୀଙ୍କର ଜ୍ଞାନମିଶ୍ରା ଭକ୍ତି ଉପରେ ଏତିକି କୁହାଯାଇ ପାରେ ଯେ ଭାଗବତର ଗୋପୀଭାବକୁ ଶ୍ରୀଚୈତନ୍ୟଙ୍କ ଭଳି ଅତିବଡ଼ ଗ୍ରହଣ କରି ନେଇଥିଲେ ମଧ୍ୟ ଗୋପୀଭାବ ସହିତ ଉଦ୍ଧବଙ୍କର ଜ୍ଞାନମାର୍ଗକୁ ସ୍ୱୀୟମାର୍ଗରେ ଗ୍ରହଣ କରିଥିଲେ । ତା'ର କାରଣ ହେଲା, ତାଙ୍କର ଜ୍ଞାନ, ଯୋଗ ଏବଂ ଭକ୍ତି ତତ୍ତ୍ୱ ଉପରେ ଅସାଧାରଣ ପାଣ୍ଡିତ୍ୟ ରହିଥିଲା, ଯାହାର ପ୍ରମାଣ ଅତିବଡ଼ଙ୍କର ବହୁ ରଚନାରେ ପ୍ରକାଶିତ ହୋଇଛି । ଅତଏବ କଷ୍ଟ ସହି ସେ ଯେଉଁ ଜ୍ଞାନ ଅର୍ଜନ କରିଥିଲେ ଭକ୍ତିମାର୍ଗରେ ପଥିକ ହେବା ପରେ ଜ୍ଞାନମାର୍ଗକୁ ସେ ପରିପୂର୍ଣ୍ଣ ଭାବେ ପରିତ୍ୟାଗ ନ କରି ଜ୍ଞାନମାର୍ଗର ସାର ସାର କଥାକୁ ଭକ୍ତିମାର୍ଗରେ ମିଶାଇ "ଜ୍ଞାନମିଶ୍ରା ଭକ୍ତି" ମାର୍ଗକୁ ନିଜ ସମ୍ପ୍ରଦାୟ ମଧ୍ୟରେ ପ୍ରଚାର କରିଥିଲେ ।

କେବଳ ଯୋଗ, ଜ୍ଞାନ ଏବଂ ଭକ୍ତି ନୁହେଁ, ଉପଯୁକ୍ତ ଜ୍ଞାନ ଅର୍ଜନ ନକରି ଯେକୌଣସି ମାର୍ଗରେ ଗତି କଲେ ପତନ ହୋଇଯିବାର ଯଥେଷ୍ଟ କାରଣ ଅଛି ଏବଂ ଭକ୍ତିମାର୍ଗରେ ଜ୍ଞାନର ସାହାଯ୍ୟ ନ ପାଇଲେ ଅତିଶୀଘ୍ର ପତନ ହୋଇଯିବ ସନ୍ଦେହ ନାହିଁ । ଚେଷ୍ଟା ଯୌଗିକ କ୍ରିୟା ଦ୍ୱାରା ଚିତ୍ତଶୁଦ୍ଧି କରି ଭକ୍ତିରସ ଆସ୍ୱାଦନ କଲେ ଭକ୍ତ ଆଶାଆଶଙ୍କା ରହିତ ହୋଇ ପରମାତ୍ମା ଚିନ୍ତନରେ ପରମାନନ୍ଦ ଲାଭ କରିଥାଏ । ଭକ୍ତି ଏବଂ ଜ୍ଞାନର ମିଶ୍ରଣରେ ଯେଉଁ ଭକ୍ତି ସିଦ୍ଧ ହୁଏ ତାହାହିଁ "ଜ୍ଞାନ ମିଶ୍ରାଭକ୍ତି" । ଅନ୍ୟ ପକ୍ଷରେ ଯୋଗ, ଜ୍ଞାନ ଏବଂ ଭକ୍ତିତତ୍ତ୍ୱକୁ ମନ୍ଥନ କଲେ ଯେଉଁ ଲହୁଣୀ ପ୍ରକାଶ ହେବ ତା'ର ନାମ ହେଲା "ଜ୍ଞାନମିଶ୍ରା ଭକ୍ତି" । ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ ଏହି ମାର୍ଗର ଉପାସକ ଓ ପ୍ରଚାରକ ଥିଲେ ।

ଶ୍ରୀଚୈତନ୍ୟଙ୍କ ରାଗାନୁଗାମାର୍ଗ ସହିତ ଜ୍ଞାନମିଶ୍ରା ଭକ୍ତିର ଅନେକ ସମ୍ବନ୍ଧ ରହିଥିଲେ ମଧ୍ୟ ମନ୍ତ୍ର, ଚିତା ଏବଂ ପୂଜା ଆଦିରେ ଅନେକ ପ୍ରଭେଦ ଥିଲା ।

ଉତ୍କଳୀୟ କବି ଜୟଦେବଙ୍କ 'ଗୀତଗୋବିନ୍ଦ' ବର୍ଣ୍ଣନା ଅନୁଯାୟୀ ଗୌଡୀୟ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ 'ଅବତାରୀ' ବୋଲି ମନେ କରୁଥିବା ବେଳେ, କବିଚନ୍ଦ୍ର ଦିବାକର ମିଶ୍ର ଓ ଗୋଦାବରୀ ମିଶ୍ରଙ୍କ ବର୍ଣ୍ଣନା ଅନୁଯାୟୀ ଅତିବଡ଼ି, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅବତାରୀ ଭାବରେ ଗ୍ରହଣ କରିଥିଲେ—

"ଜଗନ୍ନାଥ ଯେ ଷୋଳକଳା । ତହୁଁ କଳାଏ ନନ୍ଦବାଳା ॥"

—(ଦିବାକର ଦାସ)

ତେଣୁ ସେ ଉଦ୍ଧବଙ୍କ ପ୍ରସଙ୍ଗରେ ଲେଖିଥିବା—

"ସକଳ ତୀର୍ଥ ତୋ ଚରଣେ । ବଦ୍ରିକା ଯିବୁ କ କାରଣେ ॥"

—(ଭାଗବତ)

ଏହି ଉକ୍ତିକୁ ଅତିବଡ଼ି, ନିଜ ଜୀବନରେ ପାଳନ କରିଥିଲେ । ଜଗନ୍ନାଥ କ୍ଷେତ୍ରହିଁ ଅତିବଡ଼ିଙ୍କର ଥିଲା ନିତ୍ୟ ବୃନ୍ଦାବନ—

"ଏ କ୍ଷେତ୍ର ପୁରୁଷ ଉତ୍ତମ । ଅଟଇ ନିତ୍ୟ ବୃନ୍ଦାବନ ॥"

—(ପରିଚୟ ବୋଧିନୀ)

ଶ୍ରୀଜଗନ୍ନାଥ ସ୍ୱାମୀ ହିଁ ତାଙ୍କ ପ୍ରାଣର ସର୍ବସ୍ୱ ମନେକରି ଅନ୍ତିବଡ଼ି ଶ୍ରୀକ୍ଷେତ୍ର ଛାଡ଼ି ଅନ୍ୟ କୌଣସି ତୀର୍ଥକୁ ଯାଇ ନାହାନ୍ତି । ଏପରିକି ସନ୍ନ୍ୟାସୀ ହେବା ପରେ ସେ ନିଜର ଜନ୍ମସ୍ଥାନ କପିଳେଶ୍ୱରପୁର ଗ୍ରାମକୁ ମଧ୍ୟ ଗୋଟିଏଥର ପାଇଁ ଯାଇନାହାନ୍ତି । ସମୁଦ୍ର କୂଳରେ ଥିବା ସାତଲହଡ଼ି ମଠରେ ଜୀବନର ଅନ୍ତିମ ସମୟ ଅତିବଡ଼ିଙ୍କର ଯୋଗ ସାଧନାରେ ଶେଷ ହୋଇଥିବାର ଜଣାଯାଏ । ଯୋଗ, ଜ୍ଞାନ ଏବଂ ଭକ୍ତିତତ୍ତ୍ୱର ସମନ୍ୱିତ ବିଗ୍ରହ ଥିଲେ, ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀ ।

"ଭକ୍ତିର ଭାବ ଜାଣେ ଜଗନ୍ନାଥ । ପଞ୍ଚସଖା ଏ ଓଡ଼ିଶା ମହାନ୍ତ ॥"

ମହାପୁରୁଷ ଶଙ୍କରଦେବ ପ୍ରାଚୀନ ପ୍ରାଗ୍‌ଜ୍ୟୋତିଷପୁର, କାମରୂପ ଆଧୁନିକ ଆସାମ ଦେଶର ନଉଗାଓଁ ଜିଲ୍ଲା ବରଦୁଆ ଗ୍ରାମର ଭୂୟାଁ ଚଣ୍ଡୀବରଙ୍କ ଔରସରେ ଖ୍ରୀ: ୧୪୪୯ରେ ଅକ୍ଟୋବର ମାସ ଦଶହରା ଦିନ ଜନ୍ମଲାଭ କରି ଖ୍ରୀ: ୧୫୬୯ ସେପ୍‌ଟେମ୍ବର ମାସରେ ଇହଲୀଳା ସମ୍ବରଣ କଲେ । ଏ ମହାପୁରୁଷଙ୍କର ସମୁଦାୟ ଜୀବନକାଳ ହେଲା ୧୨୦ ବର୍ଷ । ଭାରତବର୍ଷର ସମସ୍ତ ଧର୍ମ ପ୍ରଚାରକମାନଙ୍କ ମଧ୍ୟରେ ସେ ଦୀର୍ଘଜୀବୀ । ଏହି ମହାତ୍ମାଙ୍କ ପ୍ରବର୍ତ୍ତିତ ମାର୍ଗ ହେଲା 'ଏକ ସରଣୀୟା ମାର୍ଗ ।' ଆସାମ ଭାଷାରେ ଏକ ସରଣୀୟା ମାର୍ଗର ସଂକ୍ଷିପ୍ତ ଅର୍ଥ ହେଲା—

"ଏକମାତ୍ର ଈଶ୍ୱରଙ୍କ ଶରଣରେ ଚରଣରେ ନାମଗୁଣ ଯଶ ଶ୍ରବଣ କୀର୍ତ୍ତନ କରି ଭକ୍ତି କରିବା ଲୋକକୁ ଏକ ସରନୀୟା ବୁଲି କୁହା ହୟ ।"

ଭାଗବତ ୪ର୍ଥ ସ୍କନ୍ଧର ୩୧ ଅଧ୍ୟାୟ ୧୪ ଶ୍ଳୋକ ଏବଂ ଗୀତାର ୧୮ ଅଧ୍ୟାୟ.୬୬ ଶ୍ଳୋକ ହିଁ ଏକ ସରଣୀୟା ମାର୍ଗର ମୂଳାଧାର ! ଏ ଦୁଇଟି ଶ୍ଳୋକ—

"ଯଥା ତରୋର୍ମୂଳ ନିଷେଚନେନ
ତୃପ୍ୟନ୍ତି ତତ୍ସ୍କନ୍ଧ ଭୁଜୋପଶାଖାଃ
ପ୍ରାଣୋପହାରାଚ୍ଚ ଯଥେନ୍ଦ୍ରିୟାଣାଂ
ତଥୈବ ସର୍ବାର୍ହଣ ମଚ୍ୟୁତେଜ୍ୟା ।"

ଅର୍ଥାତ୍ ବୃକ୍ଷମୂଳରେ ପାଣି ଦେବାଦ୍ୱାରା ଯେପରି ବୃକ୍ଷର ଗଣ୍ଡି ଶାଖା, ଉପଶାଖା ଆଦି ପୋଷଣ ହୁଅନ୍ତି ଏବଂ ଭୋଜନ ଦ୍ୱାରା ପ୍ରାଣକୁ

ତୃପ୍ତ ଜଳେ ଯେପରି ସମସ୍ତ ଇନ୍ଦ୍ରିୟଗଣ ପରିପୁଷ୍ଟ ହୁଅନ୍ତି ସେହି ପ୍ରକାରେ ଶ୍ରୀକୃଷ୍ଣ (ଅଚ୍ୟୁତ)ଙ୍କୁ ପୂଜା କରିବା ଦ୍ୱାରା ସମସ୍ତେ ପୂଜିତ ହୁଅନ୍ତି ।

"ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।"
—(ଗୀତା)

ଅର୍ଥାତ୍ ସମ୍ପୂର୍ଣ୍ଣ ଧର୍ମକୁ, ସମ୍ପୂର୍ଣ୍ଣ କର୍ତ୍ତବ୍ୟ କର୍ମକୁ ମୋ ଦେହରେ ସମର୍ପଣ କରି ଶରଣାପନ୍ନ ହୁଅ । ମୁଁ ତୋତେ ସମସ୍ତ ପାପରୁ ମୁକ୍ତ କରିଦେବି । ତୁ ଶୋକ କରନାହିଁ ।

ଶଙ୍କର ଦେବ ଏ ଉଭୟ ଶ୍ଳୋକକୁ ନିଜ ଭାଷାରେ ଏପରି ଅର୍ଥ କରିଛନ୍ତି—

ଯେନ ବୃକ୍ଷମୂଳତ ଢାଳିଲେ ବହୁ ଜଲ ।
ଅନୁଦିନେ ବଢ଼େ ତାର ପତ୍ର ପୁଷ୍ପ ଫଲ ॥
ଯତ୍ନକରି ପାନିଢାଲ ଫୁରେ ଡାଲେ ଡାଲେ ।
ପୂର୍ବବତେ ଫଲପୁଷ୍ପ ନ ଧରୟ କାଲେ ॥
ମାଧବର ପୂଜା ଯେନ ବୃକ୍ଷମୂଲେ ଜଲ ।
ହରିତୁଷ୍ଟ ଭୈଲେ ତୁଷ୍ଟ ଦେବତା ସକଲ ॥
ଆନଦେବ ଜାନିୟାଁ ଯେହେନ ଢାଲେ ପାନି ।
ସର୍ବଲୋକେ ପୂଜେ ଏହି ତତ୍ତ୍ୱକ ନଜାନି ॥
ମଧ୍ୟାହ୍ନ ବେଲା ତ ଏକ ଆସିଲ ଅତିଥିକ ।
କ୍ଷୁଧାୟେ ତୃଷାୟେ ସିଟୋ ଦେଖୟ ଝିମକ ॥
ହାତେ କାନେ ନାକେ ଚକ୍ଷୁ ଭରି ଢାଲେ ଜଲ ।
ତଥାପିୟୋ ନୁଗୁଚୟ ଉଦର ବିକଲ ॥
ହାତେ ଭାତ ଲଗେ ଚକ୍ଷୁ ମେଲି ଆଛେଗ୍ଗୟ ।
ତଥାପି ତ ପୁରୁଷର କ୍ଷୁଧା ନ ପଲାୟ ॥
କର୍ମତୋ କୃଶଳ ନୋହେ ଇନ୍ଦ୍ରିୟ ଯେଶନ ।
ଯାବଦେକେ ପୁରୁଷର ତୁଷ୍ଟ ନୋହେ ମନ ॥
ପ୍ରାନକ ଅର୍ପିଲେ ଯେବେ ଅନ୍ନ ପାନ ଖାଇ ।
ସକଲେ ଇନ୍ଦ୍ରିୟ ତେବେ ବିଷୟକ ପାଇ ॥

ବିଷୟ୍ୟ ଗ୍ରହନ କରେ ଯାର ଯେନ ମନ ।
ମାଧବର ପୂଜାକ ଜାନବା ସେହ୍ନି ଠାନ ॥
ହରି ତୁଷ୍ଟ ହୈଲେ ଚରାଚରର ତୃପତ ।
ଶୁନ୍ମ କହୋ ଆର ଏକ ଉତ୍ତମ ଯୁକତ ॥

—(ଭାଗବତ)

ଗୀତାର ଶ୍ଳୋକକୁ ଶଙ୍କର ଦେବ ଏପରି ପଦ୍ୟାନୁବାଦ କରିଛନ୍ତି—

"ସର୍ବଧର୍ମ ତରି ଏକ ଶରନ ସାକ୍ଷାତ ।
ସୁଦୃଢ଼ ବିଶ୍ୱାସେ ସଖୀ ଲୈୟୋକ ଆମାତ ॥
ନ କରିବା ଭୟ୍ୟ ହେରୁକତେ ଅଙ୍ଗୀକାର ।
ସମସ୍ତ ପାପେତେ ମଇଁ କରିବ ନସ୍ତାର ॥"

ଏହି ଉଭୟ ଶ୍ଳୋକ ଏକ ସରଣୀୟାଁ ମାର୍ଗର ମୂଳ ତତ୍ତ୍ୱ । "ଏକୋଦେବଃ କେଶବୋ ବାଶିବୋ ବା", ଭର୍ତ୍ତୃହରିଙ୍କର ଏହି ଉକ୍ତି ଅନୁଯାୟୀ ଶଙ୍କର ଦେବ ଭାଗବତର ପୁରୁଷୋତ୍ତମ ଭଗବାନ କୃଷ୍ଣଙ୍କୁ ଏକମାତ୍ର ଆରାଧ୍ୟ ଭାବରେ ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣଙ୍କ ବ୍ୟତୀତ ଅନ୍ୟାନ୍ୟ ଦେବଦେବୀଙ୍କୁ ଉପାସନା କରିବା, ତାଙ୍କ ମନ୍ଦିରକୁ ଯିବା, ତାଙ୍କ ପ୍ରସାଦ ଖାଇବା ଆଦି ବ୍ୟବସ୍ଥାକୁ ଏକ ସରଣୀୟାଁ ମାର୍ଗରେ ସମ୍ପୂର୍ଣ୍ଣ ନିଷେଧ କରିଥିଲେ ।

"ଅନ୍ୟ ଦେବଦେବୀ ନ କରିବା ସେବା
ମୂର୍ତ୍ତିକୁ ନଖାଇବା ଘରେ ନ ପଶିବା
ଭକ୍ତି ହୈବ ବ୍ୟଭିଚାର ।"

—(ଶଙ୍କର ଦେବ)

ବୃକ୍ଷମୂଳରେ ପାଣି ଦେବା ଦ୍ୱାରା ପାନ ପୁଷ୍ପ ଫଳ ଶାଖା, ଉପଶାଖା ଆଦି ପଲ୍ଲବିତ ହେବା ଭଳି ଏକମାତ୍ର ଶ୍ରୀକୃଷ୍ଣଙ୍କର ପୂଜା ଦ୍ୱାରା ସମସ୍ତ ଦେବଦେବୀ ପୂଜିତ ହୁଅନ୍ତି । ତେଣୁ ସମସ୍ତ ତତ୍ତ୍ୱର ମୂଳାଧାର ଶ୍ରୀକୃଷ୍ଣ, ତାଙ୍କ ଛଡ଼ା ଅନ୍ୟ ଦେବଦେବୀ ପୂଜା କରିବା ଉଚିତ୍ ନୁହେଁ । ଭାଗବତରେ ଶ୍ରୀରାଧାଙ୍କର ବର୍ଣ୍ଣନା ନଥିବା ଯୋଗୁ ଶଙ୍କର ଦେବ ଶ୍ରୀକୃଷ୍ଣଙ୍କ ସଙ୍ଗେ ରାଧାଙ୍କର ଉପାସନା ବା ଆରାଧନା କରନ୍ତି ନାହିଁ ।

ଶଙ୍କର ଦେବ ଶ୍ରୀକୃଷ୍ଣଙ୍କୁ ସ୍ୱୀୟମାର୍ଗର ଏକମାତ୍ର ଆରାଧ୍ୟ ଭାବରେ ଗ୍ରହଣ କରିଥିଲେ ମଧ୍ୟ ଶ୍ରୀକୃଷ୍ଣଙ୍କ ମୁରଲୀ ମନୋହର ମୂର୍ତ୍ତି ପୂଜା ସପକ୍ଷରେ ନଥିଲେ । ତାଙ୍କ ମତରେ ଭାଗବତ ଗ୍ରନ୍ଥହିଁ ଶ୍ରୀକୃଷ୍ଣଙ୍କର ପ୍ରକୃତ ସ୍ୱରୂପ—

"ପାଦୌ ଯଦୀୟୌ ପ୍ରଥମ ଦ୍ୱିତୀୟୌ
ତୃତୀୟ ତୁର୍ଯ୍ୟୌ କଥିତୌ ଯଦୂରୁ !
ନାଭି ସ୍ତଥା ପଞ୍ଚମ ଏବ ଷଷ୍ଠୋ
ଭୁଜାନ୍ତରଂ ଦୋର୍ଯୁଗଳଂ ତଥାନ୍ୟୌ ।
କଣ୍ଠସ୍ତୁ ରାଜନ୍ନବମୋ ଯଦୀୟୋ
ମୁଖାରବିନ୍ଦଂ ଦଶମଂ ପ୍ରଫୁଲ୍ଲମ ।
ଏକାଦଶୋ ଯସ୍ୟ ଲଲାଟ ପଟ୍ଟମ
ଶିରୋଽପିତୁ ଦ୍ୱାଦଶ ଏବ ଭାତି ।
ତମାଳ ବର୍ଣ୍ଣଂ ସୁଖ୍ରତାବିତାରଂ
ନମାମ୍ୟହଂ ଭାଗବତ ସ୍ୱରୂପମ୍ ।"
—(ପଦ୍ମପୁରାଣ)

ଶଙ୍କର ଦେବ ଏ ଶ୍ଳୋକର ଏପରି ଅନୁବାଦ କରିଛନ୍ତି—

"ପ୍ରଥମ ଦ୍ୱିତୀୟସ୍କନ୍ଦେ ଚରଣ ଦୁଇଟୟ ।
ତୃତୀୟ ଚତୁର୍ଥେ ଯାର ହୁଏ ଉରୁଦ୍ୱୟ ॥
ନାଭିଦେଶ ପଞ୍ଚମେ ଷଷ୍ଠ ହେ ବକ୍ଷସ୍ଥଳ ।
ସପ୍ତମେ ଅଷ୍ଟମେ କର କମଳ ଯୁଗଳ ॥
କଣ୍ଠଦେଶ ନବମେ ଦଶମେ ଯାର ତୁଣ୍ଡ ।
ଏକାଦଶ ଲଲାଟ ଦ୍ୱାଦଶେ ଭୈଲମୁଣ୍ଡ ॥
ହେନ ଭାଗବତେର ତ ମୂର୍ତ୍ତି ମନୋହର ।
ତମାଳ ସଦୃଶ ବର୍ଣ୍ଣ ଶ୍ୟାମ କଳେବର ॥"

ଭାଗବତର ଦ୍ୱାଦଶସ୍କନ୍ଧ ହିଁ ଶ୍ରୀକୃଷ୍ଣଙ୍କ ଦ୍ୱାଦଶ ଅଙ୍ଗ, ତେଣୁ ଶ୍ରୀକୃଷ୍ଣ ମୁରଲୀ ମନୋହର ମୂର୍ତ୍ତି ପୂଜା ନ କରି ଭାଗବତକୁ ପୂଜା କରିବା ବିଧେୟ ! ଅର୍ଥାତ୍ ଭାଗବତ ପାଠ କରି ଭଗବାନ ଶ୍ରୀକୃଷ୍ଣଙ୍କୁ ଭକ୍ତି କରିବା ପରମ

କର୍ତ୍ତବ୍ୟ ହୋଇ ଶଙ୍କର ଦେବଙ୍କର ମତ । ଚୈତନ୍ୟ ସେ ଓଡ଼ିଶାର ଭାଗବତ ଘର ଭଳି ଆସାମରେ 'ସତ୍ର', ବା ନାମଘର ସ୍ଥାପନ କରି ତହିଁରେ ଭାଗବତ ଗ୍ରନ୍ଥ ସ୍ଥାପନ କଲେ ।

ଶଙ୍କର ଦେବ ସ୍ୱୀୟ ଏକ ସରଣୀୟା ଧର୍ମରେ ତିନୋଟି ପନ୍ଥାର ପ୍ରବର୍ତ୍ତନ କଲେ—

୧—ସତ୍‌ସଙ୍ଗ, ଯାହାଦ୍ୱାରା ମନ ସମସ୍ତ ଆବିଳତାରୁ ମୁକ୍ତ ହୁଏ । "ପ୍ରାୟେଣ ଭକ୍ତିଯୋଗେନ ସତ୍‌ସଙ୍ଗେନ ବିନୋଦ୍ଧବ" (ଭାଗବତ ୧୧।୧୧।୪୮) ଅର୍ଥାତ୍ ସତ୍‌ସଙ୍ଗ ଏବଂ ଭକ୍ତିଯୋଗ ଏ ଦୁଇ ସାଧନ ଏକ ସଙ୍ଗେ ଅନୁଷ୍ଠାନ କରିବା ଉଚିତ୍ ।

୨—ଏକମାତ୍ର ଶ୍ରୀକୃଷ୍ଣଙ୍କୁ ଆଶ୍ରୟ କରିବା ।

୩—ନାମ କୀର୍ତ୍ତନ ଓ ଭଜନ ।

ଶଙ୍କର ଦେବଙ୍କ "ଏକ ସରଣୀୟା" ମାର୍ଗର ଏହି ତିନଗୋଟି ଧାରା ଭାଗବତରୁ ଜନ୍ମ ! ଏହି ତିନଗୋଟି ଧାରାକୁ ଆଦର କରୁଥିବା ଭକ୍ତ ନିକଟରେ ମୁକ୍ତି ଅତି ତୁଚ୍ଛ । ମୁକ୍ତି ଦ୍ୱାରା ବ୍ୟକ୍ତି ପରମରସ ଆସ୍ୱାଦନରୁ ବଞ୍ଚିତ ହୁଏ । ସାଗର ସଙ୍ଗମ ପରେ ନଦୀମାନଙ୍କର ଦଶାଭଳି ମୁକ୍ତିପରେ ଜୀବମାନଙ୍କର ସେହିଦଶା ହୋଇଥାଏ !

କ୍ଷୀର କିମ୍ବା ସର୍କରା ରସ ଆସ୍ୱାଦନରେ ଜୀବ ଯେଉଁ ଆନନ୍ଦ ଅନୁଭବ କରେ, ସ୍ୱୟଂ କ୍ଷୀର ସର୍କରାରେ ପରିଣତ ହେଲେ ସେ ଅନୁଭବରୁ ବଞ୍ଚିତ ହୋଇଥାଏ । ତେଣୁ ମୁକ୍ତି ଅପେକ୍ଷା ନାମକୀର୍ତ୍ତନରେ ଯେଉଁ ଆନନ୍ଦ ମିଳେ ତାହା ମୁକ୍ତି ଅପେକ୍ଷା ମଧୁରତର । ଶଙ୍କର ଦେବ ଏହି ଭାବଧାରାରେ ବିଶେଷ ଭାବେ ପ୍ରଭାବିତ ହୋଇ ମୁକ୍ତି ଉପରେ ବିଶେଷ ଗୁରୁତ୍ୱ ନଦେଇ ଭକ୍ତି ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ—

"ମୁକ୍ତିତେ ନିସ୍ପୃହ ଯେଟ ସେହି ଭକତକ ନମୁ
ରସମୟ ମାଗତ ଭକତି"

(ମାଧବଦେବ)

ଶଙ୍କର ଦେବ ଆଦ୍ୟ ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତସିଦ୍ଧାନ୍ତ ବା ମାୟାବାଦ ଉପରେ କେତେକାଂଶରେ ପ୍ରଭାବିତ ହୋଇଥିବା କଥା ତାଙ୍କ ରଚନାରୁ ଜଣାଯାଏ, ଯଥା—

"ଚୈତନ୍ୟ ସ୍ୱରୂପେ ବ୍ୟାପି ଏକ ନିରଞ୍ଜନ
ତୋମାକେ ଦ୍ୱୈତ ବୋଲେ କୋନ ଅଜ୍ଞ ଜନ।"
(ବେଦସ୍ତୁତି)

"ତୁମି ସତ୍ୟ ବ୍ରହ୍ମ ମିଥ୍ଯା ଜଗତସୃଜନା
ତୋମାର ମାୟାରେ କରେ ତୋମାତ କଳ୍ପନା।"
(କୁରୁକ୍ଷେତ୍ର, ୪୮)

"ଅବସ୍ତୁକ ଦେଖାଉଥାଇ ବସ୍ତୁକ ଆରଷି
ଏଥି ସେ ମୋହରମାୟା ଜାଣ ନିଷ୍ଠା କରି।
ନାଥାଇତେ ଦେଖି ଯେନ ଚନ୍ଦ୍ରମା ଉଦୟ
ଥାଇତେ ରାହୁକ ଯେନ କେହୋ ନ ଦେଖୟ।
ଏହିମତେ ମାୟା ଆରକରି ଈଶ୍ୱରକ
ଆଶାର ବିଷୟ ତାକ ଦେଖାଏ ଜୀବକ।"
(ଭାଗବତ ୨।୨୮—୨୯)

"ନିତ୍ୟ ନିରଞ୍ଜନ ସ୍ୱ ପ୍ରକାଶ ଆତ୍ମା ଏକ
ମାୟା ଉପାଧିରେ ପଦେ ଦେଖିଯେ ଅନେକ।"
(ଭାଗବତ)

"ବ୍ରହ୍ମ ବ୍ୟତିରେକେ ମିଥ୍ଯା ଯେତ ଦେଖା ଆନ
ଜଗତ ଉପଜ ଆଛେ ଯେନ ସର୍ପଜ୍ଞାନ।
ଜାଗନ ସପୋନ ବୁଦ୍ଧିରେ ସେ ବୃତ୍ତିଚୟ
ନାନାବିଧ ଦେଖାସିନ୍ତି ସବେ ମାୟାମୟ।
କ୍ଷନକେତେ ଉପଜେ କ୍ଷନକେ ନାଶହୟେ
ସମସ୍ତ ଅବସ୍ଥା ଯେନ ଚାଟକର ନୟେ।
ଯେନ ଆକାଶତ ମିଳେ ଫଳତ ମେଘର
କ୍ଷନକେ ଆକାସଁ ହୋବେ କ୍ଷନକେ ଅନ୍ତର।
ବ୍ରହ୍ମତ ଜଗତ ଜନ୍ମ ସଞ୍ଜା ସେହିନୟ
ଜୟୁଜସଁ ବୁଦ୍ଧି ତ ବ୍ରହ୍ମତେ ଯାଏଲୟ।"
(ଭାଗବତ ୧୨।୧୭୧-୭୨)

"ସୂର୍ଯ୍ୟରଶ୍ମି ହୋଇବେ ଯେନେ ମହାମେଘ ଗନ
ସୂର୍ଯ୍ୟ ଅଙ୍ଗ ଚକ୍ଷୁକ ତଥାପି କରେ ଛନ୍ନ ।
ବ୍ରହ୍ମର ସ୍ୱରୂପ ଅହଂକାର ଯନ ହସ୍ତୁ
ବ୍ରହ୍ମଅଂଶ ଜୀବକ ତଥାପି ଆବ୍ରରସ୍ତ ।
ଯେନ ମେଘ ଗେଲେ ଚକ୍ଷୁ ସୂର୍ଯ୍ୟଙ୍କ ନିରକ୍ଷେ
ଅହଂକାର ଗୁଚିଲେ ବ୍ରହ୍ମକ ଜୀବ ହେଖେ ।"

(ଭାଗବତ ୨୨।୧୭୬-୭୭)

"ମାୟାଏରେ ଆପୂନ ବୁଦ୍ଧିର ଗୁଚେ ଭ୍ରମ
ନିର୍ମଳ ହୃଦୟେ ଜୀବ ଦେଖେ ପରମ ବ୍ରହ୍ମ ।
ତ୍ରିକାଲତ ଜ୍ଞାନ ଅସ୍ତ୍ରେ ଛେଦେ ଅହଙ୍କାର
ଛୁଣ୍ଡେ କର୍ମ ବନ୍ଧ ତେବେ ଜୀବୋ ଆପୋନାର ।"

(ଭାଗବତ ୧୨।୧୭୮)

"ମୂକୁଟ କୁଣ୍ଡଲ ଯେନି ସୁବର୍ଣ୍ଣର ଭିନ୍ନ ନୁହେ
ମିଛାମାତ୍ର ନାମ ରୂପ ଯତ ।
ଅହଂକାର ପଞ୍ଚଭୂତ ତୋମାତ ପୃଥକ ନୁହଁ
ପ୍ରଭୁ ପରମାର୍ଥ ବିସ୍ତରତ ।"

ଶଙ୍କର ଦେବ ଶଙ୍କରାଚାର୍ଯ୍ୟଙ୍କ ମତକୁ ସ୍ୱୀୟ ରଚନାର ଏପରି ଅନେକ ସ୍ଥଳରେ ପ୍ରକାଶ କରିଥିଲେ ମଧ୍ୟ ବର୍ଣ୍ଣାଶ୍ରମର ଘୋର ବିରୋଧୀ ଥିଲେ । ଶଙ୍କରଦେବଙ୍କ ମତରେ ଜୀବ ଏବଂ ବ୍ରହ୍ମଙ୍କ ମଧ୍ୟରେ ଯଦି ଭେଦ ନାହିଁ, ତେବେ ଜାତିଗତ ଭେଦର ପ୍ରଶ୍ନ ଉଠୁଛି କେଉଁଠୁ ? ସମସ୍ତେ ଅମୃତର ସନ୍ତାନ, ସମସ୍ତେ ଅଖଣ୍ଡ ପ୍ରେମର ଅଧିକାରୀ—

"ମମୈ ବାଂଶୋ ଜୀବ ଲୋକେ ଜୀବ ଭୂତସନାତନଃ"

(ଗୀତା ୧୫।୭)

"ସକଳ ଘଟେ ନାରାୟଣ । ବସନ୍ତ ଅନାଦି କାରଣ"

(ଜଗନ୍ନାଥ ଦାସ)

"ଈଶ୍ୱର ଅଂଶଜୀବ ଅବିନାଶୀ"

(ତୁଳସୀ ଦାସ)

ତେଣୁ ସମସ୍ତଙ୍କୁ ଈଶ୍ୱର ମନେକରି ସମାନ ଦୃଷ୍ଟିରେ ଦେଖିବା ଉଚିତ—

"ବିଦ୍ୟାବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନିଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ॥

(ଗୀତା ୬।୧୦)

ଖଂ ବାୟୁ ମଗ୍ନି ସଲ୍ଲିଳଂ ମହୀଞ୍ଚ
ଜ୍ୟୋତିଷି ସତ୍ତ୍ୱାନି ଦିଶଂ ଦ୍ରୁମାଦିନ
ସରିତ୍ ସମୁଦ୍ରାଂଶ୍ଚ ହରେ ଶରୀରଂ
ଯତ କିଞ୍ଚଭୂତଃ ପ୍ରଣମେ ଦନନ୍ୟମ ॥

(ଭାଗବତ)

ଚଣ୍ଡାଳ କୁକୁର ଖର ଯିବନାନ୍ତ କରି
ଦଣ୍ଡବତ କରିବେକ ଅତି ଯତ୍ନ କରି ॥

(ଚୈ.ଚ)

ଚଣ୍ଡାଳ କୁକୁର ଗର୍ଦ୍ଦଭର ଆତ୍ମାରାମ
ଜାନିଯ୍ୟ ସବକୋ ପଡ଼ି କରିବ ପ୍ରନାମ ॥

(ଶଙ୍କର ଦେବ)

ବ୍ରାହ୍ମନର ଚଣ୍ଡାଳର ନବିଚାରି କୁଲ
ଦାତା ତ ଚୋରର ତ ଏଘନ ଦୃଷ୍ଟି ଏକ ତୁଲ ॥
ନୀଚ ତ ସାଧୁ ତ ଯାର ଭକ୍ତି ଏକ ଜାନ
ତାକେସେ ପଣ୍ଡିତ ବୋଲଯ୍ୟ ସର୍ବଜନ ॥

(ଶଙ୍କର ଦେବ)

ହରିଭକ୍ତି ଚରନ ଚିନ୍ତିବେକ ହୃଦୟତ
ଆଛନ୍ତି ଈଶ୍ୱର ହରି ସମସ୍ତ ଭୂତତ ।"

ତେଣୁ ସେହି ପ୍ରିୟତମଙ୍କର ପ୍ରେମ ରାଜ୍ୟରେ ଜାତି, ଧନ, ମାନ କୌଣସି ଭେଦନାହିଁ, ପରମାତ୍ମା ଜାତି, ବିଦ୍ୟା, ବିଭୂତି ଯୋଗ୍ୟ ସମସ୍ତଙ୍କୁ ଚାହାନ୍ତି ନାହିଁ, କେବଳ—

"ଭକ୍ତ୍ୟା ତୁ ତୋଷ ଭଗବାନ ଗଜଯୂଥ ପାୟ"

ଭକ୍ତିଭାବ ଯୋଗ୍ୟ ଗଜ ଉପରେ ମଧ୍ୟ ପରମାତ୍ମା ପ୍ରସନ୍ନ ହୁଅନ୍ତି । ଏ ସମସ୍ତ କଥା ବିଚାରି କରି ସର୍ବଭୂତରେ ଯେ ସମଜ୍ଞାନ ରଖେ ସେହି ଶ୍ରେଷ୍ଠ ଭକ୍ତ—

"ନିକଟରେ ଆଡ଼ୋନ ଘର ବୁଦ୍ଧି ଧନ ବିତ୍ତ
ସମଭାବେ ଏକ ଆତ୍ମା ଯାହାର ଚିନ୍ତା ଚିତ୍ତେ ।
ସକଳ ଲୋକରେ ସମ ଶାନ୍ତ ନିରୂପମ
ଶିବ ବା ନୃପତି ସେହି ଭକତ ଉତ୍ତମ ।"

(ନିମି ନବ ସିଦ୍ଧି ସମ୍ବାଦ)

ଏହି ସମସ୍ତ ଜ୍ଞାନସିଦ୍ଧ ହୋଇ ଶଙ୍କର ଦେବ ତାଙ୍କ "ଏକ ଶରଣୀୟା" ଧର୍ମରୁ ଜାତିଭେଦ ଉଠାଇ ଦେଇଥିଲେ । ସତ୍‌ସଙ୍ଗ ଦ୍ୱାରା ସଂସ୍କାର କରି ସମସ୍ତ ଧର୍ମ ଏବଂ ଜାତିର ଲୋକଙ୍କୁ ନିଜ ସମ୍ପ୍ରଦାୟରେ ଗ୍ରହଣ କରୁଥିଲେ ! ସତ୍‌ସଙ୍ଗ ଦ୍ୱାରା ଦୈତ୍ୟ, ରାକ୍ଷସ, ପଶୁ, ପକ୍ଷୀ, ଗନ୍ଧର୍ବ, ବୈଶ୍ୟ, ଶୂଦ୍ର, ସ୍ତ୍ରୀ, ଅନ୍ତ୍ୟଜ ଆଦି ଈଶ୍ୱର ପ୍ରାପ୍ତି ହୋଇ ପାରିବେ ବୋଲି ଭାଗବତର ୧୧।୧୨ ଅ-୭ ଶ୍ଳୋକରେ ମଧ୍ୟ କୁହାଯାଇଅଛି

ଶଙ୍କର ଦେବଙ୍କର ଏହି ପ୍ରଚାରିତ ଭକ୍ତି ମାର୍ଗ ତତ୍‌କାଳୀନ ଆସାମ ଦେଶରେ ପ୍ରଚଳିତ ପ୍ରବଳ ଶାକ୍ତମତକୁ ଅସମ୍ଭବ ଭାବେ ପରିବର୍ତ୍ତନ କରି ସମଗ୍ର ଉତ୍ତର ପୂର୍ବ ଭାରତବର୍ଷକୁ ଅନ୍ତମାନାରେ ପ୍ରଭାବିତ କଲା !

ଶଙ୍କର ଦେବ ଗୃହସ୍ଥାଶ୍ରମରେ ଥିଲେ । ତାଙ୍କର ପ୍ରଥମ ସ୍ତ୍ରୀ ଥିଲେ ସୂର୍ଯ୍ୟବତୀ । ସେ ଏକମାତ୍ର କନ୍ୟା (ହରିପ୍ରିୟା)ଙ୍କୁ ପ୍ରସବ କରି ସ୍ୱର୍ଗାରୋହଣ କରିବାର ଅନେକ ବର୍ଷ ପରେ ଜେଜେମାଙ୍କର ଏକାନ୍ତ ଇଚ୍ଛା ଯୋଗୁ କାଳିନ୍ଦୀ ନାମରେ ଦ୍ୱିତୀୟ ପତ୍ନୀ ଗ୍ରହଣ କଲେ । କାଳିନ୍ଦୀଙ୍କ ଔରସରେ ଶଙ୍କର ଦେବଙ୍କର ତିନିପୁଅ ରାମାନନ୍ଦ, କମଳଲୋଚନ, ଏବଂ ହରିଚରଣ ଜନ୍ମଲାଭ କରିଥିଲେ । ଗୃହସ୍ଥାଶ୍ରମରେ ଥାଇ ଜଣେ ବୈଷ୍ଣବ ଯେଉଁ ଧର୍ମ ବିପ୍ଳବ ସୃଷ୍ଟି କରିଗଲେ ତାହା ବର୍ଣ୍ଣନାର ସାଧ୍ୟ ନାହିଁ ।

ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ନିଜ ସମ୍ପ୍ରଦାୟରେ ଗ୍ରହଣ କରିବା ଏବଂ ନାମ କୀର୍ତ୍ତନାଦିରେ ଶଙ୍କରଦେବଙ୍କ ମତ ଶ୍ରୀଚୈତନ୍ୟଙ୍କ ସହିତ ମେଳ ଖାଉଥିଲେ ମଧ୍ୟ ତାଙ୍କର ସାକ୍ଷାତ ହୋଇନାହିଁ । କାରଣ ୩୨ ବର୍ଷ ବୟସରେ ଶଙ୍କର ଦେବ ୧୭ ଜଣ ଶିଷ୍ୟଙ୍କ ଗହଣରେ ଖ୍ରୀ ୧୪୮୧ ରେ ତୀର୍ଥ ଭ୍ରମଣରେ ପୁରୀ ଆସିଥିଲେ । ସେତେବେଳକୁ ଶ୍ରୀଚୈତନ୍ୟ କିମ୍ବା ଜଗନ୍ନାଥ ଦାସ କେହି ଜନ୍ମ ହୋଇ ନାହାନ୍ତି । ଖ୍ରୀ ୧୫୫୦ ରେ ଶଙ୍କର ଦେବ ଦ୍ୱିତୀୟବାର ପୁରୀ ଆସିବା ବେଳକୁ

ଖ୍ରୀ ୧୫୩୩ ରେ ଶ୍ରୀଚୈତନ୍ୟଙ୍କର ବ୍ରଜପ୍ରାପ୍ତି ହୋଇ ସାଉଛି । ଏହି ସମୟ ମଧ୍ୟରେ ଶଙ୍କର ଦେବଙ୍କର କେବଳ ଜଗନ୍ନାଥ ଦାସଙ୍କ ସହିତ ସାକ୍ଷାତ ହୋଇଛି । ଏହି ସାକ୍ଷାତ ବିଷୟରେ ଆସାମର କୌଣସି ଗ୍ରନ୍ଥରେ ପ୍ରମାଣ ମିଳୁନଥିଲେ ମଧ୍ୟ ଓଡ଼ିଶାର କବି ଗୋବିନ୍ଦ ନାଏକ, ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବଙ୍କ ସମୟରେ "ଶଙ୍କର ଗୋସେଇଁ ଚରିତ" ନାମରେ ଏକ କ୍ଷୁଦ୍ର ଗ୍ରନ୍ଥ ଲେଖିଛନ୍ତି । ଏହି ଗ୍ରନ୍ଥରେ ଶଙ୍କର ଦେବଙ୍କ ବିଷୟରେ ଯାହା ଲେଖିଛନ୍ତି, ତାହା ଆସାମର ସମସ୍ତ ଜୀବନୀ ଗ୍ରନ୍ଥ ସହିତ ମେଳ ହେଉଥିବା ଯୋଗୁ ଗ୍ରନ୍ଥବର୍ଣ୍ଣିତ କଥାବସ୍ତୁ ସତ୍ୟ ପର ମନେହୁଏ । ଶଙ୍କର ଦେବଙ୍କର ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରଧାମରେ ଯେଉଁମାନଙ୍କ ସହିତ ସାକ୍ଷାତ ହୋଇଛି ସେ ବିଷୟରେ ଏହି ଗ୍ରନ୍ଥରେ ଏପରି ବର୍ଣ୍ଣନା ହୋଇଛି—

"ନାଗର ସାଗର ପଞ୍ଝାଏତ ଅନ୍ତବନ୍ତ
ଅଚ୍ୟୁତ ଅନନ୍ତ ସଙ୍ଗେ ଭାବ ଗଢ଼ା ଗଢ଼ ।"

ଶଙ୍କର ଦେବ, ବିଶ୍ୱେଶ୍ୱର ଏବଂ ଜଗନ୍ନାଥ ଦାସଙ୍କଠାରୁ ଭାଗବତ ଶୁଣିବା ବିଷୟରେ ଏହି ଗ୍ରନ୍ଥରେ ଲେଖାଅଛି—

"ତଥି ଦେଖି ମନାଚଳେ କରିଲ ବିଶ୍ରାମ
ବିଶ୍ୱେଶ୍ୱର ଜଗନ୍ନାଥ ଦାସ ଦୁଇନାମ ।
ପଣ୍ଡିତ ପ୍ରବର ଭାଗବତ ଧର୍ମ ସାର
ନିତ୍ୟ ଆଚରଣେ ଯାର ପ୍ରକାଶ ଅପାର ।"

ଶଙ୍କର ଦେବଙ୍କୁ ଓଡ଼ିଆ ବୈଷ୍ଣବମାନେ ଅତି ଆଦର କରୁଥିଲେ ଏବଂ ସେ ଓଡ଼ିଆଗୀତ ଓ ଜୟଦେବଙ୍କ ଗୀତଗୋବିନ୍ଦ ଶୁଣିବା ପାଇଁ ବହୁ ଆଗ୍ରହ କରୁଥିବା କଥା ଗ୍ରନ୍ଥରେ ଉଲ୍ଲେଖ ଅଛି—

"ଓଡ଼ିଆ ବୈଷ୍ଣବଗଣ ଆଦରିଲ ଅତି
ଅନ୍ତବଡ଼ୀ ବୈଷ୍ଣବଙ୍କର ଅତିପ୍ରିୟ ଯତି

× × ×

ଓଡ଼ିଆ ଗୀତ ଶ୍ରବଣେ ଅତ୍ୟନ୍ତ ଆନନ୍ଦ
ଯେହ୍ନ କୋଟିନିଧି ପ୍ରାପ୍ତ ବିହ୍ୱଳ ତେମନ୍ତ ।
ଗୀତଗୋବିନ୍ଦ ଶ୍ରବଣେ ନିତ୍ୟ ନିତ୍ୟସୁଖୀ
କୃତଶୃଙ୍ଗାର ଦର୍ଶନେ ଅଟଇ ବିଶେଷି ।"

ଦ୍ୱିତୀୟ ବାର ପୁଣି ଆସିବାବେଳେ ଶଙ୍କର ଦେବ ଶ୍ରୀଜଗନ୍ନାଥ ଧାମରେ କେତେ ବର୍ଷ ଧରି ଅବସ୍ଥାନ କରିଥିଲେ ଏବଂ ଏହି ସମୟ ମଧ୍ୟରେ ଏଠାରେ ମଧ୍ୟ ନେନା, ଗଦାଧର ମହାପାତ୍ର, ରାମ ଭଞ୍ଜ, ବିରୁପାକ୍ଷ କାଞ୍ଜି, ହରିଶାଇ ମହାନ୍ତ ଏବଂ ଗୋପୀନାଥ ପଟ୍ଟନାୟକ ପ୍ରଭୃତି କେତେ ଜଣ ଓଡ଼ିଆ ଶିଷ୍ୟ କରିଥିବା କଥା ଏହି ଗ୍ରନ୍ଥରୁ ଜଣାଯାଏ ।

ବନାରସର ବେଦାନ୍ତ ପଣ୍ଡିତ ଶ୍ରୀ ଜଗଦୀଶ ମିଶ୍ର, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ପାଇ ଶଙ୍କର ଦେବଙ୍କୁ ଆସାମର ତାଙ୍କ ଜନ୍ମସ୍ଥାନ ବରଦୂଆ ଠାରେ ବ୍ୟାସକୃତ ସଂସ୍କୃତ ଭାଗବତ ଶୁଣାଇ ଥିବା କଥା ଆସାମର ସମସ୍ତ ଜୀବନୀ ଲେଖକମାନେ ଲେଖିଥିବାବେଳେ ଶଙ୍କର ଗୋସେଇଁ ଚରିତ ଗ୍ରନ୍ଥରେ ତାହା ମଧ୍ୟ ବର୍ଣ୍ଣନା କରାଯାଇ ଅଛି ।

ଶଙ୍କର ଦେବଙ୍କ ପ୍ରଦର୍ଶିତ "ଏକ ସରଣୀୟା" ମାର୍ଗକୁ ଆସାମର ବୈଷ୍ଣବମାନଙ୍କ ମଧ୍ୟରୁ କେତେକ ବୈଷ୍ଣବ, ଜ୍ଞାନମିଶ୍ରା ଭକ୍ତି ବୋଲି କହନ୍ତି । ତେଣୁ ସହଜରେ ଅନୁମେୟ ଯେ ଶଙ୍କର ଦେବ ଜଗନ୍ନାଥ ଦାସଙ୍କ ସହିତ ମିଳାମିଶା ଫଳରେ ଅତିବଡ଼ିଙ୍କର ଜ୍ଞାନମିଶ୍ରା ଭକ୍ତିମାର୍ଗରେ ପ୍ରଭାବିତ ହୋଇଛନ୍ତି ଏବଂ ଭାଗବତ ରଚନାର ପ୍ରେରଣା ମଧ୍ୟ ପାଇଛନ୍ତି । ତେଣୁ ସେ ଜଗନ୍ନାଥ ଧାମରେ ହେଉ ନଚେତ୍ ଆସାମ ଫେରିଯିବା ପରେ ହେଉ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଭଳି ଆସାମ ଭାଷାରେ ଶଙ୍କର ଦେବ ଭାଗବତର ପଦ୍ୟାନୁବାଦ କରିଛନ୍ତି । ଉଭୟଙ୍କର ରଚନାରେ ଶ୍ରୀକୃଷ୍ଣ ଜନ୍ମ ସମୟ ଏପରି ହୋଇଅଛି—

"ସୂର୍ଯ୍ୟର ତହୁଁ ଷଡ଼ ଋତୁ । ପ୍ରକାଶ ହୋଇ ଜନ ହେତୁ ॥
ଋତୁଙ୍କ ମଧ୍ୟେ ଶ୍ରେଷ୍ଠ ବଳ । ସଂପୂର୍ଣ୍ଣ ବରଷାର କାଳ ॥
ଭାଦ୍ରବ ମାସ କୃଷ୍ଣପକ୍ଷ । ସକଳ ଗ୍ରହେ ଛନ୍ତି ଉଚ୍ଚ ॥
ଅଷ୍ଟମୀ ନିଶା ଅର୍ଦ୍ଧ ଭାଗେ । ରୋହିଣୀ ବୃଷର ସଂଯୋଗେ ॥
ବୃଷ ରାଶିରେ ନିଶାକର । ନକ୍ଷତ୍ର ଗ୍ରହେ ବଳିଆର ॥
ଗମ୍ଭୀର ନାଦ ମେଘ ଘୋଷ । ପ୍ରଫୁଲ୍ଲ ସାଧୁଙ୍କ ମାନସ ॥
ଏହି ସମୟେ ସୁର ରାୟେ । ଆକାଶ ଉତ୍ସବ କରାୟେ ॥

ଦୁନ୍ଦଭି ବାଦ୍ୟନାଦ ଭରି । ରଙ୍ଗେ ନାଚନ୍ତି ଅପସରି ॥
ଦେବେ କରନ୍ତି ପୁଷ୍ପ ବୃଷ୍ଟି । ଖଣ୍ଡିବେ ଗୋବନ୍ଦ ଅରିଷ୍ଟି ॥”

(ଜଗନ୍ନାଥ-ଦାସ)

“ହୁକ ନଗ୍ରଦନ୍ତ ହୁନଯୁନ ପରିକ୍ଷିତ ।
ରୋହିଣୀ ନକ୍ଷତ୍ର ଯେବେ ଭୈଲ ଉପସ୍ଥିତ ॥
ପରମ ଶୋଭନ କାଲ ଭୈଲ ସ୍ୱବେ ଲଡ ।
ସୁରଭି ଖିତଲ ହୁମଙ୍ଗଲ ବହେବାତ ॥
ଦଶ ଦ୍ଧଶ ପ୍ରସନ୍ନ ନର୍ମଲ ତାରାଗନ ।
ମଧୁକର ଗୁଞ୍ଜନର ପୂର୍ଣ୍ଣିତ ଧୋଷି ବନ ॥
ପୃଥିବାର ହୁମଙ୍ଗଲ ମିଲଲ ଅପାର ।
ନଦ ନଦୀ ପ୍ରସନ୍ନ ପଙ୍କଜ ଜାନ୍ତି ସ୍ଥାର ॥
ଭୈଲ ମହାସୁକ୍ଷ ଅନ୍ତ ସଜ୍ଜନର ମନ ।
ଆକାଶରେ ସ୍ତୁତି କରେ ସିଦ୍ଧ ମୁନି ଗନ ॥

(ଶଙ୍କର ଦେବ)

ଶ୍ରୀ ଜଗନ୍ନାଥ ଦାସ, ଶ୍ରୀଧର ସ୍ୱାମୀଙ୍କ ଭାଗବତ ଟୀକା “ଭାବାର୍ଥ ଦୀପିକା” ଅବଲମ୍ବନରେ ଭାଗବତ ଲେଖିଛନ୍ତି । ଟୀକା ଆରମ୍ଭରେ ଶ୍ରୀଧର ସ୍ୱାମୀଙ୍କ ନୃସିଂହ ବନ୍ଦନା ଅବଲମ୍ବନରେ ଜଗନ୍ନାଥ ଦାସ ନୃସିଂହଙ୍କୁ ନମସ୍କାର କରି ଗ୍ରନ୍ଥ ଆରମ୍ଭରେ ଲେଖିଛନ୍ତି—

“ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥”

ଶଙ୍କର ଦେବ ମଧ୍ୟ ଜଗଦୀଶ ମିଶ୍ରଙ୍କ ଠାରୁ ଶ୍ରୀଧର ସ୍ୱାମୀଙ୍କ “ଭାବାର୍ଥ ଦୀପିକା” ପ୍ରାପ୍ତ ହୋଇ ତାହାରି ଅବଲମ୍ବନରେ ଭାଗବତ ଲେଖିଛନ୍ତି ବୋଲି ଆସାମର ସମସ୍ତ ଜୀବନୀ ଲେଖକମାନେ ଉଲ୍ଲେଖ କରିଛନ୍ତି । ତେଣୁ ଅତିବଡ଼ ଜଗନ୍ନାଥ ଦାସଙ୍କ ସହିତ ଶଙ୍କର ଦେବଙ୍କର ବହୁ କ୍ଷେତ୍ରରେ ଅଦ୍ଭୁତ ସମ୍ପର୍କ ରହିଅଛି । ଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଶାର ପ୍ରତ୍ୟେକ ଗ୍ରାମର ଭାଗବତ ଘରେ ପ୍ରତିଦିନ ପାଠ ହେଉଥିବା ଭଳି ଶଙ୍କର ଦେବଙ୍କ ଭାଗବତ ଆସାମର ପ୍ରତ୍ୟେକ ନାମଘରେ ପ୍ରତିଦିନ ପାଠ ହେଉଅଛି । ଭାଗବତ ଘରେ ଭାଗବତ ଗାଦିକୁ ସାକ୍ଷୀ ରଖି ଓଡ଼ିଶାର ଲୋକମାନେ ଗ୍ରାମର ବାଦ ବିବାଦ ସମାଧାନ କଲା ଭଳି ଆସାମର

ନାମ ଧରେ ଭାଗବତଙ୍କୁ ସାକ୍ଷୀରଖି ବାଦ ବିବାଦର ସମାଧାନ ହେଉ ଅଛି । ଏ ଦୁଇ ମହାପୁରୁଷଙ୍କ ଯୋଗୁ ଆସାମ ଏବଂ ଓଡ଼ିଶାର ସାଂସ୍କୃତିକ ସମ୍ପର୍କ କେତେ ନିବିଡ଼ ଥିଲା, ସହଜରେ ଅନୁମେୟ ।

ପ୍ରୟାଗ ତୀର୍ଥରେ ଗଙ୍ଗା, ଯମୁନା, ସରସ୍ୱତୀ ମିଳିତ ହେଲାଭଳି ଶ୍ରୀଜଗନ୍ନାଥ ସମ୍ମୁଖରେ ଏ ତିନି ମହାତ୍ମାମାନଙ୍କର ମିଳନ ହୋଇଥିଲା । ଶ୍ରୀଚୈତନ୍ୟ ନିଜକୁ ରାଧା ଏବଂ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ମନେ କରୁଥିଲେ । ତେଣୁ ସେ ଥରେ ଶ୍ରୀଜଗନ୍ନାଥ ଦର୍ଶନ ସମୟରେ କହିଥିଲେ—

"ଯଃ କୌମାର ହର ସଏବ ବରସ୍ତା ଏବ ଚୈତ୍ର କ୍ଷପା ।
ତେ ଚୋନ୍ମିଳିତ ମାଳତୀ ସୁରଭୟୋ ପୌଢାଃ କଦମ୍ବା ନିଳାଃ ।
ସା ଚୈବାସ୍ମି ତଥାପି ସୁରତ ବ୍ୟାପାର ଲୀଳା ବିଧୌ ।
ରେବା ରୋଧସି ବେତସୀ ତରୁତଳେ ଚେତଃ ସମୁତ୍କଣ୍ଠତେ ।"

ଜଗନ୍ନାଥ ମହାପ୍ରଭୁ ଜଗନ୍ନାଥ ଦାସଙ୍କ ଜୀବନର ସର୍ବସ୍ୱ ଥିଲେ ।

ଶଙ୍କର ଦେବ ଶ୍ରୀଜଗନ୍ନାଥଙ୍କୁ ଆପଣାର ଗୁରୁ ମନେ କରୁଥିଲେ । ମୂର୍ତ୍ତି ପୂଜାର ସେ ଘୋର ବିରୋଧୀ ଥିଲେ ମଧ୍ୟ ଶ୍ରୀଜଗନ୍ନାଥ ଦର୍ଶନ ଓ ମହାପ୍ରସାଦ ସେବନରେ ପରମାନନ୍ଦ ଲଭ କରୁଥିଲେ । ଗୁରୁଦେବଙ୍କ ପଦାଙ୍କ ଅନୁସରଣ କରି ଶଙ୍କର ଦେବଙ୍କ ଶିଷ୍ୟ ପ୍ରଶିଷ୍ୟମାନେ ଅନ୍ୟ କୌଣସି ଦେବଦେବୀଙ୍କ ମୂର୍ତ୍ତିପୂଜା ଏବଂ ପ୍ରସାଦ ସେବନ କରୁ ନଥିଲେ ମଧ୍ୟ ଶ୍ରୀଜଗନ୍ନାଥ ଦର୍ଶନ କରିବାକୁ ପୁରୀ ଆସୁଛନ୍ତି ଏବଂ ମହାପ୍ରସାଦକୁ ଅମୃତ ଜ୍ଞାନରେ ଗ୍ରହଣ କରୁଛନ୍ତି । ଶଙ୍କର ଦେବଙ୍କ ମତରେ—

"ଆମାର ମତେ ଏ କ୍ଷେତ୍ରେ ପତିଆନ ଯାଇ ।
ପତିତପାବନ କ୍ଷେତ୍ରେ ଜାତି ପାଂତି ନାଇ ॥
ପ୍ରଭୁର ପ୍ରସାଦେ ନାଇ ଜାତିର ବିଚାର ।
ସ୍କନ୍ଦ ପୁରାଣେତେ ବ୍ୟାସ ପ୍ରକାଶ ଚାରର ॥
ଜଷ୍ଟ ବୈଷ୍ଣବ କୈବଲ୍ୟ ଯାପାଇଁ ଯେ ନନ୍ଦେ ।
ପୁରୁଷୋତ୍ତମେର ବାସ ନୋହେ ପରିବାଦେ ॥"

(ଶଙ୍କର ଗୋସେଇଁ ଚରିତ)

ଶଙ୍କର ଦେବ ଜଗନ୍ନାଥ ସଂସ୍କୃତି ଉପରେ "ଓରେଷା ବର୍ଣ୍ଣନ" ନାମରେ ଏକ ଗ୍ରନ୍ଥ ଲେଖିଛନ୍ତି । ପରବର୍ତ୍ତୀ କାଳରେ ତାଙ୍କ ଶିଷ୍ୟ ଶ୍ରୀଧରକନ୍ଦଳୀ ଗୁଣ୍ଡିଚ୍ଚ ଯାତ୍ରା ଉପରେ "ଗୁନଚ୍ଚ" ନାମରେ ଏକ ଗ୍ରନ୍ଥ ଲେଖିଛନ୍ତି । ଉଭୟ ଗ୍ରନ୍ଥ ଆସାମର ପ୍ରତ୍ୟେକ ନାମଘରେ କୀର୍ତ୍ତନ କରାଯାଏ ।

ଶଙ୍କର ଦେବଙ୍କ ପ୍ରବର୍ତ୍ତିତ "ଏକ ସରଣୀୟା" ମାର୍ଗ ଆଜି ମଧ୍ୟ ଆସାମରେ ପରିପୁଷ୍ଟ ରହିଛି । ଶ୍ରୀଚୈତନ୍ୟଙ୍କ "ରାଗାନୁଗା" ମାର୍ଗ ଭାରତବର୍ଷ ଅତିକ୍ରମ କରି ବିଦେଶରେ ପହଞ୍ଚି ପାରିଛି । କିନ୍ତୁ ଅତିବଡ଼ି ଜଗନ୍ନାଥ ଦାସଙ୍କ 'ଜ୍ଞାନମିଶ୍ରା' ମାର୍ଗର ସ୍ୱର କ୍ଷୀଣ ହୋଇ ଯାଇଛି । ତଥାପି ଜଗନ୍ନାଥ ଦାସ ଗୋସ୍ୱାମୀଙ୍କ ଧାର୍ମିକ ସମ୍ମାନ ସାମାନ୍ୟତମ କ୍ଷୁଣ୍ଣ ହୋଇ ପାରିନାହିଁ । ତାର ଏକମାତ୍ର କାରଣ ହେଲା ଶ୍ରୀଜଗନ୍ନାଥ ଦାସ ଗୋସ୍ୱାମୀଙ୍କ ଭାଗବତର ଯାଦୁକରି ରଚନା ଶୈଳୀର ପ୍ରାଣପୂତ ସମ୍ମୋହନ ଶକ୍ତି, ତାହା ଓଡ଼ିଆ ପ୍ରାଣରେ ଏପରି ଭାବେ ଲାଗିଯାଇ ଅଛି ଯେ ଚେଷ୍ଟା କରି ମଧ୍ୟ ଛଡ଼ା ହେବ ନାହିଁ ।



# ଓଡ଼ିଶାର ଭାଗବତ ସଂସ୍କୃତି ଓ ଜଗନ୍ନାଥ ଦାସ

ଶ୍ରୀ ପଙ୍କଜ ସାହୁ

ହିନ୍ଦୁ ଧର୍ମଗ୍ରନ୍ଥମାନଙ୍କ ମଧ୍ୟରେ ଯେଉଁ କେତେଗୋଟି ଧର୍ମଗ୍ରନ୍ଥ ସମଗ୍ର ବିଶ୍ୱରେ ଜାତି-ଧର୍ମ ନିର୍ବିଶେଷରେ କାଳଜୟୀ ପ୍ରତିଷ୍ଠା ଲଭି କରିଅଛି, ତନ୍ମଧ୍ୟରେ ଶ୍ରୀମଦ୍ ଭାଗବତ ଅନ୍ୟତମ । ହିନ୍ଦୁ ଶାସ୍ତ୍ର ପରମ୍ପରାରେ ସାଧାରଣତଃ ଦୁଇଗୋଟି ଭାଗବତ ଉପଲବ୍ଧ ହୋଇଥାଏ । ଯଥା—"ଭାଗବତୋ ଭଗବତ୍ୟା ବା ଚରିତଂ ଭାଗବତମ୍"—ଅର୍ଥାତ୍ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳାବିଧୃତ ଚରିତ ସମ୍ବଳିତ ଗ୍ରନ୍ଥ 'ଶ୍ରୀମଦ୍ ଭାଗବତମ୍' ଓ ଭଗବତୀ (ଦୁର୍ଗା-କାଳୀ-ଲକ୍ଷ୍ମୀ)ଙ୍କ ଚରିତ ଆଧାରିତ ଆଧ୍ୟାତ୍ମିକ ଗ୍ରନ୍ଥ 'ଶ୍ରୀମଦ୍ ଦେବୀ ଭାଗବତମ୍' । ପ୍ରୋକ୍ତ ଉଭୟ ଭାଗବତ ମଧ୍ୟରେ 'ଶ୍ରୀମଦ୍ଭାଗବତମ୍' ହିଁ ବିଶ୍ୱର ସର୍ବଶ୍ରେଷ୍ଠ ଦାର୍ଶନିକ ତତ୍ତ୍ୱସମ୍ବଳିତ ମହାନ୍ ଧର୍ମଗ୍ରନ୍ଥ ଅଟେ । "ବ୍ୟାସାୟ ବିଷ୍ଣୁ ରୂପାୟ ବ୍ୟାସରୂପାୟ ବିଷ୍ଣବେ" । କୃଷ୍ଣ ଚରିତ 'ଶ୍ରୀମଦ୍ ଭାଗବତ' କୃଷ୍ଣଦ୍ୱୈପାୟନ ବେଦବ୍ୟାସଙ୍କ ଅମର ଲେଖନୀପ୍ରସୂତ ସାରସ୍ୱତ ବିଭବ ।

ସେ ଚତୁର୍ବେଦ ସର୍ଜନା କରି ମଧ୍ୟ ଯଥୋଚିତ ଆନନ୍ଦ ପାଇପାରିଲେ ନାହିଁ । କାରଣ ତତ୍କାଳୀନ ଧର୍ମଧ୍ୱଜୀ ଆଭିଜାତ୍ୟ ସମ୍ପ୍ରଦାୟ ଅର୍ଦ୍ଧ-ନିରକ୍ଷର-ଆଦିବାସୀ ତଥା ଶୂଦ୍ରମାନଙ୍କୁ ବେଦାଧ୍ୟୟନରୁ ବଞ୍ଚିତ କଲେ । ଏପରିକି ସମାଜର ନାରୀମାନେ ମଧ୍ୟ ବେଦପାଠ ଓ ବେଦଶ୍ରବଣ ନିମିତ୍ତ ଅନୁପଯୁକ୍ତ ବିବେଚିତ ହେଲେ । ନାରୀ, ଶୂଦ୍ର ଓ ଅଧମ ଜାତିମାନଙ୍କର ବେଦରେ

ଅନ୍ଧକାର ହୃଦୟଙ୍ଗମ କରି ଘୋର ଅଶାନ୍ତି ଅନୁଭବ କଲେ ବ୍ୟାସଦେବ । ଚତୁର୍ବେଦ ବିଭାଗ ପରେ ଭାରତ ନାମକ କାବ୍ୟ ତାଙ୍କ କୀର୍ତ୍ତିକୁ ଉଚ୍ଚତର କରିଥିଲା। 'ଭାରତ ପଞ୍ଚମବେଦ' ବା "ଭାରତଃ ପଞ୍ଚମଃବେଦଃ" ରୂପେ ସ୍ୱୀକୃତ ଲାଭକଲା । କାବ୍ୟକାବ୍ୟ (ମହାଭାରତ) ରଚନା କରି ନାରୀ ଓ ଶୂଦ୍ରମାନଙ୍କୁ ଯଥାସମ୍ଭବ ସମ୍ମାନ ତଥା ଅଧିକାର ପ୍ରଦାନ କରି ମଧ୍ୟ ଅଷ୍ଟାଦଶ ପୁରାଣକର୍ତ୍ତା ବାଦରାୟଣ ବ୍ୟାସଦେବଙ୍କ ନିମିତ୍ତ ଶାନ୍ତି ପ୍ରାପ୍ତି ସୁଦୂରପରାହତ ହେଲା ।

ତେଣୁ ନାରଦଙ୍କ ପରାମର୍ଶକ୍ରମେ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଶ୍ରୀମଦ୍ ଭାଗବତ ରଚନା କରି ସ୍ୱପୁତ୍ର ଶୁକଦେବଙ୍କୁ ତାହାର ଗୂଢ଼ ତତ୍ତ୍ୱମାନ ଉପଦେଶ ଛଳରେ କହି ଭାଗବତ ଧର୍ମ ପ୍ରଚାର ତଥା ପ୍ରସାର ନିମିତ୍ତ ସୁଦୃଢ଼ ଭିତ୍ତି ସ୍ଥାପନ କରିଥିଲେ । ପରବର୍ତ୍ତୀ ସମୟରେ ଶ୍ରୋତାବକ୍ତା ପ୍ରଧାନ ଶାସ୍ତ୍ର 'ଶ୍ରୀମଦ୍ ଭାଗବତ' ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ବକ୍ତାଙ୍କ ଦ୍ୱାରା ଅଭିବ୍ୟକ୍ତ ହେବା ସଙ୍ଗେସଙ୍ଗେ ସବୁ ସମୟରେ ଶ୍ରୋତାଙ୍କ ଦ୍ୱାରା ମଧ୍ୟ ଆଦୃତ ହୋଇଅଛି । ଯଥା --ଶୁକ ପରୀକ୍ଷିତଙ୍କୁ, ନାରଦ ବସୁଦେବଙ୍କୁ, କବି ନିମିରାଜାଙ୍କୁ, ଅବଧୂତ ଯଦୁରାଜଙ୍କୁ, ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଓ ସୂତ ଶୌନକ ପ୍ରଭୃତି ମୁନିଗଣଙ୍କୁ ଏହି ଭାଗବତର ପରମତତ୍ତ୍ୱ ବ୍ୟାଖ୍ୟାନ କରିଅଛନ୍ତି ।

ବ୍ୟାସଦେବ ଶ୍ରୀମଦ୍ ଭାଗବତକୁ ଅଷ୍ଟାଦଶ ପୁରାଣମଧ୍ୟରେ ମହା-ପୁରାଣ, ଶାଶ୍ୱତ ଶ୍ରୁତି ଓ ସାତ୍ତ୍ୱତ ସଂହିତା ନାମରେ ଅଭିହିତ କରି ଶ୍ରେଷ୍ଠତ୍ୱ ପ୍ରଦାନ କରିଅଛନ୍ତି । ସମସ୍ତ ଉପନିଷଦର ତତ୍ତ୍ୱାର୍ଥ ତଥା ସକଳ ପୁରାଣର ସାର ଆହରଣପୂର୍ବକ ସର୍ବଧର୍ମଗ୍ରନ୍ଥର ନିର୍ଯ୍ୟାସ ଅବଲମ୍ବନରେ ବ୍ୟାସଦେବ ଉକ୍ତ ମହାନ ଗ୍ରନ୍ଥର ଅବତାରଣା କରିଥିଲେ । ଫଳରେ ଯେକୌଣସି ଜାତି, ଯେକୌଣସି ସମ୍ପ୍ରଦାୟ ପାଇଁ ଏହା ସାର୍ବଜନୀନ ଓ ସାର୍ବକାଳିକ ବାର୍ତ୍ତା ବହନ କରିଆସିଛି (୧) । ଉପନିଷଦ, ବ୍ରହ୍ମସୂତ୍ର ଓ ଶ୍ରୀମଦ୍ ଭାଗବତଗୀତା ପ୍ରଭୃତି 'ପ୍ରସ୍ଥାନତ୍ରୟୀ' ଅପେକ୍ଷା 'ଶ୍ରୀମଦ୍ ଭାଗବତମ୍' ସର୍ବାଧିକ ଜନାଦୃତ ଅଟେ । ପ୍ରସ୍ଥାନତ୍ରୟୀ ମଧ୍ୟରେ ପରିଗଣିତ ନହେଲେ ମଧ୍ୟ ଏହାକୁ 'ଚତୁର୍ଥ ପ୍ରସ୍ଥାନ' ରୂପେ ଆଖ୍ୟାୟିତ କଲେ

(୧) ଡଃ ଗଙ୍ଗାଧର ବଳ— ଶ୍ରୀମଦ୍ ଭାଗବତ : ଏକ ଅଧ୍ୟୟନ, କୋଣାର୍କ ୭୮ ତମ ସଂଖ୍ୟା, ପୃ-୧୦ ।

ଅନ୍ତର୍ଭୁକ୍ତ ହେବନାହିଁ । ଶ୍ରୀମଦ୍ ଭାଗବତରେ ବେଦ, ବେଦାନ୍ତ, ଉପନିଷଦ, ଷଡ଼ଦର୍ଶନ, ଶ୍ରୁତି ଓ ସ୍ମୃତିଶାସ୍ତ୍ରର କଠିନତତ୍ତ୍ୱ ସନ୍ନିବିଷ୍ଟ ହୋଇଅଛି ।

ପୁନଶ୍ଚ ବ୍ରହ୍ମତତ୍ତ୍ୱ, ପରମାତ୍ମାତତ୍ତ୍ୱ, ନିର୍ବିଶେଷତତ୍ତ୍ୱ, ତଥା ସବିଶେଷତତ୍ତ୍ୱ ପ୍ରଭୃତି ଯାବତୀୟ ତତ୍ତ୍ୱ ଓ ଅନୁତତ୍ତ୍ୱ ଦ୍ୱାରା ଶ୍ରୀମଦ୍ ଭାଗବତ ପରିପୂର୍ଣ୍ଣ । ଶ୍ରୀମଦ୍ ଭାଗବତରେ ଦ୍ୱୈତ, ଅଦ୍ୱୈତ, ଦ୍ୱୈତାଦ୍ୱୈତ ଓ ବିଶିଷ୍ଟାଦ୍ୱୈତବାଦର ଚମତ୍କାର ସମନ୍ୱୟ କରାଯାଇ ମୀମାଂସା, ସାଂଖ୍ୟ ଓ ଯୋଗାଦି ଦର୍ଶନର ସାରମର୍ମ ପ୍ରତିଫଳନ କରାଯାଇଛି (୨) । ଋତୁପରେ ଶୀତ, ଗ୍ରୀଷ୍ମପରେ ବର୍ଷା ଇତ୍ୟାଦି ସତ୍‌ତତ୍ତ୍ୱ ଅଟେ । ଜଳ ନିମ୍ନଗାମୀ, ଧୂମ ଊର୍ଦ୍ଧ୍ୱଗାମୀ ଇତ୍ୟାଦି ପ୍ରାକୃତିକ ନିୟମଗୁଡ଼ିକ ତତ୍ତ୍ୱତତ୍ତ୍ୱର ବଶବର୍ତ୍ତୀ ଅଟେ । ଭାଗବତ ଭକ୍ତ- ଭକ୍ତି ଭଗବାନଙ୍କ ସମ୍ବନ୍ଧୀୟ ମହାନ ଚରିତରେ ପରିପୂର୍ଣ୍ଣ ।

ଭକ୍ତି ରସାତ୍ମକ ସର୍ବପୁରାଣସାର ଉକ୍ତ ଭାଗବତ ଶାସ୍ତ୍ରକୁ ବ୍ୟାସଦେବ ଭାବ (ଭା), ଜ୍ଞାନ (ଗ), ବ୍ରହ୍ମ (ବ), ତତ୍ତ୍ୱ (ତ) ସମ୍ବନ୍ଧୀୟ କଥାବସ୍ତୁରେ ଗ୍ରନ୍ଥିତ କରି ଏହାକୁ ଏକ ମହାପୁରାଣର ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ସେଥିପାଇଁ ଉକ୍ତ ଭକ୍ତିଗ୍ରନ୍ଥକୁ ମହାପୁରୁଷମାନେ 'ସମ୍ବନ୍ଧାନ ସାର୍ବଭୌମ' ବା 'ସର୍ବପ୍ରମାଣ ଚକ୍ରବର୍ତ୍ତୀ' ବୋଲି ଅଭିହିତ କରିଛନ୍ତି । "ବିଦ୍ୟାଃ ଭାଗବତାବଧିଃ"—ଅର୍ଥାତ୍ ଭାରତବର୍ଷରେ ପାଣ୍ଡିତ୍ୟର ଶେଷସୀମା ହେଉଛି ଭାଗବତ । ତେଣୁ ଶ୍ରୀମଦ୍ ଭାଗବତର ଉତ୍କର୍ଷ ପ୍ରତିପାଦନ କରି ଯଥାର୍ଥରେ କୁହାଯାଇଛି "ବିଦ୍ୟାବତାଂ ଭାଗବତେ ପରୀକ୍ଷା" । ଅର୍ଥାତ୍ ପଣ୍ଡିତମାନଙ୍କର ବିଦ୍ୱତ୍ତା ପରୀକ୍ଷାନିମିତ୍ତ ଶ୍ରୀମଦ୍ ଭାଗବତ ହେଉଛି ଏକ ନିକଷ ସ୍ୱରୂପ । ଅତଏବ ଯେ ଉତ୍ତମ ରୂପେ ଭାଗବତ ଆୟତ୍ତ କରିପାରେ ସେ ସର୍ବାଧିକ ପରିମାଣରେ ଜ୍ଞାନସମ୍ପନ୍ନ ବୋଲି ସ୍ୱୀକୃତ ହୋଇଥାଏ ।

ସାମ୍ପ୍ରତିକ ବିଶ୍ୱରେ ଇସ୍କନ୍‌ଗୋଷ୍ଠୀ (ଆନ୍ତର୍ଜାତୀୟ କୃଷ୍ଣଭାବନା ସଂଘ)ର ଅଭ୍ୟୁଦୟ ଫଳରେ ସର୍ବତ୍ର ଭାଗବତ ସଂସ୍କୃତିର ଅନ୍ତର୍ଭୁକ୍ତ ପ୍ରଭାବ ବୃଦ୍ଧି ପାଉଥିବାର ପ୍ରମାଣ ମିଳେ । ଏହି ପରିପ୍ରେକ୍ଷୀରେ ଜନୈକ

---

(୨) ପଣ୍ଡିତ କୃପାମଣି ଦାଶଙ୍କ ସମ୍ପାଦିତ ଶ୍ରୀମଦ୍‌ଭାଗବତ ଗୀତା (୧୯୭୧) ପ୍ରବେଶିକା ପୃ-୬

ଆମେରିକୀୟ ସାଧୁଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ଯଥା—ବାଇବେଲ ଯଦି କଣ୍ଠରଗାଟନ ହୁଏ, ତେବେ ଭାଗବତ ହେଉଛି ବିଶ୍ୱବିଦ୍ୟାଳୟ ତୁଲ୍ୟ ମହାନ । ପ୍ରୋକ୍ତ ଉକ୍ତିରୁ ଭାଗବତର ବୈଶିଷ୍ଟ୍ୟ ହିଁ ପ୍ରତିପାଦିତ ।

ଆଧୁନିକ ଐତିହାସିକମାନଙ୍କ ମତରେ ଅଷ୍ଟାଦଶ ପୁରାଣକର୍ତ୍ତା ବ୍ୟାସଦେବ ଯଥାର୍ଥରେ ଉକ୍ତ ପରମଶାସ୍ତ୍ରର ରଚୟିତା ନୁହନ୍ତି । ସଂସ୍କୃତ ସାହିତ୍ୟର ଆଲୋଚକମାନେ ବ୍ୟାସଦେବ ନାମକ କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ 'ବ୍ୟାସ' ଶବ୍ଦର ଅର୍ଥ ସଂଗ୍ରାହକ । ପରବର୍ତ୍ତୀକାଳରେ ଏହା ପରାଶର ପୁତ୍ର ମହାତ୍ମା କୃଷ୍ଣ-ଦ୍ୱୈପାୟନଙ୍କ ପ୍ରତି ପ୍ରଯୋଜ୍ୟ ହୋଇଅଛି । ଏକଦା 'ବ୍ୟାସ' ଶବ୍ଦ ପୁରାଣ ପରିବେଷକ ପୁରାଣ ପଣ୍ଡାଙ୍କୁ ବୁଝାଉଥିଲା । ଯେ ପୁରାଣ ଲେଖୁଥିଲା ବା ପୁରାଣ ପରିବେଷଣ କରୁଥିଲା ତାଙ୍କୁ ପୁରାଣପଣ୍ଡା ବା ବ୍ୟାସ କୁହା-ଯାଉଥିଲା ।

ପୁରାଣୋକ୍ତ ଅନୁସାରେ "ଅଷ୍ଟାବିଂଶତିରତୈ୍ୟରେ ବେଦବ୍ୟାସଃ ପୁରାତନଃ"—ଅର୍ଥାତ୍ ପୁରାକାଳରେ ୨୮ ଜଣ ବେଦବ୍ୟାସ ପୁରାଣସ୍ରଷ୍ଟା ଥିଲେ । ହୋଇପାରେ କୌଣସି ଏକ ବ୍ୟାସ (ପୁରାଣପଣ୍ଡା)ଙ୍କ ଦ୍ୱାରା ଭାଗବତ ରଚିତ ହୋଇଥିଲା । ଅନ୍ୟ କେତେକଙ୍କ ମତରେ ତାଞ୍ଜୋରର ପଣ୍ଡିତ ବୋପଦେବ ଭାଗବତର ରଚୟିତା ଅଟନ୍ତି । ଏହାର ସତ୍ୟତା ନିର୍ଦ୍ଧାରଣ ଜନ୍ତୁ ଗବେଷଣାସାପେକ୍ଷ । ସେ ଯାହାହେଉନା କାହିଁକି ଭାଗବତର ଅକୃତ୍ରିମ ସୌନ୍ଦର୍ଯ୍ୟ, ଏହାକୁ ପୃଥିବୀର ସର୍ବଶ୍ରେଷ୍ଠ ଆଧ୍ୟାତ୍ମିକ ସାହିତ୍ୟର ମର୍ଯ୍ୟାଦା ଯେ ପ୍ରଦାନ କରିଛି; ଏହା ନିଃସନ୍ଦେହ ।

## ଭାଗବତ ଧର୍ମର ସଂଜ୍ଞା ଓ ସ୍ୱରୂପ

ଧର୍ମଗ୍ରନ୍ଥ ଶ୍ରୀମଦ୍‌ଭାଗବତକୁ ଉପଜୀବ୍ୟ କରି ଅତୀତରେ 'ଭାଗବତ ଧର୍ମ' ନାମରେ ଏକ ସାର୍ବଜନୀନ ଧର୍ମ ପ୍ରତିଷ୍ଠାଲାଭ କରିଥିଲା । ଉକ୍ତ ଭାଗବତ ଧର୍ମ ହେଉଛି ବିଶ୍ୱର ପ୍ରାଚୀନତମ ଧର୍ମ । କାରଣ ବିଶ୍ୱର ପ୍ରାଚୀନ ସାହିତ୍ୟ ଋକ୍‌ବେଦରେ ଭାଗବତ ଧର୍ମ ବା ବାସୁଦେବ ଆରାଧନାର ପ୍ରଥମ ସଙ୍କେତ ଉପଲବ୍ଧ ହୋଇଥାଏ । ଏତଦ୍‌ବ୍ୟତୀତ ପରବର୍ତ୍ତୀକାଳରେ ତୈତ୍ତିରୀୟ ସଂହିତା, 'ତୈତ୍ତିରୀୟ ବ୍ରାହ୍ମଣ' 'ଶତପଥ ବ୍ରାହ୍ମଣ', 'ଜୈମିନୀୟ ଉପନିଷଦ', କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ ଭାଗବତ

ବାସୁଦେବ ଉପାସନା ସମ୍ପର୍କିତ ପ୍ରଭୂତ ତଥ୍ୟ ପ୍ରଦତ୍ତ ହୋଇଅଛି । ରାମକୃଷ୍ଣ ପରମହଂସ ଓ ଗୋପାଳ ଭଣ୍ଡାରକର ପ୍ରଭୃତି ପଣ୍ଡିତମାନଙ୍କ ମତରେ ଉପନିଷଦର ଚିନ୍ତାଧାରାକୁ ସମ୍ବଳ କରି ପଶ୍ଚିମ ଭାରତରେ ପ୍ରଚଳିତ ଭାଗବତ ଧର୍ମ ତତ୍କାଳରେ ବେଶ୍ ସୁଖ୍ୟାତି ଲାଭ କରିଥିଲା ।

ପ୍ରଳୟକାଳୀନ ଅନନ୍ତଶାୟୀ ବିଷ୍ଣୁ ଏହି ମହାନ ଧର୍ମର ଆଦ୍ୟ ପ୍ରବର୍ତ୍ତକ ଅଟନ୍ତି । ଶ୍ରୀବିଷ୍ଣୁଙ୍କ ପ୍ରବର୍ତ୍ତିତ ବୈଷ୍ଣବଧର୍ମ ହିଁ ଭାଗବତଧର୍ମ ଅଟେ । 'ନାରାୟଣ ସୂକ୍ତ' ଅନୁଶୀଳନରୁ ଜଣାଯାଏ ଯେ ପ୍ରଳୟକାଳରେ ଅନନ୍ତ ନାରାୟଣ କଳ୍ପବଟ ପୃଷ୍ଠରେ ଲୀଳାୟିତ ଥାଇ ଯେଉଁ ପୁଂ-ଧର୍ମ ପ୍ରଗଟ କରିଥିଲେ, ତାହା ହେଉଛି ଭାଗବତ ଧର୍ମର ଆଦ୍ୟ ଉନ୍ମେଷ । ତତ୍ପରେ ତାଙ୍କ ପ୍ରବର୍ତ୍ତିତ ସ୍ତ୍ରୀ ଧର୍ମ ଯାହାକି ମାତୃଧର୍ମ ନାମରେ ସଙ୍କଳନ ହେଲା, ତାହା କ୍ରମେ ଭାଗବତ ଧର୍ମକୁ ପରିପୁଷ୍ଟ କରିଥିଲା । ଜଗତ-କର୍ତ୍ତା ବିଷ୍ଣୁ (ବିଶ୍-ା-ନୁ) ବିଶ୍ୱବ୍ୟାପୀ, ବିଶ୍ୱତୋମୁଖ, ବିଶ୍ୱପ୍ରାଣ, ପରମାତ୍ମା ତଥା ପୁରୁଷୋତ୍ତମ ଅଟନ୍ତି । ବିଶ୍ୱରେ ଧର୍ମର ଗ୍ଳାନି ତଥା ଅଧର୍ମର ଅଭ୍ୟୁତ୍ଥାନ ସଂଘଟିତ ହେବା ସନ୍ଧିକ୍ଷଣରେ ଗୋଲକାଧିପତି ବିଷ୍ଣୁ ବସୁଦେବ ଔରସ ତଥା ଦେବକୀ ଗର୍ଭରୁ ଆବିର୍ଭୂତ ହେଲେ । ସାତ୍ୱତ-ବଂଶୀ କ୍ଷତ୍ରିୟଗଣ ବୈଷ୍ଣବଧର୍ମକୁ ଗଣଧର୍ମରେ ପରିଣତ କରିବାକୁ ଏକନିଷ୍ଠ ଉଦ୍ୟମ କରୁଥିବା ଅବସରରେ ବୃଷ୍ଣି ବା ଯାଦବ ବଂଶର ବାସୁଦେବକୃଷ୍ଣ ତତ୍କାଳୀନ ଧର୍ମବିପ୍ଳବରେ ଏକ କର୍ଣ୍ଣଧାରର ଭୂମିକା ନିର୍ବାହ କରିଥିଲେ । ଗଣଧର୍ମର ପ୍ରତିଷ୍ଠା ନିମନ୍ତେ ଶ୍ରୀକୃଷ୍ଣଙ୍କ ଗଣଦେବତା ରୂପେ ସ୍ୱୀକୃତି ଦେଇ ଭାଗବତଧର୍ମକୁ ସଂସ୍ଥାପିତ କରିବା ନିମିତ୍ତ ତତ୍କାଳରେ ଧର୍ମାଚାର୍ଯ୍ୟମାନଙ୍କ ମଧ୍ୟରେ ଅବଶ୍ୟ ମତଦ୍ୱୈଧ ନଥିଲା ।

ସେହି ଲୀଳାବିଧୃତ ଶ୍ରୀକୃଷ୍ଣ ସ୍ୱୀୟ ଅଲୌକିକତା ବଳରେ ଏକ ଦେବତା ସ୍ତରକୁ ଉନ୍ନୀତ ହୋଇ ସମୟର ଆବଶ୍ୟକତା ବୋଧରେ ଗୋପୀଗୋପାଳଚନ୍ଦ୍ର, ମଥୁରାଧୀଶ୍ୱର, ଦ୍ୱାରକାନାଥ, ମହାଭାରତୀୟ କୃଷ୍ଣ ଓ ଶ୍ରୀମଦ୍ଭଗବତ ଗୀତାର ପୁରୁଷୋତ୍ତମ ପ୍ରଭୃତି ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରିଛନ୍ତି । ବାସୁଦେବ କୃଷ୍ଣ କର୍ମକାଣ୍ଡ ବିରୋଧୀ ଏକ ମହାନ ପୁରୁଷ ଅଟନ୍ତି । ସେ ଘୋରଅଙ୍ଗୀରସଙ୍କଠାରୁ ଯଜ୍ଞତତ୍ତ୍ୱ ଶିକ୍ଷାକରି ବୈଦିକ ଆର୍ଯ୍ୟସମାଜମଣ୍ଡଳରେ ଏକ ବୈପ୍ଳବିକ ସଂଶୋଧନ ତଥା ଧର୍ମ-

ଗୀତରେ ଉଲ୍ଲେଖଯୋଗ୍ୟ ସଂସ୍କାର ଆନୟନ କରିଥିଲେ । ମହାଭାରତୀୟ କୃଷ୍ଣ ହେଉଛନ୍ତି ଧର୍ମ ଓ ଅଧର୍ମ ମଧ୍ୟରେ ଏକ ସମାଧାନକାମୀ ସୂତ୍ରଧର । ମହାଭାରତ ଯୁଦ୍ଧର ପ୍ରଧାନ ନାୟକ ସେ । ମହାଭାରତ କାବ୍ୟର ବାସ୍ତବ ନାମ 'ଜୟକାବ୍ୟ ।' ଏହି ଯୁଦ୍ଧର ପରିଣତି ହେଉଛି ପକ୍ଷର ପରାଜୟରେ ସ୍ଵପକ୍ଷର ଜୟ । ମାତ୍ର "ଯତୋ ଧର୍ମ ସ୍ତତୋ କୃଷ୍ଣଃ, ଯତୋ କୃଷ୍ଣ ସ୍ତତୋ ଜୟ ।" ମହାଭାରତ ଯୁଦ୍ଧରେ କୃଷ୍ଣ ସର୍ବଦା ଧର୍ମର ସ୍ୱପକ୍ଷ ନେଇଛନ୍ତି । ତେଣୁ ଧର୍ମାଶ୍ରୟୀମାନଙ୍କ ପକ୍ଷ ହିଁ ବିଜୟଶ୍ରୀ ମଣ୍ଡିତ ହୋଇଛି ।

ମହାଭାରତ ଯୁଦ୍ଧର ଅବ୍ୟବହିତ ପୂର୍ବରୁ ଶ୍ରୀକୃଷ୍ଣ ଗୀତାର ପୁରୁଷୋତ୍ତମ ରୂପେ ଆବିର୍ଭୂତ ହୋଇଛନ୍ତି । ସେତିକରେ ତାଙ୍କ କର୍ତ୍ତବ୍ୟର ପରିସମାପ୍ତି ଘଟିନାହିଁ । ଏଥିପାଇଁ ତାଙ୍କୁ ଶ୍ରୀମଦ୍‌ଭାଗବତର ବାସୁଦେବ କୃଷ୍ଣ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼ିଛି । ଭାଗବତ ଧର୍ମର ସଂଜ୍ଞା ଓ ସ୍ୱରୂପ ଉଦ୍‌ଘାଟନ ନିମିତ୍ତ ବ୍ୟାସକୃତ ଶ୍ରୀମଦ୍‌ଭାଗବତ ଅନୁଶୀଳନ ଏକାନ୍ତ ବିଧେୟ । କାରଣ ଆର୍ଯ୍ୟ ଧର୍ମଚେତନାର ସାରସ୍ୱତ୍ତ୍ୱ ଓ ସାରତତ୍ତ୍ୱ 'ଶ୍ରୀମଦ୍‌ଭାଗବତ'ରେ ନିହିତ ।

ଶ୍ରୀମଦ୍ ଭାଗବତକୁ ଆଧାର କରି ପରବର୍ତ୍ତୀ ବିଶ୍ୱରେ ଯେଉଁ ଭାଗବତ ଧର୍ମ ଆତ୍ମପ୍ରକାଶ କରିଥିଲା ତାହା ସାଭିତ ଗଣତନ୍ତ୍ର ନାମରେ କଥିତ । ଗଣତନ୍ତ୍ରର ମୂଖ୍ୟ ଉପାଦାନ ଭାଗବତରେ ହିଁ ବର୍ଣ୍ଣିତ ହୋଇଅଛି । ଅଜ୍ଞମାନଙ୍କର ଆତ୍ମସାଧନର ପନ୍ଥା ହିଁ ଭାଗବତ ଧର୍ମ । ଭଗବାନ କୃଷ୍ଣ ବାସୁଦେବ ଅଜ୍ଞ ପୁରୁଷମାନଙ୍କ ଆତ୍ମଜ୍ଞାନ ଲାଭ ପରିପ୍ରେକ୍ଷୀରେ ଯେଉଁ ସହଜ ଉପାୟ ନିଜ ମୁଖରେ ବ୍ୟକ୍ତ କରିଛନ୍ତି; ତାହା ହିଁ ଭାଗବତ ଧର୍ମର ମୁଖ୍ୟ ଉପଜୀବ୍ୟ । ଅସମର୍ଥ ଅଜ୍ଞମାନଙ୍କର ଜାତୀୟ ଧର୍ମ ସମସ୍ୟାର ସମାଧାନ ରୂପେ ଭାଗବତ ଧର୍ମ ଗଣଧର୍ମର ଭିତ୍ତି ସ୍ୱରୂପ ଅଟେ । ସମାଜରେ ଯେଉଁ ଧର୍ମ ସମସ୍ତଙ୍କୁ ସମାନ ଅଧିକାର ଓ ସୁଯୋଗ ପ୍ରଦାନ କରି ଆସିଛି; ତାହା ହିଁ ବାସ୍ତବରେ ଭାଗବତ ଧର୍ମ । ଶ୍ରୀକୃଷ୍ଣ ସମସ୍ତଙ୍କ ପିତା, ମାତା, ପୁତ୍ର କଳ୍ପ ହୋଇଥିବାରୁ ତାଙ୍କ ବିଗ୍ରହରେ ଭେଦଭାବ ନ ରହିବା ସ୍ୱାଭାବିକ । ଯେହେତୁ ସମଦର୍ଶନ ଭାଗବତ ଧର୍ମର ନିର୍ଯ୍ୟାସ, ତେଣୁ କୃଷ୍ଣ କେନ୍ଦ୍ରିକ ଭାଗବତ ଧର୍ମରେ ବ୍ରାହ୍ମଣ-ଚଣ୍ଡାଳ ଭେଦ ଅକଳ୍ପନୀୟ । ଭାଗବତଧର୍ମ

ଚଣ୍ଡାଳକୁଳ ପବିତ୍ର କରିଥାଏ । ମାତ୍ର ଗର୍ବୋନ୍ମତ୍ତ ପଣ୍ଡିତମନ୍ୟ ବ୍ରାହ୍ମଣ ପକ୍ଷରେ ତାହା ସୁଦୂର ପରାହତ ହୋଇଥାଏ । (ଭାଗବତ ୭।୯)

'ପଦ୍ମତନ୍ତ୍ର'ର ସାତ୍ତ୍ୱତ ଧର୍ମର 'ପ୍ରବର୍ତ୍ତକ ଏବଂ ଭାଗବତ ଧର୍ମର ପ୍ରଚାରକ' ଦୁଇଜଣ ବାସୁଦେବଙ୍କ ସୂଚନା ମିଳେ । ରାମକୃଷ୍ଣ ଓ ଗୋପାଳ ଭଣ୍ଡାରକରଙ୍କ ମଧ୍ୟ ବାସୁଦେବ କୃଷ୍ଣଙ୍କୁ ଦୁଇଟି ଭିନ୍ନ ଚରିତ୍ର ରୂପେ ଅବଧାରଣା କରିଛନ୍ତି । ତାଙ୍କ ମତରେ ବୃଷ୍ଣି ବା ଯାଦବବଂଶୀୟ ବାସୁଦେବ ଓ ବସୁଦେବ ପୁତ୍ର ବାସୁଦେବ କୃଷ୍ଣ ଉଭୟେ ସ୍ୱତନ୍ତ୍ର ଚରିତ୍ର ଅଟନ୍ତି । ମାତ୍ର କଥ୍ ସାହେବ ଉଭୟଙ୍କୁ ଅଭିନ୍ନ ଭାବେ ପ୍ରତିପାଦନ କରିଛନ୍ତି । ମହାଭାରତ (୧୨।୩୪୮)ରେ ଉଲ୍ଲେଖ ଅଛି ଯେ, ସାତ୍ତ୍ୱତ ବା ଭାଗବତ ଧର୍ମ ବାସୁଦେବ କୃଷ୍ଣଙ୍କ ଦ୍ୱାରା ସଂସ୍ଥାପିତ ହୋଇଅଛି । ବାସୁଦେବ ସକଳ ପ୍ରାଣୀର ମୂଳାଧାର । ସକଳ ବିଶ୍ୱକୁ ସେ ସୂର୍ଯ୍ୟ ରୂପରେ କିରଣ ଜାଳରେ ଆଚ୍ଛାଦିତ କରିଥିବାରୁ ବାସୁଦେବ ନାମ ତାଙ୍କର ଯଥାର୍ଥ ।

ଧର୍ମ ସଂସ୍ଥାପନ ନିମିତ୍ତ ସେ ରାଧ ପାଦ ଧରିଛନ୍ତି । ଅତ୍ୟାଚାରୀ ଶତ୍ରୁ ଦମନ ଉଦ୍ଦେଶ୍ୟରେ ଷଡ଼ଯନ୍ତ୍ର ମଧ୍ୟ କରିଛନ୍ତି । ଏଥିପାଇଁ ଆତ୍ମୀୟ ସ୍ୱଜନଙ୍କୁ ଅକୁଣ୍ଠିତ ଚିତ୍ତରେ ବଧ କରିଛନ୍ତି । ଏପରିକି ଦ୍ୱିଧାହୀନଭାବେ ସ୍ୱୀୟ ବଂଶ ମଧ୍ୟ ଧ୍ୱଂସ କରିଛନ୍ତି । କେବଳ ସେତିକି ନୁହେଁ କୃଷ୍ଣଙ୍କର ଏହି ମହତ ଉଦ୍ଦେଶ୍ୟ ସାଧନ ନିମିତ୍ତ ଭାରତବର୍ଷର ବିପୁଳ ଜନତା ପ୍ରାଣବଳି ଦେବା ସଙ୍ଗେ ସଙ୍ଗେ ଅନେକ ରାଜବଂଶ ଯଥା ଚନ୍ଦ୍ରବଂଶ, କୁରୁବଂଶ ଓ ଯଦୁବଂଶ ପ୍ରଭୃତିର ପତନ ଘଟିଛି ସତ, ମାତ୍ର ଭାଗବତ ଧର୍ମ ଏକ କ୍ରାନ୍ତିକାରୀ ଧର୍ମରୂପେ ସମୟର ଘାତପ୍ରତିଘାତ ମଧ୍ୟରେ ବିଭିନ୍ନ ବିବର୍ତ୍ତନର ସମ୍ମୁଖୀନ ହୋଇ ମଧ୍ୟ ଉଜ୍ଜୀବିତ ରହିଅଛି । ଶ୍ରୀକୃଷ୍ଣଙ୍କ ପ୍ରାଧାନ୍ୟରୁ ବୈଷ୍ଣବଧର୍ମ ଇତିହାସରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ସଙ୍ଘଟିତ ହୋଇଅଛି । ବଳ, ଜ୍ଞାନ, ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଶକ୍ତି ଓ ତେଜ ପ୍ରଭୃତି ଷଡ଼ ଐଶ୍ୱର୍ଯ୍ୟଯୁକ୍ତ ବାସୁଦେବ ହୋଇଛନ୍ତି ସର୍ବଶକ୍ତିମାନ । "ଏ ତେ ଚାଂଶ କଳା ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟଂ ।" ସେହି କୃଷ୍ଣ-ବାସୁଦେବ ସୃଷ୍ଟି ଅଭିପ୍ରାୟରେ ଚତୁର୍ଦ୍ଧା ପରିକଳ୍ପିତ ହୋଇଅଛି । ବାସୁଦେବ ସ୍ୱୟଂ ଏହି ସୃଷ୍ଟି ପ୍ରକ୍ରିୟାର ମୂଳଶକ୍ତି ବା ଉତ୍ସ ଅଟନ୍ତି । ବଳ ଓ ଜ୍ଞାନ ଐଶ୍ୱର୍ଯ୍ୟଯୁକ୍ତ ସଙ୍କର୍ଷଣଙ୍କ ଠାରୁ ଜୀବଜଗତର ଉତ୍ପତ୍ତି ।

ଐଶ୍ୱର୍ଯ୍ୟ ଓ ବୀର୍ଯ୍ୟ ସନ୍ନିବିଷ୍ଟ ପ୍ରଦ୍ୟୁମ୍ନଙ୍କଠାରୁ ମନର ଉଦ୍ଭବ । ଶକ୍ତି ଓ ତେଜ ଐଶ୍ୱର୍ଯ୍ୟବାନ ଅନିରୁଦ୍ଧଙ୍କ ଠାରୁ ଅହଙ୍କାରର ଉଦୟ ହୋଇଛି । ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ପ୍ରଭୃତି ଭଗବାନଙ୍କର ୪ଟି ରୂପ ବା ସୃଷ୍ଟି ପ୍ରକ୍ରିୟାର ୪ଟି ସ୍ତର ରୂପେ ପରିକଳ୍ପିତ; ଯାହାକୁ ପଞ୍ଚରାତ୍ର ଉପାସନା ପଦ୍ଧତିରେ ଚତୁର୍ବ୍ୟୂହ ନାମରେ ଆଖ୍ୟାୟିତ କରାଯାଇଛି । ପୁନଶ୍ଚ ସୃଷ୍ଟିକର୍ତ୍ତା ବାସୁଦେବଙ୍କ ଠାରୁ ଉତ୍ପନ୍ନ ସଙ୍କର୍ଷଣ ବ୍ୟୂହ ସଂହାରକାରକ, ସଙ୍କର୍ଷଣଙ୍କ ଠାରୁ ଉଦ୍ଭବ ପ୍ରଦ୍ୟୁମ୍ନ ବ୍ୟୂହ ସୃଷ୍ଟିର ନିୟାମକ ଓ ପ୍ରଦ୍ୟୁମ୍ନ ବ୍ୟୂହ ସମ୍ଭୂତ ଅନିରୁଦ୍ଧ ସ୍ଥିତି ସଂସ୍ଥାପକ ଅଟନ୍ତି । ସର୍ବୋପରି 'ଅହିର୍ବୁଧ୍ନ ସଂହିତା'ରେ ବର୍ଣ୍ଣିତ ଅଛି ଯେ ସଙ୍କର୍ଷଣ ଭଗବତ୍ ପ୍ରାପ୍ତିର ସାଧନା ମାର୍ଗ ନିର୍ଦ୍ଧାରଣ କରିଥାନ୍ତି । ପ୍ରଦ୍ୟୁମ୍ନ ସ୍ୱୟଂ ଭଗବତ ପ୍ରାପ୍ତିର ମାର୍ଗ ସ୍ୱରୂପ ଅଟନ୍ତି ଓ ଅନିରୁଦ୍ଧ ବ୍ୟୂହ ଶାସ୍ତ୍ରୋକ୍ତ ଫଳପ୍ରାପ୍ତିର କାରଣ ଅଟନ୍ତି ।

ପଞ୍ଚରାତ୍ର ମତରେ ବାସୁଦେବ ହେଉଛନ୍ତି ଉପାସ୍ୟ ଦେବତା । ଏହା ଏକ ସଗୁଣ ସମ୍ପ୍ରଦାୟ ଅଟେ । "ନାରଦ ପଞ୍ଚରାତ୍ର" ମତରେ ସଂସାର, ଭୋଗ, ଯୋଗ, ମୁକ୍ତି ଓ ବ୍ରହ୍ମ ବିଷୟରେ ସମଧିକ ଜ୍ଞାନ ଲାଭକୁ ପଞ୍ଚରାତ୍ର କୁହାଯାଏ । ପଞ୍ଚରାତ୍ର ମତର ପ୍ରଧାନ ଉପାସ୍ୟ ସଗୁଣ ବ୍ରହ୍ମ ବାସୁଦେବ ସର୍ବଶକ୍ତିମାନ ଓ ମହାଲକ୍ଷ୍ମୀ ତାଙ୍କର ଶକ୍ତି ରୂପେ ପରିକଳ୍ପିତ । ସେଥିପାଇଁ 'ଅହିର୍ବୁଧ୍ନ ସଂହିତା' ଘୋଷଣା କରିଛି ଯେ, "ଭଗବାନ୍ ବାସୁଦେବଃ ସଃ ପରମା ପ୍ରକୃତି ଶ୍ଚ ସା ଶକ୍ତି ଯ୍ରା ବ୍ୟପିନୋ ବିଷ୍ଣୋ ସା ଜଗତ ପ୍ରକୃତ ପରା ।" ସମାଜରେ ଯେତେବେଳେ ସୃଷ୍ଟିକର୍ତ୍ତ୍ରୀ ଶକ୍ତିଙ୍କ ପ୍ରାଧାନ୍ୟ ଅନୁଭୂତ ହେଲା, ତତ୍କାଳରେ ଚତୁର୍ବ୍ୟୂହ ଉପାସନାରୁ ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ପୂଜା ଲୋପ ପାଇ ସଙ୍କର୍ଷଣ ବାସୁଦେବଙ୍କ ସହିତ ଭଗବାନଙ୍କ ଇଚ୍ଛାଶକ୍ତି ଓ କ୍ରିୟାଶକ୍ତି ଉଭୟଙ୍କୁ ସଂଯୋଜିତ କରି, ଏକ ନୂତନ ଉପାସନା ପରମ୍ପରା ଆତ୍ମପ୍ରକାଶ କଲା ଫଳରେ ଭାଗବତ ଧର୍ମ କ୍ରମଶଃ ବ୍ୟାପକ ପ୍ରସାରିତ ହେଲା ।

ଶ୍ରୀମଦ୍ ଭାଗବତ ରଚନା ସମୟକୁ ଈଶ୍ୱର, ବିଷ୍ଣୁ, କୃଷ୍ଣ ଓ କେଶବ, ବାସୁଦେବ ଓ ପୁରୁଷୋତ୍ତମ ସମସ୍ତେ ଏକ ଓ ଅଭିନ୍ନ ରୂପେ ପରିଗଣିତ ହୋଇଥିଲେ । ମହାଭାରତର 'କୃଷ୍ଣ' ଗୀତାର ପୁରୁଷୋତ୍ତମ ରୂପେ ପ୍ରତିଷ୍ଠା ଲାଭ କରିବା ପରେ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଗୀତା ଧର୍ମକୁ

ତତ୍କାଳୀନ ସମାଜ ପୁରୁଷୋତ୍ତମ ଧର୍ମ ନାମରେ ଗ୍ରହଣ କରନେଲ । 'ଅଗ୍ନି ପୁରାଣ' ପୁରୁଷୋତ୍ତମଙ୍କୁ ବିଷ୍ଣୁ, ନୃସିଂହ, ତ୍ରିବିକ୍ରମ, ଅନନ୍ତ, ଦାମୋଦର, କୃଷ୍ଣ, ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ସୁଦର୍ଶନ ତଥା ଶାଳଗ୍ରାମ ରୂପେ ଅଭିହିତ କରିଛନ୍ତି ।

ଅତଏବ ପରବର୍ତ୍ତୀକାଳରେ ଭାଗବତ ଧର୍ମ ବ୍ୟାପକ ପ୍ରସାର ଲାଭ କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ତାଙ୍କର ବିଭିନ୍ନ ଅବତାର ତାଙ୍କର ଆୟୁଧ ଚତୁଷ୍ଟୟ ଏବଂ ଶାଳଗ୍ରାମଙ୍କୁ ବର୍ତ୍ତମାନଜନ ସମାଜ ଉପାସ୍ୟ ରୂପେ ସ୍ୱୀକୃତି ପ୍ରଦାନ କରିଛି । ମାନବ ସମାଜର କଲ୍ୟାଣ କଳ୍ପେ ଧର୍ମାଧର୍ମ ନିର୍ବିଶେଷରେ ଅନେକ ଆହରଣ ଓ ବିସର୍ଜନ ଦ୍ୱାରା ଭାଗବତ ଧର୍ମ ଏକ ଲୋକପ୍ରିୟ ଧର୍ମରେ ପରିଣତ ହୋଇ କ୍ରମେ ବୈଷ୍ଣବ ଧର୍ମ, ସାତ୍ତ୍ୱତ ଧର୍ମ, ବେଦଧର୍ମ, ଆର୍ଯ୍ୟଧର୍ମ, ସନାତନ ଧର୍ମ, ନାରାୟଣୀୟ ଧର୍ମ, କୃଷ୍ଣ ଧର୍ମ, ଗୀତାଧର୍ମ, ପୁରୁଷୋତ୍ତମ ଧର୍ମ, ବାସୁଦେବ ଧର୍ମ, ଭକ୍ତି ଧର୍ମ ଓ ପଞ୍ଚରାତ୍ର ଧର୍ମ ନାମରେ ସର୍ବଜନ ପ୍ରସିଦ୍ଧି ଲାଭ କରିଅଛି । ସର୍ବୋପରି ଭାଗବତ ଧର୍ମର ପ୍ରଚାର, ତଥା ପ୍ରସାର ନିମିତ୍ତ ରାମାନୁଜ, ମାଧ୍ୱାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ନିମ୍ବାର୍କ, ଜୟଦେବ, ଶ୍ରୀଚୈତନ୍ୟ, ମୀରା, ନାନକ ଓ କବୀର ପ୍ରଭୃତି ମହାପୁରୁଷମାନଙ୍କର ସମୟୋପଯୋଗୀ ଉଦ୍ୟମ ଫଳରେ ଏହା ଏକ ଜୀବନ୍ତ ଗଣଧର୍ମରେ ପରିଣତ ହୋଇପାରିଛି ।

## ଭାଗବତ ଧର୍ମର ଐତିହାସିକତା ନିର୍ଣ୍ଣୟ :

ଧରାପୃଷ୍ଠରେ ସମସ୍ତ ପଦାର୍ଥର କ୍ରମାଗତ ଅନୁଶୀଳନ ହିଁ ଇତିହାସ । ବସ୍ତୁର ଅଜ୍ଞାତରୁ ସତ୍ୟ ଉଦ୍‌ଘାଟନ ତଥା ତଥ୍ୟ ଆବିଷ୍କାର ହେଉଛି ଇତିହାସର ଧର୍ମ । ଇତିହାସ ପ୍ରାଚୀନ ତଥ୍ୟ ସଂଗ୍ରହ କରେ ସତ୍ୟ, ମାତ୍ର ପୁରାଣଶାସ୍ତ୍ର କୌଣସି ଏକ ତତ୍ତ୍ୱ ପ୍ରତିପାଦନ ନିମିତ୍ତ ଉପାଦାନ ଯୋଗାଇଥାଏ । ଅତଏବ ପୁରାଣବର୍ଣ୍ଣିତ ତତ୍ତ୍ୱ, ତଥ୍ୟରେ ପରିଣତ ହେବା ପରେ ଇତିହାସ ପାଲଟିଯାଏ ସତ, ମାତ୍ର ଶିଳାଲିପି, ତାମ୍ରଲେଖ ପ୍ରଭୃତି ପ୍ରତ୍ନତାତ୍ତ୍ୱିକ ମୁଦ୍ରାଙ୍କ ଇତିହାସକୁ ପରିପୁଷ୍ଟ କରିଥାଏ । ଇତିହାସରେ ସାଧାରଣତଃ ସଂସ୍କୃତିର ଆବେଦନ ଅନୁଭୂତ ହୋଇଥାଏ । ଡକ୍ଟର ବାସୁଦେବ ସାହୁଙ୍କ ମତରେ କୃଷ୍ଣ ବାସୁଦେବ ହେଉଛନ୍ତି ଏକ ଐତିହାସିକ ଚରିତ୍ର । କିନ୍ତୁ ତାଙ୍କର ଅସାଧାରଣ ଚରିତ୍ର, ବାଦ୍‌ବିଶ୍ୱ ଓ

ତତ୍ତ୍ୱଜ୍ଞାନ ତାଙ୍କୁ ଦେବତ୍ୱ ସ୍ତରକୁ ଉତ୍ତୀର୍ଣ୍ଣ କରାଇ ଦେଇଛି (୩)। ଯେ ଯାହାହେଉ ନା କାହିଁକି ବାସୁଦେବ କୃଷ୍ଣକେନ୍ଦ୍ରିକ ଭାଗବତ ସଂସ୍କୃତି ଏପରି ଏକ ବଳିଷ୍ଠ ତଥା ଗୌରବାବହ ଐତିହ୍ୟ ସୃଷ୍ଟି କରିଅଛି ଯେ ତାହାର ଐତିହାସିକତା ନିର୍ଦ୍ଧାରଣ କରିବା ଏକାନ୍ତ ଅପରିହାର୍ଯ୍ୟ।

ଋକ୍ ବେଦରେ ଭାଗବତ ଧର୍ମର ସୂଚନା ପ୍ରଦତ୍ତ ହୋଇଥିଲେ ମଧ୍ୟ ଖ୍ରୀ: ପୂ: ୧୪ଶ ଶତାବ୍ଦୀରେ ଶାଣ୍ଡିଲ୍ୟଙ୍କ ଦ୍ୱାରା ପ୍ରବର୍ତ୍ତିତ ଭକ୍ତିଧର୍ମ ହିଁ ବାସ୍ତବରେ ଭାଗବତ ଧର୍ମ ପ୍ରବର୍ତ୍ତନରେ ପ୍ରାରମ୍ଭିକ ଉଦ୍ୟମ ରୂପେ ଗ୍ରହଣୀୟ। ନାରଦାଦି ଋଷି ଏହି ଧର୍ମର ମୁଖ୍ୟ ପ୍ରବକ୍ତା ଥିଲେ। ଖ୍ରୀ ପୂ: ଅଷ୍ଟମ ଶତକରେ ରଚିତ ବୌଧାୟନଙ୍କ 'ଗୃହ୍ୟସୂତ୍ର'ରେ "ଓଁ ନମଃ ଭାଗବତେ ବାସୁଦେବାୟ", "ଭଗବାନ ମହାବିଷ୍ଣବେ ନମଃ" ଓ "ବାସୁଦେବାୟ ସ୍ୱାହା" ମନ୍ତ୍ରରୁ ତତ୍କାଳୀନ ଭାଗବତ ବାସୁଦେବଙ୍କ ପ୍ରସିଦ୍ଧି ପ୍ରମାଣିତ। ପ୍ରସିଦ୍ଧ ଜର୍ମାନ ପଣ୍ଡିତ 'ବାଲହର୍'ଙ୍କ ମତରେ ଜୈନଧର୍ମ ପ୍ରବର୍ତ୍ତକ ମହାବୀରଙ୍କ ଆବିର୍ଭାବ ପୂର୍ବରୁ ଦେବକୀ ପୁତ୍ର କୃଷ୍ଣ ବାସୁଦେବଙ୍କ ଉପାସନାମୂଳକ ଭାଗବତ ଧର୍ମ ଭାରତରେ ସୁପ୍ରଚଳିତ ଥିଲା।

ବାଳଗଙ୍ଗାଧର ତିଳକଙ୍କ ମତରେ ଉପନିଷଦ ଯୁଗ ପରେ ଓ ବୁଦ୍ଧଦେବଙ୍କ ଆବିର୍ଭାବ ପୂର୍ବରୁ ଭାରତରେ ବାସୁଦେବ ଭକ୍ତିମୂଳକ ଭାଗବତ ଧର୍ମ ପ୍ରଚଳିତ ଥିଲା (୪)। ଖ୍ରୀ: ପୂ: ୭ମ ଶତକରେ ଲିଖିତ 'ଛାନ୍ଦୋଗ୍ୟ ଉପନିଷଦ'ରେ ଦେବକୀ ପୁତ୍ର ତଥା 'ଘୋର ଅଙ୍ଗୀରସ ଶିଷ୍ୟ', 'ଭାଗବତ ବାସୁଦେବ କୃଷ୍ଣ' ସମ୍ବନ୍ଧରେ ବର୍ଣ୍ଣନା ରହିଛି। ଖ୍ରୀ: ପୂ: ୫ମ ଶତାବ୍ଦୀର ପ୍ରସିଦ୍ଧ ବ୍ୟାକରଣବିତ୍ ପାଣିନିଙ୍କ 'ଅଷ୍ଟାଧ୍ୟାୟୀ'ରେ 'ବାସୁଦେବ ପୂର୍ବ ବାସୁଦେବ'ଙ୍କ ସଂପ୍ରଦାୟ ସମ୍ବନ୍ଧୀୟ ଉଲ୍ଲେଖରୁ ଜଣାଯାଏ ଯେ ଭାଗବତ ଧର୍ମର ନିର୍ଯ୍ୟାସ ସ୍ୱରୂପ ବାସୁଦେବ ପୂଜାମୂଳକ ଗୀତାଧର୍ମ ଉତ୍ତର-ପଶ୍ଚିମ ଭାରତରେ ବେଶ୍ ଜନପ୍ରିୟତା ହାସଲ କରିଥିଲା! ଖ୍ରୀ. ପୂ: ୪ର୍ଥ ଶତାବ୍ଦୀର ମେଗାସ୍ଥେନିସ୍‌ଙ୍କ ଭାରତ ବିବରଣୀରେ କୃଷ୍ଣ ବାସୁଦେବ

---

(୩) ଡଃ ବାସୁଦେବ ସାହୁ—ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ।
ପୃ—୫୩

(୪) ବାଳଗଙ୍ଗାଧର ତିଳକ—ଗୀତା ରହସ୍ୟ।

ଯମୁନା ତଟବର୍ତ୍ତୀ କୃଷ୍ଣପୁର ଓ ମଥୁରାର ଦେବତା ରୂପେ ବନ୍ଦିତ ହୋଇଛନ୍ତି । ପୁନଶ୍ଚ ଖ୍ରୀ: ପୂ: ୪ର୍ଥ ଶତକରେ ଲିଖିତ ବୌଦ୍ଧ 'ଘଟ ଜାତକ'ରେ ବାସୁଦେବ ଉପାସନା ସମ୍ପର୍କିତ ବହୁଳ ତଥ୍ୟ ସ୍ଥାନିତ ହୋଇଅଛି (୫) । ଖ୍ରୀ: ପୂ: ୩ୟ ଶତାବ୍ଦୀରେ ଲିଖିତ 'ତୈତ୍ତିରୀୟ ଆରଣ୍ୟକ' (୧୦, ୧, ୬)ରେ "ନାରାୟଣାୟ ବିଦ୍ମହେ ବାସୁଦେବାୟ ଧୀମହି ତନ୍ନୋ ବିଷ୍ଣୁ ପ୍ରଚୋଦୟାତ୍" ଶ୍ଳୋକରେ ବାସୁଦେବ ଓ ବିଷ୍ଣୁଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରାଯିବା ସଙ୍ଗେ ସଙ୍ଗେ ଭାଗବତ ସମ୍ପ୍ରଦାୟ ଓ ବୈଷ୍ଣବ ସଂପ୍ରଦାୟ ମଧ୍ୟରେ ସଂହତି ସ୍ଥାପିତ ହୋଇଅଛି । ରାଜପୁତନାର ଘୋଷୁଣ୍ଡି ନାମକ ସ୍ଥାନରୁ ପ୍ରାପ୍ତ ଖ୍ରୀ: ପୂ: ୩ୟ ଶତକର ଏକ ଶିଳାଲେଖରେ ଭାଗବତ ଧର୍ମର ପରମ ଉପାସ୍ୟ ସଙ୍କର୍ଷଣ ଓ ବାସୁଦେବଙ୍କ ନିମିତ୍ତ ଏକ ପୂଜାବେଦୀ ନିର୍ମିତ ହୋଇଥିବା ବର୍ଣ୍ଣନାରୁ ତତ୍କାଳରେ ବାସୁଦେବ ଉପାସନା ସାଧାରଣରେ ଆଦୃତ ହୋଇଥିବା ପ୍ରମାଣିତ । ଦିନେଶ ଚନ୍ଦ୍ର ସରକାରଙ୍କ ମତରେ ଖ୍ରୀ: ପୂ: ୨ୟ ଶତାବ୍ଦୀରେ ସମଗ୍ର ଭାରତବର୍ଷରେ ବାସୁଦେବ ଉପାସନା ବ୍ୟାପକ ପ୍ରସାର ଲାଭ କରିଥିଲା (୬) ତଦାନୀନ୍ତନ ସମାଜରେ ସେ ଦେବ ଦେବ ରୂପେ ପ୍ରତିଷ୍ଠିତ ହୋଇ ସାରିଥିଲେ । ପୁନଶ୍ଚ ଖ୍ରୀ: ପୂ: ୨ୟ ଶତକରେ ଗୀତା ଅନୁସୃତ ଭାଗବତଧର୍ମ ଏପରି ପ୍ରସିଦ୍ଧି ଲାଭ କରିଥିଲା ଯେ ଆଗନ୍ତୁକ ଗ୍ରୀକ୍‌ମାନେ ଏହି ଧର୍ମରେ ଦୀକ୍ଷିତ ହେବା ନିମିତ୍ତ ବଳବତ୍ତୀ ଇଚ୍ଛା ପ୍ରକଟ କରିଥିଲେ । ତାର ପ୍ରମାଣ ସ୍ୱରୂପ 'ବେଶ୍‌ନଗର ଶିଳାଲିପି'ରେ ବାସୁଦେବ ଭକ୍ତ ଗ୍ରୀକ୍ ସମ୍ରାଟ ଆଣ୍ଟିଆଲ୍‌କୀଡ୍‌ଙ୍କ ନିର୍ଦ୍ଦେଶରେ ଗ୍ରୀକ୍ ରାଜଦୂତ ହେଲିଓଡୋରସ୍ ପ୍ରଭୁ ବାସୁଦେବଙ୍କ ମନ୍ଦିର ସମ୍ମୁଖରେ ଏକ ଗରୁଡ଼ ସ୍ତମ୍ଭ ନିର୍ମାଣ କରିଥିଲେ ବୋଲି ଉତ୍କୀର୍ଣ୍ଣ ହୋଇଅଛି । ଖ୍ରୀଷ୍ଟଜନ୍ମ ପୂର୍ବରୁ ଖୋଦିତ 'ନାନାଘାଟ ଶିଳାଲିପି'ରେ ଉଦ୍‌ଘୋଷିତ ପ୍ରଶସ୍ତିରୁ ତତ୍କାଳୀନ ବାସୁଦେବ ଉପାସନାର ପ୍ରମାଣ ମିଳିଥାଏ ।

ପଣ୍ଡିତ ନୀଳକଣ୍ଠ ଦାସ ବାସୁଦେବ ଧର୍ମକୁ ଗୀତା ରଚନାକାଳ ଠାରୁ ପ୍ରାଚୀନ ଏବଂ ପୁରୁଷୋତ୍ତମ ଧର୍ମକୁ ଶ୍ରୀମଦ୍ ଭଗବତ-ଗୀତାର

(୫) The Jatakas. Vol.-VI, Page—50 Edited by Cowell.

(୬) ଦିନେଶ ଚନ୍ଦ୍ର ସରକାର—Selected Inscriptions.

ସମସାମୟିକ ବୋଲି ଅଭିହିତ କରନ୍ତି । ତାଙ୍କ ମତରେ ଗୀତା ରଚନାର ଚାରିଶହ ବର୍ଷ ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟୀୟ ୧୮/୭ମ ଶତକରୁ ବାସୁଦେବ ଧର୍ମ ଯଥେଷ୍ଟ ଜନପ୍ରିୟତା ହାସଲ କରିଥିଲା । ଗୀତା (୪-୧-୧୧୪)ରେ ଶ୍ରୀକୃଷ୍ଣ ନିଜକୁ ବାସୁଦେବ ନାମରେ ପରିଚିତ କରାଇଛନ୍ତି ।୦ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଚନ୍ଦ୍ରଗୁପ୍ତ—୨ 'ପରମ ଭାଗବତ' ଉପାଧି ଲାଭ କରିଥିବାର ପ୍ରମାଣ ମିଳେ । ଐତିହାସିକ ପ୍ରଭାତ ମୁଖାର୍ଜୀ ମତ ପ୍ରଦାନ କରନ୍ତି ଯେ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ବାସୁଦେବ ଧର୍ମ ବା 'ଭାଗବତ ଧର୍ମ' ବହୁଳ ପ୍ରସାର ଲାଭ କରିଥିଲା । ତତ୍କାଳୀନ ଗୁପ୍ତବଂଶୀ ସମ୍ରାଟମାନେ ସମସ୍ତେ ପ୍ରାୟ ବାସୁଦେବ ଉପାସକ ଥିଲେ । ସପ୍ତମ ଶତାବ୍ଦୀରେ ରଚିତ ବାଣଭଟ୍ଟଙ୍କ 'ଶ୍ରୀହର୍ଷ ଚରିତ'ରେ ପଞ୍ଚରାତ୍ର ଓ ଭାଗବତ ଧର୍ମର ବିସ୍ତାରିତ ବର୍ଣ୍ଣନା ସ୍ଥାନିତ ହୋଇଅଛି । ପରବର୍ତ୍ତୀକାଳରେ ସନ୍ଥ ତୁକାରାମ ଛତ୍ରପତି ଶିବାଜୀଙ୍କୁ 'ପରମ ଭାଗବତ' ଉପାଧିରେ ଭୂଷିତ କରିଥିବା ବିବରଣୀ ଇତିହାସ ପୃଷ୍ଠାରେ ସୁସ୍ପଷ୍ଟ । କେବଳ ଭାଗବତ ଧର୍ମର ଜନପ୍ରିୟତା ହିଁ ଏହାର ମୁଖ୍ୟ କାରଣ । ଏଥିରୁ ସ୍ପଷ୍ଟ ପ୍ରତିପ୍ରମାଣ ହୁଏ ଯେ ଭାଗବତ ଧର୍ମ ଏକ ସୁପ୍ରତିଷ୍ଠିତ ଧର୍ମଧାରା ରୂପେ ସମଗ୍ର ଭାରତବର୍ଷରେ ତାର ଅସ୍ତିତ୍ୱ ବଜାୟ ରଖିପାରିଛି ।

## ଓଡ଼ିଶାରେ ଭାଗବତ ଧର୍ମର ଉନ୍ମେଷ ଓ ବିକାଶ :

ଭାରତବର୍ଷର ପୂର୍ବାଞ୍ଚଳରେ ବୈଷ୍ଣବଧର୍ମର ପ୍ରଧାନ ଧାମ ରୂପେ ଶ୍ରୀକ୍ଷେତ୍ର, ଏକ ସୁନାମସିଦ୍ଧ ପୀଠ ଅଟେ । ଭାରତରେ ଭାଗବତ ଦର୍ଶନ ଯେଉଁଦିନ ଠାରୁ ପରିପୁଷ୍ଟ ହୋଇଅଛି । ପ୍ରାୟ ସେହି ସମୟରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ଅଙ୍କୁରୋଦ୍ଗମ ମଧ୍ୟ ହୋଇଅଛି । ଟଲେମୀଙ୍କ ମତରେ ଭାରତର ଉତ୍ତର ପଶ୍ଚିମ ଭାଗରେ ବକ୍ଷୁ ନଦୀ ଅବବାହିକାରେ ଯେତେବେଳେ ବାସୁଦେବ ଉପାସନା ବହୁଳ ପ୍ରଚଳିତ ଥିଲା, ଠିକ୍ ସେହି ସମୟରେ ଭାରତର ଦକ୍ଷିଣ ପୂର୍ବାଂଶରେ ଅର୍ଥାତ୍ ପ୍ରାଚୀତଟବର୍ତ୍ତୀ ଅଞ୍ଚଳରେ ମଧ୍ୟ ବାସୁଦେବ ଉପାସନା ବେଶ୍ ପ୍ରସିଦ୍ଧି ଲାଭ କରିଥିଲା ।(୭)। ଅବଶ୍ୟ ଏହି ବାସୁଦେବ ମାଧବ ନାମରେ ସେହି ଅଞ୍ଚଳରେ ଉପାସିତ ହେଉଥିଲେ ।

(୭) Prachi Vally—Archaeological Survey Report, 1975 Edited by Sri P. K. Ray.

ମୂର୍ତ୍ତିତତ୍ତ୍ୱ (Iconography) ଦୃଷ୍ଟିରୁ ଶ୍ରୀ ଓ ପୁଷ୍ଟିଙ୍କର ସ୍ଥାନ ଶଙ୍ଖ, ବିଷ୍ଣୁଦେବତାଙ୍କର ଅଙ୍କିତ ଚକ୍ର, ଶକ୍ତିଦେବ' ତଥା ଗଦା ଓ ପଦ୍ମମାଳା ସୂଚକ ହେତୁ ଏହାକୁ ବାସୁଦେବ/ମାଧବଙ୍କ ପ୍ରଧାନ ଆୟୁଧ । ଏତଦ୍ ବର୍ଣ୍ଣିତ, ମହାଭାରତୀୟ ବାସୁଦେବଙ୍କ ମୂର୍ତ୍ତିରେ ଉଭୟ ଅସ୍ତ୍ର ଓ ବରଦ ମୁଦ୍ରା ପ୍ରତିଫଳିତ । ଉପର୍ଯ୍ୟୁକ୍ତ ସମସ୍ତ କଥନ ପ୍ରାଚୀ ଅବବାହିକାରେ ଅବସ୍ଥିତ ମାଧବ ମୂର୍ତ୍ତିମାନଙ୍କଠାରେ ପ୍ରଦର୍ଶିତ ହୋଇଥିବାରୁ ଓଡ଼ିଶାରେ ବାସୁଦେବ ଉପାସନା ରୂପାନ୍ତରରେ ଯେ ମାଧବ ଉପାସନା ପ୍ରାଚୀନକାଳରୁ ପ୍ରଚଳିତ ଥିଲା, ଏହା ନିଃସନ୍ଦେହ । ଅତଏବ ଓଡ଼ିଶାରେ ଭାଗବତ ଧର୍ମର ଏକ ବଳିଷ୍ଠ ପରମ୍ପରା ଥିବାର ପ୍ରମାଣର ଅଭାବ ନାହିଁ ।

ଖ୍ରୀ: ପୂ: ପ୍ରଥମ ଶତକରେ କଳିଙ୍ଗ ସମ୍ରାଟ ଐର ଖାରବେଳ ବାସୁଦେବ ଧର୍ମାବଲମ୍ବୀ ଥିବାର ଅନୁମାନ କରାଯାଏ (୮) । ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀରେ ଓଡ଼ିଶାରେ ଶାସନ କରୁଥିବା ସାତବାହନଗଣ ପୁରୁଷୋତ୍ତମ ଧାମରେ ବାସୁଦେବ/କେଶବ । କୃଷ୍ଣ ତଥା ସଙ୍କର୍ଷଣଙ୍କୁ ଭାଗବତ ଧର୍ମର ଉପାସ୍ୟ ଭାବେ ପୂଜା କରୁଥିଲେ । ମାଦଳାପାଞ୍ଜି ବର୍ଣ୍ଣିତ ରକ୍ତବାହୁ ମୁରଣ୍ଡ ରାଜା ଧର୍ମଦାମୋଦର ହୋଇଥିବା ସମ୍ଭବ । ଶିଶୁପାଳଗଡ଼ ପ୍ରତ୍ନତାତ୍ତ୍ୱିକ ଖନନରୁ ପ୍ରାପ୍ତ ମହାରାଜା ରାଜାଧିରାଜ ଧର୍ମଦାମୋଦରଙ୍କ ଦ୍ୱାରା ପ୍ରଚଳିତ ସ୍ୱର୍ଣ୍ଣ ମୁଦ୍ରାରୁ ତତ୍କାଳରେ ବାସୁଦେବ ଉପାସନା ଉଜ୍ଜୀବିତ ଥିବା ଅନସ୍ୱୀକାର୍ଯ୍ୟ (୯) । ୬୧୮ ଖ୍ରୀ: ଅ: ରେ ରାଜତ୍ୱ କରୁଥିବା ଉକ୍ତ ରକ୍ତବାହୁ ସ୍ୱୟଂ ବାସୁଦେବ ଭକ୍ତ ଥିଲେ । (୧୦) । ଏତଦ୍ ବ୍ୟତୀତ ୪ର୍ଥ ୫ମ ଶତାବ୍ଦୀରେ ଓଡ଼ିଶାରେ ରାଜତ୍ୱ କରୁଥିବା ମାଠରବଂଶୀୟ ରାଜା ପ୍ରଭଞ୍ଜନ ବର୍ମା ନିଜକୁ 'ଭଗବତ ସ୍ୱାମୀ ନାରାୟଣ ପାଦାନୁଧ୍ୟାତଃ' ବୋଲି ପରିଚିତ କରାଇଥିଲେ (୧୧) । ଗୁପ୍ତ ଶାସନ କାଳରେ ଓଡ଼ିଶାରେ ବାସୁଦେବଙ୍କ,

---

(୮) ଜଗନ୍ନାଥ ପୂଜା—ଶ୍ରୀ ବିନାୟକ ମିଶ୍ର । ଶ୍ରୀଜଗନ୍ନାଥ ପୃ ୨୦୭, ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶନ ।

(୯) ଶ୍ରୀମନ୍ଦିର—ମାର୍ଚ୍ଚ ୧୯୮୨ ସଂଖ୍ୟା ପୃ-୩୩, ପ୍ରକାଶକ—ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ପ୍ରକାଶିତ ।

(୧୦) Hunter—History of Orissa, Vol.1 Page-85.

(୧୧) କଟଗାଣ୍ଡି ଦାନଶାସନ ପତ୍ର—Inscriptions of Orissa, Vol 1, Edited by Dr. S. N. Rajaguru.

ସଙ୍କର୍ଷଣ ଯଥାକ୍ରମେ ଶ୍ରୀଜଗନ୍ନାଥ ଓ ବଳଭଦ୍ର ନାମରେ ପୂଜା ପାଉ-ଥିଲେ । ଓଡ଼ିଶାର ଭୌମକରବଂଶୀ (ଖ୍ରୀ: ୭୫୦ ଖ୍ରୀ: ୯୫୦) ରାଜାଗଣ ମଧ୍ୟ ଭାଗବତ ଧର୍ମର ଯଥେଷ୍ଟ ପୃଷ୍ଠପୋଷକତା କରି ନିଜକୁ ପରମ ଭାଗବତ, ପରମ ସୌଗତ ରୂପେ ପରିଚିତ କରାଇଥିଲେ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀ ସମୟକୁ ଓଡ଼ିଶାରେ ବୈଷ୍ଣବଧର୍ମ ଚରମ ଉତ୍କର୍ଷ ଲାଭ କରିଥିଲା (୧୨) । ପରବର୍ତ୍ତୀକାଳରେ ପ୍ରଚଳିତ ବାସୁଦେବ ପରମ୍ପରାରେ ରାଧା, ରୁକ୍ମଣୀ, ସତ୍ୟଭାମା ଓ ଲକ୍ଷ୍ମୀ ପ୍ରଭୃତି ଦେବୀମାନେ ଉପାସ୍ୟ ଭାବେ ଗୃହୀତ ହେଲେ । ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ ସମୟକୁ ଓଡ଼ିଶାରେ ବୈଷ୍ଣବଧର୍ମ ଶ୍ରୀଜଗନ୍ନାଥ ଧର୍ମ ନାମରେ ପ୍ରଖ୍ୟାତ ହୋଇ ସାରିଥିଲା । କେବଳ ସେତିକି ନୁହେଁ ଶତାବ୍ଦୀ ଶତାବ୍ଦୀବ୍ୟାପୀ ଓଡ଼ିଶାରେ ଧର୍ମର ଯେ ସୁଦୃଢ଼ ଭିତ୍ତି ସ୍ଥାପିତ ହୋଇଥିଲା; ଏହା ନିଃସନ୍ଦେହ ।

ଓଡ଼ିଶାରେ ଶାସନ କରୁଥିବା ଗଙ୍ଗବଂଶୀ, ସୂର୍ଯ୍ୟବଂଶୀ ଓ ଭୋଇ-ବଂଶୀ ରାଜାମାନଙ୍କ ଆନ୍ତରିକ ଉଦ୍ୟମ ଫଳରେ ନୀଳାଚଳ ଧାମ ସର୍ବ ଭାରତୀୟ ସ୍ତରରେ ଏକ ପ୍ରଧାନ ବିଷ୍ଣୁକ୍ଷେତ୍ର ରୂପେ ପ୍ରତିଷ୍ଠା ଲାଭ କଲା । ଏହି ପବିତ୍ର କ୍ଷେତ୍ରରେ ଅଧିଷ୍ଠିତ ଶ୍ରୀଜଗନ୍ନାଥ ବିଶ୍ୱର ଏକମାତ୍ର ଦେବତା ଯେ କି ଗଣଦେବତା ରୂପେ ବିଭିନ୍ନ ଧର୍ମଦର୍ଶନ ତତ୍ତ୍ୱ କ ରହସ୍ୟଭାବେ ଅଦ୍ୟାବଧି ବିରାଜିତ ଅଛନ୍ତି । ପରମବିଷ୍ଣୁ ଶ୍ରୀଜଗନ୍ନାଥ ବୈଶିଷ୍ଟ୍ୟରେ ଅନୁପ୍ରାଣିତ ହୋଇ ଭାରତର ବିଭିନ୍ନ ପ୍ରାନ୍ତରୁ ହିନ୍ଦୁ, ବୌଦ୍ଧ, ଜୈନ, ଶିଖ, ଶୈବ, ଗାଣପତ୍ୟ ପ୍ରଭୃତି ଧର୍ମଦାର୍ଶନିକମାନେ ଶ୍ରୀକ୍ଷେତ୍ର ଆଗମନ ପୂର୍ବକ ସେମାନଙ୍କ ପାବନ ପଦାଙ୍କ ସ୍ଥାପନ କରିଯାଇଛନ୍ତି । ପ୍ରାୟ ପଞ୍ଚଦଶ ଶତାବ୍ଦୀ ସମୟକୁ ଓଡ଼ିଶାର ଧର୍ମ ଜଗତରେ ଚତୁର୍ବିଧ ବୈଷ୍ଣବ ସମ୍ପ୍ରଦାୟ ଉଦ୍ଭବ ହୋଇଥିଲା । ସେମାନେ ସାଧାରଣତଃ ଶ୍ରୀ (ରାମାନୁଜୀ), ବ୍ରାହ୍ମ (ମାଧ୍ୱାଚାର୍ଯ୍ୟ), ରୁଦ୍ର (ବିଷ୍ଣୁସ୍ୱାମୀ) ଓ ସନକ (ନିମ୍ବାର୍କାଚାର୍ଯ୍ୟ) ସମ୍ପ୍ରଦାୟ ନାମରେ ପରିଚିତ ଥିଲେ । ଅତଏବ ବୈଷ୍ଣବଧର୍ମର ଶ୍ରେଷ୍ଠ ପରମ୍ପରା ଦୃଷ୍ଟିରୁ ଶ୍ରୀମନ୍ଦିର ଏକ ଅଦ୍ୱିତୀୟ ମହାଭାଗବତ ପୀଠ ରୂପେ ପରିଗଣିତ ହୋଇ ଆସୁଛି ।

(୧୨) ଓଡ଼ିଶା ଇତିହାସ (୨ୟ ଭାଗ), ପୃ-୧୨୩।୧୩୯
ଲେ—ଡଃ ହରେକୃଷ୍ଣ ମହତାବ ।

## ଓଡ଼ିଶାରେ ବିଷ୍ଣୁ ଉପାସନା :

ପୂର୍ବ ପର୍ଯ୍ୟାୟ ଆଲୋଚନାରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ବିଷ୍ଣୁ ଉପାସନା ଓଡ଼ିଶାର ଏକ ସୁପ୍ରାଚୀନ ପରମ୍ପରା । ବାସୁଦେବ କୃଷ୍ଣଙ୍କୁ ଯେତେବେଳେ ଭଗବାନ ରୂପରେ ଗ୍ରହଣ କରାଗଲା, ସେତେବେଳେ ଭାଗବତ ଧର୍ମର ପୁନର୍ବିନ୍ୟାସ ସଙ୍ଗଠିତ ହୋଇ ସମାଜରେ କୃଷ୍ଣକେନ୍ଦ୍ରିକ ବୈଷ୍ଣବଧର୍ମ ସମାଦର ଲାଭକଲା । ଅନ୍ତ୍ୟଜ ଶବର ଶିକାରୀ ହୋଇ ଭଗବାନ ଶ୍ରୀକୃଷ୍ଣ ମୃତ୍ୟୁବରଣ କରିଥିଲେ । ବସୁଦେବଙ୍କ ଶୁଦ୍ରା ସ୍ତ୍ରୀ ଗର୍ଭସମ୍ଭୂତ ଜାରାଶବର, ବୈମାତ୍ରେୟ ଶ୍ରୀକୃଷ୍ଣଙ୍କ ହତ୍ୟାର ପ୍ରଧାନ ନାୟକ ବୋଲି 'ହରିବଂଶ' ଅନୁଶୀଳନରୁ ଜଣାଯାଏ । ଶ୍ରୀକୃଷ୍ଣଙ୍କ ତିରୋଭାବ ପରେ ଜାରାଶବର ବଂଶଧରମାନେ କୃତକର୍ମର ପ୍ରାୟଶ୍ଚିତ୍ତ ସ୍ୱରୂପ ନୀଳଗିରି ଶିଖରରେ ଶ୍ରୀକୃଷ୍ଣଙ୍କ ଅପେକ୍ଷା ପିଣ୍ଡ ଉପାସନା କରୁଥିଲେ । ତେଣୁ ଆଦିମ ଶବରମାନଙ୍କୁ ଓଡ଼ିଶାରେ ବୈଷ୍ଣବ ଧର୍ମର ଆଦ୍ୟ ପ୍ରବର୍ତ୍ତକ କହିଲେ ଅତିରଞ୍ଜିତ ହେବନାହିଁ । କାଳକ୍ରମେ ଶବରମାନେ ତାଙ୍କର ଉପାସ୍ୟଙ୍କୁ ଶବରୀନାରାୟଣ, ନୀଳାଖ୍ୟଦେବ, ଇନ୍ଦ୍ରନୀଳମଣି ନାମରେ ଆଖ୍ୟାୟିତ କରି ଉପାସନା କରିବାକୁ ଲାଗିଲେ । କୃଷ୍ଣବାସୁଦେବ ଯେତେବେଳେ ଭାଗବତ ଧର୍ମରେ ସମୁଚ୍ଚ ସ୍ଥାନ ଲାଭ କଲେ, ସେତେବେଳେ ଓଡ଼ିଶାର ପ୍ରାଚୀ ଉପତ୍ୟକାରେ ବାସୁଦେବ ପୂଜା କ୍ରମେ ମାଧବ ଉପାସନାର ପରିଣୀତ ରୂପ ପରିଗ୍ରହ କଲା । ତାର ପ୍ରଭାବରେ ନୀଳଗିରିରେ ଉପାସିତ ନୀଳାଖ୍ୟ ଦେବଙ୍କୁ ବିଶ୍ୱାବସୁ ଶବର 'ନୀଳମାଧବ' ସ୍ୱରୂପ ଉପାସନା କଲେ । ଇତ୍ୟବସରରେ ମାଳବରାଜ ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁକ୍ଷେତ୍ର ନୀଳାଚଳକୁ ଆଗମନ ପୂର୍ବକ ବିଷ୍ଣୁପ୍ରାପ୍ତି ନିମିତ୍ତ ସେଠାରେ ସାହସ୍ରିକ ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରିବାରୁ ଶ୍ରୀବିଷ୍ଣୁ ନୃସିଂହ ରୂପରେ ପ୍ରକଟିତ ହେଲେ । ଉକ୍ତ ଯଜ୍ଞ ନୃସିଂହ ହେଉଛନ୍ତି ଶ୍ରୀଜଗନ୍ନାଥ ଆଦ୍ୟରୂପ । ଇନ୍ଦ୍ରଦ୍ୟୁମ୍ନଙ୍କ ଉଦ୍ୟମରେ ନିର୍ମିତ ଶ୍ରୀଜଗନ୍ନାଥ ବିଗ୍ରହରେ ବିଶ୍ୱାବସୁ ଉପାସିତ ବିଷ୍ଣୁଶିଳାକୁ ବ୍ରହ୍ମବସ୍ତୁ ରୂପେ ସ୍ଥାପିତ କରାଯାଇ ଦାରୁବ୍ରହ୍ମଙ୍କ ଉପାସନା କରାଗଲା । ତେଣୁ ପରମପାବନ ପୀଠ ଶ୍ରୀକ୍ଷେତ୍ରରେ ଇନ୍ଦ୍ରଦ୍ୟୁମ୍ନ, ବିଦ୍ୟାପତି ଓ ବିଶ୍ୱାବସୁଙ୍କ ମିଳିତ ସହଯୋଗରେ କୃଷ୍ଣକେନ୍ଦ୍ରିକ ବୈଷ୍ଣବ ଧର୍ମ ଓଡ଼ିଶାରେ ଜଗନ୍ନାଥ କେନ୍ଦ୍ରିକ ଭାଗବତଧର୍ମର ରୂପରେଖ ଗ୍ରହଣ କଲା । ଯେଉଁ ଭାଗବତ ଧର୍ମ

ପ୍ରଥମେ କ୍ଷତ୍ରିୟ ଓ ଅବ୍ରାହ୍ମଣଙ୍କ ମଧ୍ୟରେ ସୀମିତ ଥିଲ, ଶ୍ରୀଜଗନ୍ନାଥଙ୍କ ପ୍ରତିଷ୍ଠା ଫଳରେ ତାହା ବ୍ରାହ୍ମଣ ସମାଜ ଦ୍ୱାରା ପରିଗୃହୀତ ହୋଇ ଗଣ-ଧର୍ମରେ ପରିଣତ ହେଲା ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରୁ ମାଧବ ବିଷ୍ଣୁ ଉପାସନା ମାଧ୍ୟମରେ ଓଡ଼ିଶାରେ ବୈଷ୍ଣବଧର୍ମ ପ୍ରସାର ଲାଭ କରିଥିଲା । ୧୦ମ, ୧୧ଶ ଶତାବ୍ଦୀରେ ପ୍ରତିଷ୍ଠିତ ଗୋପୀନାଥ ମୂର୍ତ୍ତିମାନଙ୍କରୁ ଓଡ଼ିଶାର ବଂଶୀଧାରୀ କୃଷ୍ଣ ଉପାସନାର ସୂଚନା ମଧ୍ୟ ମିଳିଥାଏ । ୧୧ଶ, ୧୨ଶ ଶତାବ୍ଦୀ ସମ୍ପ୍ରଦାୟ ମାଧବଙ୍କୁ କୃଷ୍ଣ ଭଗବାନ ରୂପେ ଗ୍ରହଣ କରିଗଲେ । ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ଲିଖିତ ଜୟଦେବ ଗୋସ୍ୱାମୀଙ୍କ 'ଗୀତ-ଗୋବିନ୍ଦ'ରୁ ତତ୍କାଳୀନ ଓଡ଼ିଶାରେ ରାଧାକୃଷ୍ଣଙ୍କ ବିକଳ୍ପରେ ରାଧାମାଧବ ଉପାସନା ପ୍ରଚଳିତ ଥିବା ଜଣାଯାଏ । ରାଜପୃଷ୍ଠପୋଷକତା ଲାଭ କରି ଓଡ଼ିଶାରେ ଭାଗବତଧର୍ମ, ବୈଷ୍ଣବ ଧର୍ମର ଉତ୍ତରୋତ୍ତର ଅଭିବୃଦ୍ଧି ସାଧିତ ହୋଇଥିବାରୁ ପଞ୍ଚରାତ୍ର ଧର୍ମର ସଙ୍କର୍ଷଣ-ବାସୁଦେବ ଯଥାକ୍ରମେ ବଳରାମ-କୃଷ୍ଣ (୧୩) ରୂପେ ଉପାସିତ ହେଲେ । ତତ୍ପରେ "ଏକାନଂଶା କାର୍ଯ୍ୟାଦେବୀ ବଳଦେବ କୃଷ୍ଣୟୋର୍ମଧ୍ୟେ" (୧୪)—ଅର୍ଥାତ୍ କାଳକ୍ରମେ ବଳଭଦ୍ର ଓ କୃଷ୍ଣଙ୍କ ମଧ୍ୟରେ ଏକାନଂଶାଙ୍କୁ ଅବସ୍ଥାପନ ପୂର୍ବକ ତ୍ରିମୂର୍ତ୍ତି ଉପାସନା ପ୍ରବର୍ତ୍ତିତ ହେଲ । ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ବଳଦେବ, ଏକାନଂଶା ଓ କୃଷ୍ଣଙ୍କୁ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଶ୍ରୀଜଗନ୍ନାଥ ରୂପେ ଅବତାରଣା କରିଛନ୍ତି । ସୃଷ୍ଟି ପ୍ରକ୍ରିୟା ସମ୍ପାଦନ ନିମିତ୍ତ ଭଗବାନ ସର୍ବଦା ସ୍ୱୀୟ ଇଚ୍ଛାଶକ୍ତି ତଥା କ୍ରିୟାଶକ୍ତିଙ୍କ ଉପରେ ନିର୍ଭରଶୀଳ । ତେଣୁ ପଞ୍ଚରାତ୍ର ଧର୍ମର ଚତୁର୍ବ୍ୟୂହ ଉପାସନାର ବିକଳ୍ପରେ ବୈଷ୍ଣବଧର୍ମର ଉପାସ୍ୟ ଭାବେ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଇଚ୍ଛାଶକ୍ତି, ସୁଭଦ୍ରା କ୍ରିୟାଶକ୍ତି ସୁଦର୍ଶନ ପ୍ରଭୃତି ଚତୁର୍ଦ୍ଧାମୂର୍ତ୍ତି ସ୍ୱୀକୃତି ଲାଭ କଲେ । ବାସୁଦେବ-କୃଷ୍ଣକେନ୍ଦ୍ରିକ ବୈଷ୍ଣବଧର୍ମ କ୍ରମେ ଶ୍ରୀଜଗନ୍ନାଥ କେନ୍ଦ୍ରିକ ଗଣଧର୍ମରେ ପର୍ଯ୍ୟବସିତ ହେଲା । ତେଣୁ ସମ୍ପ୍ରତି ବୈଷ୍ଣବଧର୍ମ କହିଲେ କେବଳ ଶ୍ରୀଜଗନ୍ନାଥ-ଧର୍ମକୁ ହିଁ ଓଡ଼ିଶାବାସୀମାନେ ସମୁଚିତ ପ୍ରାଧାନ୍ୟ ଦେଇଥାନ୍ତି ।

---

(୧୩) P. Mukherjee—Evolution of Puri—Traid.
(୧୪) ବୃହତ ସଂହିତା ।

## ଶ୍ରୀକ୍ଷେତ୍ର ଦର୍ଶନରେ ଭାଗବତ ବହୁତ :

ନୀଳମାଧବ ଓ ଶ୍ରୀଜଗନ୍ନାଥ ଯେ ଶ୍ରୀକୃଷ୍ଣଙ୍କର କ୍ରମ ବିବର୍ତ୍ତିତ ପ୍ରମୂର୍ତ୍ତି ବିଗ୍ରହ, ଏହା ନିଃସନ୍ଦେହ । ଅଷ୍ଟାଦଶ ବିବରଣୀ ସଂସ୍କୃତ ପୁରାଣରେ ସ୍ଥାପିତ ହୋଇ ନଥିଲେ ହେଁ ପୁରୁଷୋତ୍ତମ ଶ୍ରୀକୃଷ୍ଣ ପରି-କଳ୍ପନାର ଶେଷ ପରିଣତି ଯେ ଶ୍ରୀଜଗନ୍ନାଥ; ଏଥିରେ ସନ୍ଦେହର ଅଣୁମାତ୍ର ଅବକାଶ ନାହିଁ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥଙ୍କ ଉପରେ ଶ୍ରୀକୃଷ୍ଣତ୍ତ୍ୱ ଆରୋପିତ ହେବା ସ୍ୱାଭାବିକ । ଶ୍ରୀକ୍ଷେତ୍ର ଦର୍ଶନରେ କୃଷ୍ଣଚେତନା ଆଧିପତ୍ୟରୁ ଭାଗବତ ସଂସ୍କୃତିର ପଦଚିହ୍ନ ସ୍ପଷ୍ଟ ପ୍ରତିଭାତ ହୋଇଛନ୍ତି । ଭାଗବତ ଦର୍ଶନ ଭାରତର ବିଭିନ୍ନ ପ୍ରାନ୍ତରେ କେଉଁ ସମୟରୁ ଅଙ୍କୁରୋଦ୍‌ଗମ ହୋଇଅଛି, ତାହାର ପ୍ରାଥମିକ ସ୍ୱରୂପ ପ୍ରାପ୍ତ ସେହିକାଳରୁ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ଯେ ଉପାସିତ ହୋଇ ଆସୁଅଛନ୍ତି; ଏହା ଯୁକ୍ତିସିଦ୍ଧ ।

ଓଡ଼ିଶୀ ବୈଷ୍ଣବଦର୍ଶନ ମତବାଦ ଅନୁଯାୟୀରେ ଶ୍ରୀଜଗନ୍ନାଥ : କୃଷ୍ଣ ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ସେଥିପାଇଁ ଯଥାର୍ଥରେ କୁହାଯାଇଛି—"ଶ୍ରୀକୃଷ୍ଣ ଶ୍ରୀଜଗନ୍ନାଥଃ ଦେବୋଽପି ସ୍ୱୟଂ ରୂପଂ ସ୍ୱୟଂ ଭଗବାନ ।" ବେଦର ପୁରୁଷ, ଗୀତା, ମହାଭାରତର ଶ୍ରୀକୃଷ୍ଣ ଏବଂ ନୀଳାଚଳର ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସମସ୍ତେ ଏକ ଓ ଅଭିନ୍ନ (୧୫) । ଫରାସୀ ପଣ୍ଡିତ ଆବେ ଦୁବୋଇ ରଚିତ 'ଦୁବୋଇ ଗ୍ରନ୍ଥ'ର ପଞ୍ଚମ ପରିଶିଷ୍ଟରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପେ ମଧ୍ୟ ରୂପାୟିତ କରିଛନ୍ତି (୧୬) । ବେଦରେ ଯାହାଙ୍କୁ 'ନମସ୍ତ୍ୱନନ୍ତାୟ ସହସ୍ର ମୂର୍ତ୍ତୟେ' ବୋଲି ପ୍ରମାଣ କରାଯାଇଛି, ସେ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କଠାରୁ ସ୍ୱତନ୍ତ୍ର ନୁହନ୍ତି । ଶ୍ରୀଜଗନ୍ନାଥ ଜଗତ ସୃଷ୍ଟି କରି ତହିଁରେ ସ୍ୱୟଂ ଅନୁପ୍ରବିଷ୍ଟ ହୋଇଥିବାରୁ ସେ ଏକାଧାରରେ ବିଶ୍ୱାତିଗ ତଥା ବିଶ୍ୱାନୁଗ ଅଟନ୍ତି । ତେଣୁ ତାଙ୍କୁ ବିଷ୍ଣୁ (ବିଶ୍ + ନୁ) ଭାବରେ ସମସ୍ତେ ଉପାସନା କରିଥାନ୍ତି ।

କୃଷ୍ଣ ଉପାସନା ଭାଗବତ ସଂସ୍କୃତିର ମୂଳ ଭିତ୍ତି । ପୁନଶ୍ଚ ବିଷ୍ଣୁଙ୍କୁ କେନ୍ଦ୍ର କରି ପ୍ରତିଷ୍ଠା ଲାଭ କରିଥିବା ଆଧ୍ୟାତ୍ମିକ ଦର୍ଶନରୁ ବୈଷ୍ଣବ

---

(୧୫) ଆମ ଜଗନ୍ନାଥ ଆମ ସଂସ୍କୃତି, ପୃ-୨୭ ।

(୧୬) ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ସଂଖ୍ୟା, ୧୯୯୮, ପୃ-୦୩ ।

ଧର୍ମର ଉତ୍ପତ୍ତି । ପରମବୈଷ୍ଣବ ପୀଠ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ପ୍ରଭାବ ଅଦ୍ୟାବଧି ଅପ୍ରତିହତ ରହିଅଛି । ଓଡ଼ିଆ ବୈଷ୍ଣବ ସାହିତ୍ୟରେ ପ୍ରାଣପୁରୁଷ ଭାବେ କଳ୍ପନା କରାଯାଇ ଶ୍ରୀଜଗନ୍ନାଥଙ୍କୁ ପ୍ରାଧାନ୍ୟ ଅର୍ପିତ ହୋଇଅଛି । ମୁଖ୍ୟତଃ ଓଡ଼ିଶୀ ବୈଷ୍ଣବଧର୍ମ ହିଁ ଶ୍ରୀଜଗନ୍ନାଥଙ୍କୁ ଉପଜୀବ୍ୟ କରି ପରିପୁଷ୍ଟ । ସର୍ବଧର୍ମ ସମନ୍ୱିତ ଶ୍ରୀଜଗନ୍ନାଥ ଚେତନାରେ ବିଭିନ୍ନ ଧର୍ମଦର୍ଶନର ସଙ୍ଗମ ହେବା ସଦୃଶ ବୈଷ୍ଣବ ଧର୍ମମତ ମଧ୍ୟ ଏଥିରେ ସମ୍ମିଳିତ ହୋଇ ଏକାକାର ହୋଇଯାଇଛି । ସମନ୍ୱୟାତ୍ମକ ବିଗ୍ରହ ଶ୍ରୀଜଗନ୍ନାଥ ଯେହେତୁ ଗଣଦେବତା, ତେଣୁ ତାଙ୍କର ପୂଜା ପଦ୍ଧତିରେ ବିଭିନ୍ନ ଧର୍ମ-ଦର୍ଶନର ପ୍ରମୁଖ ଉପାଦାନ ଅନୁସୃତ ହେବା ଅବଶ୍ୟମ୍ଭାବୀ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ନୀତି ତଥା ସାମୟିକ ଉତ୍ସବାନୁଷ୍ଠାନରେ କିପରି କୃଷ୍ଣତ୍ୱ ଆରୋପିତ ହୋଇଛି, ତାହାହିଁ କ୍ରମଶଃ ଆଲୋଚନା କରାଗଲା ।

ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ନାମରେ ଅଭିହିତ କରିବା, ତାଙ୍କ ଉପରେ କୃଷ୍ଣତ୍ୱ ଆରୋପଣର ସର୍ବପ୍ରଥମ ପ୍ରାମାଣ୍ୟ ରୂପେ ଗ୍ରହଣୀୟ । ଶ୍ରୀଜଗନ୍ନାଥ ପ୍ରଥମେ ପୁରୁଷୋତ୍ତମ ଓ ପରେ ଶ୍ରୀଜଗନ୍ନାଥ ନାମରେ ଖ୍ୟାତିଲାଭ କରିଥିବା ବିଷୟ ମୁକ୍ତକଣ୍ଠରେ ସ୍ୱୀକାର କରାଯାଇ ପାରେ । ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବତ ଗୀତାରେ ନିଜକୁ ପୁରୁଷୋତ୍ତମ ନାମରେ ଆଖ୍ୟାୟିତ କରିଥିବାରୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଉଭୟ ପୁରୁଷୋତ୍ତମ ଏକ ତଥା ଅଭିନ୍ନ । ରତ୍ନସିଂହାସନରେ ବଡ଼ଭାଇ ବଳରାମ (ବଳଭଦ୍ର), ଭଗିନୀ ସୁଭଦ୍ରା ଓ ଆୟୁଧ ସୁଦର୍ଶନଙ୍କ ସହ ବିରାଜମାନ କରୁଥିବା ଦାରୁରୂପୀ ଶ୍ରୀଜଗନ୍ନାଥ ହିଁ କୃଷ୍ଣ ସ୍ୱରୂପ ଅଟନ୍ତି (୧୭) ।

ବାସ୍ତବରେ ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ସ୍ୱରୂପ ସ୍ୱୀକାର କରାଯାଇଥିବାରୁ ରତ୍ନସିଂହାସନୋପରି କୃଷ୍ଣାୟୁଧ ସୁଦର୍ଶନଙ୍କ ଅବସ୍ଥିତି ଅବଶ୍ୟମ୍ଭାବୀ ମନେହୁଏ । କେବଳ ସେତିକି ନୁହେଁ ସାମୟିକ ଭାବେ ବିଭିନ୍ନ ବେଶରେ ମହାପ୍ରଭୁ ଶ୍ରୀଭୁଜରେ ଶଙ୍ଖ ଚକ୍ର ଧାରଣ କରୁଥିବାରୁ ସେ କୃଷ୍ଣ ରୂପେ ପ୍ରତିଭାତ (୧୮) ସର୍ବୋପରି ରତ୍ନସିଂହାସନ ସମ୍ମୁଖରେ ସ୍ତମ୍ଭୋପରି

(୧୭) ସୂର୍ଯ୍ୟନାରାୟଣ ଦାଶ—ଓଡ଼ିଆ ସାହିତ୍ୟର ଇତିହାସ, ୧ମ ଭାଗ, ପୃ-୩୭୦ ।

(୧୮) ଶୁକଦେବ ମହାନ୍ତି—ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ସଂଖ୍ୟା ୧୯୮୫, ପୃ-୪୯ ।

ଉପବିଷ୍ଟ ଗରୁଡ଼ ମୂର୍ତ୍ତିରୁ ଶ୍ରୀଜଗନ୍ନାଥ ଯେ ଶ୍ରୀକୃଷ୍ଣ ବିଷ୍ଣୁଙ୍କର ସାର୍ଥକ ପ୍ରତିଚ୍ଛବି, ଏହା ନିର୍ବିବାଦରେ ଗ୍ରହଣୀୟ ।

ମଦନମୋହନଙ୍କୁ କୃଷ୍ଣ ସ୍ୱରୂପରେ ଉପାସନା କରିବା ବିଧି କେଉଁ ଅନାଦିକାଳରୁ ପ୍ରଚଳିତ । ବିଶେଷତଃ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ଭାବରେ ମଦନମୋହନଙ୍କୁ ଗ୍ରହଣ କରିଥିବା ଦ୍ୱାରା ମହାପ୍ରଭୁଙ୍କ ଠାରେ କୃଷ୍ଣପ୍ରାଧାନ୍ୟ ହିଁ ଅନୁଭୂତ ହୋଇଥାଏ । (୧୯) । ବାସ୍ତବତଃ ଚନ୍ଦନଗୁପ, ଦୋଳ, ହୋଲି, ରଥଯାତ୍ରା ଓ ଝୁଲଣ ଇତ୍ୟାଦି ପର୍ବ ଯାତ୍ରାରେ ମଦନ-ମୋହନ ହିଁ ଶ୍ରୀଜଗନ୍ନାଥଙ୍କର ଯଥାର୍ଥ ପ୍ରତିନିଧି ଅର୍ଥାତ୍ ବିଜୟ ବିଗ୍ରହ ସ୍ୱରୂପ ଲୀଳାରଚନା (୨୦) କରିଥାନ୍ତି । ଶ୍ରୀଜଗନ୍ନାଥଙ୍କ ଦୋଳୋତ୍ସବ, ରୁକ୍ମିଣୀ ହରଣ ଓ ଝୁଲଣ ଆଦି ଯାତ୍ରାବିଧିରୁ ସେ ଯେ ଶ୍ରୀକୃଷ୍ଣଙ୍କର ଅବିକଳ ବିକଳ୍ପ; ଏହା ନିଃସନ୍ଦେହ । ଏତଦ୍ୱ୍ୟତୀତ ଅକ୍ଷୟତୃତୀୟା ଦିନ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କୁ ଯଥାକ୍ରମେ ବଳରାମ ଓ କୃଷ୍ଣ ଭାବରେ ପ୍ରାର୍ଥନା କରାଯାଇ ରଥନିର୍ମାଣ କାର୍ଯ୍ୟାରମ୍ଭ ହୋଇଥାଏ ।

ଭଗବତ ସେବାର ଯେଉଁ ନବବିଧ ସରଣୀ ସୁନିର୍ଦ୍ଦିଷ୍ଟ କରାଯାଇଛି, ତାହା 'ନବଧାଭକ୍ତି' ନାମରେ ସର୍ବଜନବିଦିତ । ଯଥା—

"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋ ସ୍ମରଣଂ ପାଦସେବନମ୍
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମ ନିବେଦନମ୍ ।" (୨୧)

ବୈଷ୍ଣବମାନେ ଉପର୍ଯୁକ୍ତ ନବବିଧମାର୍ଗ ଅନୁସରଣ କରି ବିଭୁ ସେବା ସୁଯୋଗ ଲାଭ କରିଥାନ୍ତି । ରଥଯାତ୍ରା ସମୟରେ ଭକ୍ତବୃନ୍ଦ ଶ୍ରୀଜଗନ୍ନାଥଙ୍କ ସାନ୍ନିଧ୍ୟ ଲାଭ କରି ପ୍ରଭୁ ନାମ ଶ୍ରବଣ, କୀର୍ତ୍ତନ, ନାମସ୍ମରଣ, ପାଦସେବା, ପୂଜା, ବନ୍ଦନା, ଦାସ୍ୟ ତଥା ସଖା ଭାବରେ ସେବା ସର୍ବୋପରି

---

(୧୯) ଅପୂର୍ବ ରଞ୍ଜନ ରାୟ—ଶ୍ରୀକ୍ଷେତ୍ର ' ଶ୍ରୀଜଗନ୍ନାଥ, ୨ୟ ସ୍ତବକ, ପୃ-୫୦୦ ।

(୨୦) ଡ଼ଃ ଦୋଳଗୋବିନ୍ଦ ଶାସ୍ତ୍ରୀ—ପୌରୁଷ, ଜୁଲାଇ ୧୯୭୫ ସଂଖ୍ୟା, ପୃ-୩୭ ।

(୨୧) ଶ୍ରୀମଦ୍ ଭଗବତ ଗୀତା ।

ଆତ୍ମନିବେଦନ ପ୍ରଭୃତି ବୈଷ୍ଣବୀୟ ନବପନ୍ଥା ଆଚରଣପୂର୍ବକ ଶ୍ରୀଜଗନ୍ନାଥଙ୍କ ସେବା କରିଥାନ୍ତି । ପୁନଶ୍ଚ ଶ୍ରୀଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ ଓ ବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ, ଯାହାକି ଯଥାକ୍ରମେ କୃଷ୍ଣବଳରାମଙ୍କ ରଥ ରୂପେ ପୁରାଣପ୍ରସିଦ୍ଧ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ-ଲୀଳା ସମ୍ପାଦିତ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ଏହି ରଥଯାତ୍ରାକୁ ଅନେକ ଶ୍ରୀକୃଷ୍ଣଙ୍କର ବାହୁଡ଼ା ଭାବରେ ଗ୍ରହଣ ମଧ୍ୟ କରିଥାନ୍ତି । ନୀଳାଚଳ, ଦ୍ୱାରକା, ମଥୁରା ହେଲେ ଗୁଣ୍ଡିଚା ମନ୍ଦିର ପୁନଶ୍ଚ ବୃନ୍ଦାବନ । ବର୍ଷ ମଧ୍ୟରେ ଥରେ ଶ୍ରୀକୃଷ୍ଣଜଗନ୍ନାଥ ତାଙ୍କର ଭାଇ ବଳରାମ ଓ ଭଗିନୀ ସୁଭଦ୍ରାଙ୍କ ସହିତ ରଥାରୋହଣପୂର୍ବକ ସୁନ୍ଦରାଚଳ ବୃନ୍ଦାବନ ଯାତ୍ରାକରି ଗୋପୀ ପ୍ରେମରେ ମତ୍ତ ହୋଇ ରାସଲୀଳା ସମ୍ପାଦନ କରିଥାନ୍ତି (୨୨) । ଏହି ପରିପ୍ରେକ୍ଷୀରେ ଗୁଣ୍ଡିଚା ମନ୍ଦିରରେ ସପ୍ତମୀ, ଅଷ୍ଟମୀ, ନବମୀ ତିଥିରେ ଅନୁଷ୍ଠିତ ରାସୋତ୍ସବରୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କର ଅଭିନ୍ନତ୍ୱ ହିଁ ସୂଚିତ ହୋଇଥାଏ ।

ଭାଦ୍ର କୃଷ୍ଣ ଅଷ୍ଟମୀରେ ଶ୍ରୀମନ୍ଦିରରେ ଅନୁସୃତ କୃଷ୍ଣଜନ୍ମ (ଜନ୍ମାଷ୍ଟମୀ) ବିଧିରୁ ଶ୍ରୀଜଗନ୍ନାଥ ଯେ ଶ୍ରୀକୃଷ୍ଣଙ୍କଠାରୁ ସ୍ୱତନ୍ତ୍ର ନୁହନ୍ତି, ଏହା ପ୍ରମାଣିତ । ତତ୍ପରବର୍ତ୍ତୀ ଦିବସରେ ଶ୍ରୀମନ୍ଦିରରେ ନନ୍ଦୋତ୍ସବ ମଧ୍ୟ ଅନୁଷ୍ଠିତ ହୋଇଥାଏ । ଭାଦ୍ର କୃଷ୍ଣ ଦଶମୀରେ କୃଷ୍ଣଲୀଳା ଓ ଗୋଷ୍ଠବିଜୟ ସ୍ମୃତିର ସ୍ୱାକ୍ଷର ବହନ କରି ବଳଭଦ୍ରଙ୍କ ଦୁଇ ହସ୍ତରେ ଶିଙ୍ଗା ଓ କ୍ଷୀରଶିକା ତଥା ଶ୍ରୀଜଗନ୍ନାଥଙ୍କ ଶ୍ରୀଭୁଜରେ ବଂଶୀ ଓ ଲବଣି ପସରା ସଂଯୋଗ କରାଯାଇ ମହାପ୍ରଭୁମାନଙ୍କୁ ବଣଭୋଜି ବେଶରେ ବିଭୂଷିତ କରାଯାଇଥାଏ । ଏହି ବଣଭୋଜି ବେଶ ସମୟରେ ମହାପ୍ରଭୁ ଓଡ଼ିଆ ଯାଦବ କୁଳର ନିକଟତର ହୋଇଥାନ୍ତି । ପ୍ରକାରାନ୍ତରେ ଏହା ଓଡ଼ିଆ କୃଷ୍ଣପ୍ରାଣତାର ଉତ୍କୃଷ୍ଟ ନିଦର୍ଶନ ।

ଏହି ଅବସରରେ କୋଳିକିକା, ବକାସୁର ତଥା ଅଘାସୁର ବଧ ଇତ୍ୟାଦି ଉତ୍ସବ ମଧ୍ୟ ପାଳିତ ହୋଇଥାଏ । ଭାଦ୍ର କୃଷ୍ଣ ଏକାଦଶୀରେ କାଳୀୟଦଳନ ବେଶରେ ଶ୍ରୀଜଗନ୍ନାଥଙ୍କ ଶରୀରକୁ ଏକ ବୃହଦାକାର

(୨୨) ଶ୍ରୀମନ୍ଦିର—୧୯୮୫ ନବବର୍ଷ ସଂଖ୍ୟା, ପୃ-୧୩ ।

କାଳନାଗ ଆବଦ୍ଧ କରି ରହିଥାଏ । ମହାପ୍ରଭୁଙ୍କ ଶ୍ରୀପୟର ସପ୍ତଫଣାବିଶିଷ୍ଟ ଉକ୍ତ କାଳନାଗର ମସ୍ତକ ଉପରେ ଅବସ୍ଥାପିତ ହୋଇଥାଏ । ଶ୍ରୀଜୀଉ ଏହି ଅବସରରେ ବାମହସ୍ତରେ କାଳୀୟପୁଚ୍ଛ ଓ ପଦ୍ମକଳିକା ଧାରଣ କରିବା ସହିତ ଦକ୍ଷିଣ ହସ୍ତରେ ଅମୃତଲଡ଼ୁ ଧାରଣ କରିଥାନ୍ତି । ଭାଦ୍ର ଶୁକ୍ଳ ଦ୍ୱାଦଶୀରେ ଶ୍ରୀଜଗନ୍ନାଥଙ୍କର ପ୍ରଲମ୍ବାସୁର ବଧବେଶ ତଥା ତ୍ରୟୋଦଶୀରେ ଗିରିଗୋବର୍ଦ୍ଧନ ଧାରଣ ବେଶ ବେଶ୍ ହୃଦୟସ୍ପର୍ଶୀ । ଏହି ବେଶ ସମୟରେ କଦମ୍ବବୃକ୍ଷ, ଗୋମାତା, ଯଶୋଦା, ଦେବକୀ ଓ ବସୁଦେବଙ୍କ ଭୂମିକାରେ ସେବକମାନେ ଅବତୀର୍ଣ୍ଣ ହୋଇଥାନ୍ତି । ଏତଦ୍‌ବ୍ୟତୀତ ଆଶ୍ୱିନ ଶୁକ୍ଳ ଏକାଦଶୀରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ରାଧାଦାମୋଦର ବେଶ ଓ ମାଘ ପୂର୍ଣ୍ଣିମାରେ ଗଜ ଉଦ୍ଧାରଣ ବେଶରେ ସୁସଜ୍ଜିତ କରାଯାଇଥାଏ । ପୁନଶ୍ଚ କାର୍ତ୍ତିକମାସର ଦେବ-ପିତୃଆବଲ୍ୟୁତ୍ସବ ଅବସରରେ ଶ୍ରୀଜଗନ୍ନାଥ, ବସୁଦେବ-ଦେବକୀ ଓ ନନ୍ଦଯଶୋଦାଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ଶ୍ରାଦ୍ଧ ବିଧିରେ ପିଣ୍ଡପ୍ରଦାନ ମଧ୍ୟ କରିଥାନ୍ତି । ସେହିପରି ଦୋଳଯାତ୍ରା ସମୟରେ ମହାପ୍ରଭୁଙ୍କ ଶୃଙ୍ଗାର ଲୀଳାରେ କୃଷ୍ଣପ୍ରାଧାନ୍ୟ ହିଁ ପରିଲକ୍ଷିତ ହୋଇଥାଏ ।

ଉତ୍କଳୀୟ ଧର୍ମଧାରା ଶ୍ରୀଜଗନ୍ନାଥଙ୍କୁ ଉପଜୀବ୍ୟ କରି ପ୍ରାଣବନ୍ତ । ଓଡ଼ିଶୀ ବୈଷ୍ଣବମାନଙ୍କ ମତରେ ପୁରୁଷୋତ୍ତମ କ୍ଷେତ୍ରରେ ଅବତୀର୍ଣ୍ଣ ଶ୍ରୀଜଗନ୍ନାଥ କେଉଁ ଅନନ୍ତ ଶତାବ୍ଦୀବ୍ୟାପୀ ବିଦ୍ୟମାନ ଅଛନ୍ତି । ବିଶେଷତଃ ଗୋଲକ ବିହାରୀ କୃଷ୍ଣ କଳିଯୁଗରେ ଶ୍ରୀଜଗନ୍ନାଥ ରୂପେ ଅବତୀର୍ଣ୍ଣ ହୋଇ ବିଜେ କରିଥିବାରୁ ତାଙ୍କୁ କୃଷ୍ଣ ମନ୍ତ୍ରରେ (୨୩) ଉପାସନା କରାଯାଉଛି । ପୁନଶ୍ଚ ବୈଷ୍ଣବ ଧର୍ମ ପ୍ରଭାବରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ 'ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ' (୨୪) ଶୀର୍ଷକ ଅଷ୍ଟାଦଶାକ୍ଷର ମନ୍ତ୍ରରେ ପୂଜା କରାଯାଏ । ଏତଦ୍ ଭିନ୍ନ ମହାପ୍ରଭୁଙ୍କ ପୂଜା ବିଧିରେ 'ଓଁ ନମୋ ଭଗବତେ ବାସୁଦେବାୟ' ମନ୍ତ୍ରର ପ୍ରୟୋଗ ମଧ୍ୟ କରାଯାଇଥାଏ ।

---

(୨୩) ଡ଼ଃ. ଦୋଳଗୋବିନ୍ଦ ଶାସ୍ତ୍ରୀ—ଆମ ଜଗନ୍ନାଥ ଆମ ସାହିତ୍ୟ, ପୃ-୧୬୧ ।

(୨୪) ଡ଼ଃ ବିଜୟାନନ୍ଦ କର—ଆମ ଜଗନ୍ନାଥ ଆମ ଐତିହ୍ୟ, ପୃ-୧୬୩ ।

ସର୍ବୋପରି ଶ୍ରୀଜୀଉଙ୍କ ତ୍ରିକାଳରୂପ ଓ ଧ୍ୟାନରେ କୃଷ୍ଣତତ୍ତ୍ୱ ମଧ୍ୟ ନିହିତ । ଶ୍ରୀଜଗନ୍ନାଥଙ୍କ ପ୍ରାତଃକାଳୀନ ଧ୍ୟାନରେ ଶ୍ରୀକୃଷ୍ଣଙ୍କ ବାଳରୂପ, ମଧ୍ୟାହ୍ନରେ ଦ୍ୱାରକାସ୍ଥିତ ଉପବନରେ ମଣ୍ଡପାସୀନ ଶ୍ରୀକୃଷ୍ଣଙ୍କ ତପଃରୂପ ଓ ରାତ୍ରି-କାଳରେ ଯମୁନାପୁଳିନ କୁଞ୍ଜରେ ଗୋପୀପରିବୃତ୍ତ ଶ୍ରୀକୃଷ୍ଣଙ୍କ ପ୍ରୌଢ଼ାବସ୍ଥାର ଆରୋପ ବାସ୍ତବିକ ଶ୍ରୀଜଗନ୍ନାଥ ଧର୍ମ ଦର୍ଶନର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ (୨୫) ।

ସର୍ବଭାରତୀୟ ସ୍ତରରେ ବୈଷ୍ଣବୀୟ ଧର୍ମଚେତନା ଉପରେ ପ୍ରତିଷ୍ଠିତ ୮୦ ଗୋଟି ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରୁ ୫ଗୋଟି ବୈଷ୍ଣବ ସମ୍ପ୍ରଦାୟ ମୁଖ୍ୟ ଅଟେ । ଯଥା—(କ) ବିଶିଷ୍ଟାଦ୍ୱୈତବାଦର ପ୍ରତିଷ୍ଠାତା ରାମାନୁଜା-ଚାର୍ଯ୍ୟଙ୍କ କର୍ତ୍ତୃକ ପ୍ରବର୍ତ୍ତିତ ସାତ୍ତ୍ୱତ ସମ୍ପ୍ରଦାୟ । ତାଙ୍କ ମତରେ ଶ୍ରୀମନ୍ନାରାୟଣ ସର୍ବଶ୍ରେଷ୍ଠ ଦେବତା । (ଖ) ଦ୍ୱୈତବାଦର ସମର୍ଥକ ମାଧ୍ୱାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ମାଧ୍ୱ ସମ୍ପ୍ରଦାୟ । ଏହାଙ୍କ ମତରେ ବିଷ୍ଣୁ ସର୍ବମୟ କର୍ତ୍ତା । (ଗ) ଅଚିନ୍ତ୍ୟ ଭେଦାଭେଦବାଦର ପ୍ରତିଷ୍ଠାତା ଶ୍ରୀଚୈତନ୍ୟଙ୍କ ପ୍ରଖ୍ୟାପିତ ଚୈତନ୍ୟ ସମ୍ପ୍ରଦାୟ । ତାଙ୍କ ମତରେ 'କୃଷ୍ଣସ୍ତୁ ଭଗବାନ ସ୍ୱୟମ୍' । (ଘ) ଶୁଦ୍ଧ ଦ୍ୱୈତବାଦର ସମର୍ଥକ ବଲ୍ଲଭାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ବଲ୍ଲଭାଚାରୀ ସମ୍ପ୍ରଦାୟ । ଯେମାନଙ୍କ ଦର୍ଶନରେ ଉପ ଗୋଲକ ବୃନ୍ଦାବନର ବାଳଗୋପାଳ କୃଷ୍ଣଙ୍କୁ ଶ୍ରେଷ୍ଠତ୍ୱ ପ୍ରଦାନ କରନ୍ତି । (ଙ) ଦ୍ୱୈତାଦ୍ୱୈତବାଦର ପ୍ରବର୍ତ୍ତକ ନିମ୍ବାର୍କ ସ୍ୱାମୀଙ୍କ ଦ୍ୱାରା ପ୍ରତିଷ୍ଠିତ ନିମ୍ବାର୍କ ସମ୍ପ୍ରଦାୟ । ଏମାନଙ୍କ ମତରେ ନାରାୟଣଙ୍କ ବିକଳ୍ପରେ ରାଧାମାଧବ ହିଁ ପ୍ରାଧାନ୍ୟଲାଭ କରନ୍ତି । ଏହି ସମ୍ପ୍ରଦାୟଗୁଡ଼ିକ ଖ୍ରୀଷ୍ଟୀୟ ୯ମରୁ ୧୬ଶ ଶତାବ୍ଦୀ ମଧ୍ୟରେ ଆତ୍ମପ୍ରତିଷ୍ଠାଲାଭ କରିଥିଲେ ହେଁ ଏହା ପୂର୍ବରୁ ଶଙ୍କରାଚାର୍ଯ୍ୟ ଅଦ୍ୱୈତବାଦର ପରିପ୍ରଚାର କରିଥିଲେ । ତାଙ୍କ ମତରେ ଈଶ୍ୱର ଏକ ଓ ଅଦ୍ୱିତୀୟ । ଆବଶ୍ୟକତା ବୋଧରେ ସେ ବିଧା କିମ୍ବା ବହୁଧା ବିଭକ୍ତ ହୋଇଥାନ୍ତି ।

ସର୍ବ ଧର୍ମଦର୍ଶନର ଏକତ୍ର ସହାବସ୍ଥାନ ପୀଠ ଶ୍ରୀକ୍ଷେତ୍ରରେ ପ୍ରାୟ ସମସ୍ତ ବୈଷ୍ଣବ ସମ୍ପ୍ରଦାୟର ମଠ ପ୍ରତିଷ୍ଠିତ ହୋଇ ଧାର୍ମିକ ଔଦାର୍ଯ୍ୟ

(୨୫) Dr. Kalucu Charan Mishra—The Cult of Jagannath (1972), Page-150.

ପ୍ରକଟିତ ହୋଇଅଛି । ବିଶେଷତଃ ଓଡ଼ିଶାର ଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପେ ସ୍ୱୀକାର କରିବା ସହିତ ଶ୍ରୀମନ୍ଦିରର ୪ଗୋଟି ମୁଖ୍ୟଦ୍ୱାରକୁ ଯଥାକ୍ରମେ ନିମ୍ବାର୍କ, ମାଧ୍ୱ, ବିଷ୍ଣୁସ୍ୱାମୀ ଓ ରାମାନନ୍ଦୀ ବୈଷ୍ଣବ ସମ୍ପ୍ରଦାୟର ସ୍ୱରୂପ ମାନ୍ୟତା ପ୍ରଦର୍ଶନ କରିଥାନ୍ତି । ପୁନଶ୍ଚ ବୈଷ୍ଣବଧର୍ମ ପ୍ରାଧାନ୍ୟରୁ ଶ୍ରୀମନ୍ଦିର ବେଢ଼ା ପରିସର ମଧ୍ୟରେ ବହୁ ସଂଖ୍ୟକ ବଂଶୀଧାରୀ-ଗୋପିନାଥ ମୂର୍ତ୍ତି ଉପାସିତ ହୋଇ ଆସୁଛନ୍ତି । ତତ୍‌ସହିତ ଶ୍ରୀମନ୍ଦିର ବେଢ଼ାବଳୟ ଅନ୍ତର୍ଗତ ବିଭିନ୍ନ ସ୍ଥାନରେ କୃଷ୍ଣଚରିତ ଚିତ୍ରିତ ହୋଇ ଏକ ଭାଗବତୀୟ ବାତାବରଣ ସୃଷ୍ଟି କରାଯାଇଅଛି । ସର୍ବୋପରି ଶ୍ରୀମନ୍ଦିରରେ ଭାଗବତ ଠାକୁର ବିରାଜିତ ଅଛନ୍ତି । ପ୍ରତ୍ୟହ ସେଠାରେ ଭାଗବତ ଅଧିତ ହେଉଅଛି । ଅତଏବ ସର୍ବଧର୍ମ ସମନ୍ୱିତ ପ୍ରତୀକାତ୍ମକ ଦେବତା ଯେ ସମସ୍ତ ଧର୍ମଦର୍ଶନର ପ୍ରମୂର୍ତ୍ତ ବିଗ୍ରହ, ଏହା ନିଃସନ୍ଦେହ । ପୁନଶ୍ଚ କୃଷ୍ଣ ଚେତନା ଯେ ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱର ଅନ୍ତଃସ୍ୱର; ଏହା ଅନସ୍ୱୀକାର୍ଯ୍ୟ ।

## ଶ୍ରୀମନ୍ଦିରରେ ଭାଗବତ ସେବା :

ଶ୍ରୀଜଗନ୍ନାଥଙ୍କ ସେବାପୂଜାର ଏକ ବିଶେଷ ଅଙ୍ଗ ରୂପେ ଶ୍ରୀମନ୍ଦିରରେ ଭାଗବତ ପାଠ ନିତ୍ୟ ଆଚରିତ ହୋଇଥାଏ । ଏହାର କାରଣ ହେଉଛି ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ଦ୍ୱାରା ଶ୍ରୀମଦ୍ ଭାଗବତ ପରମଶାସ୍ତ୍ର ରୂପେ ନିର୍ବାଚିତ । କଥିତ ଅଛି—ଶ୍ରୀକ୍ଷେତ୍ରରେ ସମଗ୍ର ଭାରତୀୟ ଧର୍ମଦର୍ଶନର ସମନ୍ୱୟ ସଂସାଧିତ ହୋଇଥିବାରୁ କେଉଁ ଧର୍ମଶାସ୍ତ୍ର ସେଠାରେ ପଠିତ ହେବ, ସେଥିପାଇଁ ବିଭିନ୍ନ ଧର୍ମାଚାର୍ଯ୍ୟମାନଙ୍କ ମଧ୍ୟରେ ମତାନୈକ୍ୟ ସୃଷ୍ଟି ହେଲା । ପରିଶେଷରେ ଶାସ୍ତ୍ର ମନୋନୟନର ଦାୟିତ୍ୱ ଶ୍ରୀଜୀଉଙ୍କ ଉପରେ ନ୍ୟସ୍ତ କରି ଏକଦା ସମସ୍ତ ଧର୍ମଶାସ୍ତ୍ରକୁ ତାଙ୍କ ଶ୍ରୀଚରଣ ସନ୍ନିକଟରେ ଉପସ୍ଥାପନପୂର୍ବକ ମହାପ୍ରଭୁଙ୍କ ଶୟନଚର୍ଯ୍ୟା ସମାପନ କରି ଦ୍ୱାରରେ ମୁଦ ଦିଆଗଲା ।

ପରବର୍ତ୍ତୀ ପ୍ରତ୍ୟୁଷରେ ଦେଖାଗଲା ଯେ ମହାପ୍ରଭୁ ଭାଗବତ ପୋଥିକୁ ପୃଥକ କରି ରଖି ଦେଇଛନ୍ତି । ତେଣୁ ଶ୍ରୀଜୀଉଙ୍କ କର୍ତ୍ତୃକ ମନୋନୀତ ଶ୍ରୀମଦ୍ ଭାଗବତ ପ୍ରତ୍ୟହ ଅଧ୍ୟୟନ ମହାପ୍ରଭୁଙ୍କ ସେବାନୀତିର ଅନ୍ତର୍ଭୁକ୍ତ ହେଲା । କାଳକ୍ରମେ ଶ୍ରୀଜୀଉଙ୍କ ସେବାନୀତି ସହ ସଂଶ୍ଳିଷ୍ଟ ଏହି ଭାଗବତ ପାଠ ନିମିତ୍ତ ବୃତ୍ତିଭୋଗୀ 'ପୁରାଣପଣ୍ଡା' ନିଯୋଗର ବ୍ୟବସ୍ଥା ମଧ୍ୟ

କରିଗଲା । ଏହି ପୁରାଣପଣ୍ଡା ନିଯୋଗର କାର୍ଯ୍ୟପରିସର ସମ୍ପର୍କରେ ନିର୍ଦ୍ଦିଷ୍ଟ କରିଯାଇଛି ଯେ—"ପ୍ରତିଦିନ ତିନିଧୂପରେ ଠେଗ ପଡ଼ିବାଠାରୁ ଠେଗ ଫିଟିବାଯାଏ ଏ ସେବକ କଳାହାଟ ଦ୍ୱାର ଲଣ୍ଡାବର୍ଣ୍ଣ ଉପରେ ବଇଠାରିଖି ଶ୍ରୀପୁରୁଷୋତ୍ତମ କର୍ମାଙ୍ଗୀ ଅନୁସାରେ 'ଶ୍ରୀଗୀତଗୋବିନ୍ଦ' ଓ 'ମାଳାଦ୍ଧି ବଜେ' ପଢ଼ୁଥିଲେ । ବର୍ତ୍ତମାନ କେବଳ ସନ୍ଧ୍ୟା ଧୂପ ସମୟରେ ଶ୍ରୀମଦ୍ ଭାଗବତ (୨୭) ପଢ଼ାଯାଏ । ତତ୍କାଳରେ ବୃତ୍ତିଭୋଗୀ ପୁରାଣପଣ୍ଡାମାନେ ପୁରାଣ ବ୍ୟାଖ୍ୟାନ ନିମିତ୍ତ ଶ୍ରୋତୃମଣ୍ଡଳୀଠାରୁ ପାଉଣା ଆଦାୟପୂର୍ବକ, ଜୀବିକା ନିର୍ବାହ କରୁଥିଲେ । ସମାଜରେ ରକ୍ଷଣଶୀଳ ବ୍ରାହ୍ମଣ ସମ୍ପ୍ରଦାୟର ଆଧିପତ୍ୟ ବୃଦ୍ଧି ଫଳରେ ଯେତେବେଳେ ଠାକୁର ଦର୍ଶନ ନିମିତ୍ତ ଦକ୍ଷିଣା ଓ ପୁରାଣ ଶ୍ରବଣ ପାଇଁ ପାଉଣାଦେବା ଅପରିହାର୍ଯ୍ୟ ହୋଇପଡ଼ିଲା, ସେତେବେଳେ ଦେବାଳୟ ଏକ ବ୍ୟବସାୟ ପ୍ରତିଷ୍ଠାନରେ ପର୍ଯ୍ୟବସିତ ହେଲା ।

## ଓଡ଼ିଆ ଭାଗବତର ଜନ୍ମ

ଶାସ୍ତ୍ରବ୍ୟାଖ୍ୟାଦ୍ୱାରା ଜୀବିକାର୍ଜନ ଅନୁଚିତ ବୋଲି ଭାଗବତ (୭।୧୩)ରେ ନିର୍ଦ୍ଦିଷ୍ଟ ହୋଇଥିଲେ ମଧ୍ୟ ପୂର୍ବେ ଶ୍ରୀମନ୍ଦିରରେ ସମବେତ ଯାତ୍ରୀ ତଥା ଭକ୍ତମାନଙ୍କୁ ସଂସ୍କୃତ ଭାଗବତ ଶୁଣାଇ ଅଜ୍ଞ ଶ୍ରୋତୃମଣ୍ଡଳୀ-ଠାରୁ ପୁରାଣପାଠକମାନେ ଅର୍ଥ ଶୋଷଣ କରୁଥିଲେ । ଏକଦା ଜଗନ୍ନାଥ ଦାସଙ୍କ ବିଧବାମାତା ପଦ୍ମାବତୀ, ସଂସ୍କୃତ ଭାଗବତ ପାରାୟଣ ଦକ୍ଷିଣା ପ୍ରଦାନରେ ସ୍ୱୀୟ ଅସାମର୍ଥ୍ୟ ପ୍ରକାଶ କରିବାରୁ ପଣ୍ଡିତମନ୍ୟ ପୁରାଣପଣ୍ଡାଙ୍କ ଦ୍ୱାରା ତିରସ୍କୃତା ହୋଇ ଭଗ୍ନ ହୃଦୟରେ ଗୃହପ୍ରତ୍ୟାବର୍ତ୍ତନ ପୂର୍ବକ ସଂସ୍କୃତ ଅନଭିଜ୍ଞ ଓଡ଼ିଆମାନଙ୍କ ସହଜ ବୋଧଗମ୍ୟ ନିମିତ୍ତ ଭାଗବତ ମହାପୁରାଣର ଉତ୍କଳାନୁବାଦ କରିବାକୁ ପୁତ୍ରକୁ ଉପଦେଶ ଦେଲେ । ପୁରାଣ-ପଣ୍ଡାମାନଙ୍କର ଅହଙ୍କାର ଧ୍ୱଂସ ନିମିତ୍ତ ତଥା ଜାତିବର୍ଣ୍ଣ ନିର୍ବିଶେଷରେ ଧର୍ମସ୍ତ୍ରେ ଭାଗବତର ଗୂଢ଼ ତତ୍ତ୍ୱାର୍ଥ ଅବବୋଧ କରିବା ଉଦ୍ଦେଶ୍ୟରେ, ଜଗନ୍ନାଥ ଦାସ ଅପମାନ-ଜର୍ଜରିତା ମାତାଙ୍କର ଚରଣ ସ୍ପର୍ଶକରି ଭକ୍ତି ପ୍ରବଣରେ ଭାଗବତ ଅନୁବାଦ କରିବା ପାଇଁ କୃତସଙ୍କଳ୍ପ ହେଲେ ।

ମାତାଙ୍କଠାରୁ ପ୍ରେରଣା ଲାଭକରି ନିରକ୍ଷର ଓଡ଼ିଶାବାସୀଙ୍କ ଆବଶ୍ୟକତାବୋଧକୁ ସମ୍ମାନ ଦେଇ ଜଗନ୍ନାଥ ଦାସ ଚୈତ୍ରକ ପୁରାଣପଣ୍ଡା

(୨୭) ପୁରାଣପଣ୍ଡା (୩୨)—ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି, ପୃ-୮୫ ।

ବୃତ୍ତି ଅବଲମ୍ବନ ପୂର୍ବକ ପ୍ରତ୍ୟହ ଶ୍ରୀମନ୍ଦିରର ସନ୍ନିକଟବର୍ତ୍ତୀ ବଟଗଣେଶଙ୍କ ସମ୍ମୁଖରେ ବସି ସଂସ୍କୃତ ଭାଗବତର ଶ୍ଳୋକକୁ ସର୍ବଜନବୋଧ୍ୟ ଓଡ଼ିଆ ଭାଷାରେ ତାଳପତ୍ର ଲେଖମାନରେ ଲିପିବଦ୍ଧ କଲାପରେ ତାକୁ ପ୍ରଥମେ ବଡ଼ ଦେଉଳର ବଡ଼ଠାକୁରଙ୍କ ସମ୍ମୁଖରେ ଉଚ୍ଚସ୍ୱରରେ ଆବୃତ୍ତି କଲାପରେ ପୁନଶ୍ଚ ବଟଗଣେଶଙ୍କ ସମୀପରେ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ମାଗଣାରେ ପରିବେଷଣ କରୁଥିଲେ । ସୁଲଳିତ କଣ୍ଠରେ ଭକ୍ତି ବଳର ଶକ୍ତିରେ ଭାଗବତର ସହଜ ସୁନ୍ଦର-ସରଳ ବ୍ୟାଖ୍ୟା କରି ସେ କ୍ରମେ ରସ ଶ୍ରୋତୃବର୍ଗଙ୍କ ଶ୍ରଦ୍ଧା ତଥା ଭକ୍ତିଭାଜନ ହେଲେ ।

ଶ୍ରୀମନ୍ଦିର ବେଢ଼ାବଳୟ ମଧ୍ୟରେ ଭାଗବତ ଅନୁବାଦ ଓ ଆଲୋଚନା ଅବସରରେ ଜଗନ୍ନାଥ ଦାସଙ୍କର ଅଲୌକିକ ଭକ୍ତିଭାବ ଓ ଈଶ୍ୱରନିଷ୍ଠାରେ ଉଦ୍‌ବୁଦ୍ଧ ହୋଇ ଶ୍ରୀଚୈତନ୍ୟ ୧୫୦୯ ଖ୍ରୀଷ୍ଟାବ୍ଦରେ ତାଙ୍କୁ ଅତିବଡ଼ ଉପାଧିରେ ଭୂଷିତ କରିଥିଲେ । ଏହା ଫଳରେ ପୁରାଣଜୀବୀ ପୁରାଣପଣ୍ଡାମାନଙ୍କର କେବଳ ଗାତ୍ରଦାହ ହେଲାନାହିଁ, ତତ୍‌ସହିତ ସେମାନଙ୍କର ରୋଜଗାର ବାଧାପ୍ରାପ୍ତ ହେବାରୁ ତତ୍କାଳୀନ ରକ୍ଷଣଶୀଳ ବ୍ରାହ୍ମଣ ସମାଜ ଜଗନ୍ନାଥ ଦାସକୃତ ଭାଗବତକୁ 'ତେଲିଭାଗବତ' ବୋଲି ଅଭିହିତ କରିଥିଲେ । ଲୋକ ପ୍ରଚଳିତ ପ୍ରାକୃତ ଭାଷାରେ ଭାଗବତ ରଚନା ନିମିତ୍ତ ତତ୍କାଳୀନ ସମାଜର ବଡ଼ପଣ୍ଡାମାନଙ୍କ ଦ୍ୱାରା ସେ ଲାଞ୍ଛିତ ହେବାରୁ କବି ସେମାନଙ୍କୁ ବିଦ୍ରୂପ କରି ଲେଖିଛନ୍ତି—"ବଡ଼ ଲୋକଙ୍କ ବଡ଼ ମତ । ଅଳପ ଲୋକେ ବଡ଼ସତ ।" ମାତ୍ର ସମସାମୟିକ ଗଜପତି ମହାରାଜା ଜଗନ୍ନାଥ ଦାସଙ୍କର ଭାଗବତ ଅନୁବାଦ ଓ ମନୋଜ୍ଞ ବ୍ୟାଖ୍ୟା ଶ୍ରବଣରେ ପ୍ରୀତ ହୋଇ ତାଙ୍କୁ ରାଜକୀୟ ପୁରାଣପଣ୍ଡା ଉପାଧି ପ୍ରଦାନ କରିଥିଲେ । ସେହିଦିନଠାରୁ ବୃତ୍ତିଭୋଗୀ ପୁରାଣପଣ୍ଡାମାନେ ବଟଗଣେଶ ସମୀପରେ ପୁରାଣ ପାଠ କରି ଆସୁଛନ୍ତି ।

୩୨୯ ଅଧ୍ୟାୟବିଶିଷ୍ଟ ଓଡ଼ିଆ ଭାଗବତକୁ ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧ (୨୭) ରେ ଗ୍ରନ୍ଥିତ କରିଥିଲେ ହେଁ ଦଶମସ୍କନ୍ଧକୁ ଗୋପଲୀଳା

(୨୭) "ଜଗନ୍ନାଥ ଦାସଙ୍କ ଗୀତ । ନାମ ତା ଶିଶୁ ଭାଗବତ ॥
ତିନିଶତ ଊନତିରିଶ । ଏକାଦଶ ଯାଏ ପ୍ରକାଶ ॥"
ମହାଦେବ ଦାସ— ଭାଗବତ ଦ୍ୱାଦଶ ସ୍କନ୍ଧ ।

ଓ ଦ୍ୱାରକାଲୀଳା ନାମରେ ଦୁଇଖଣ୍ଡରେ ବାଣ୍ଟି କରି ସମୁଦାୟ ବାର-ଖଣ୍ଡରେ ପରିଣତ କରିଛନ୍ତି । ସମ୍ପ୍ରତି ଏଥିସହିତ ମହାଦେବ ଦାସଙ୍କ ଲିଖିତ ଦ୍ୱାଦଶ ସ୍କନ୍ଧ ଓ ଦ୍ୱାରକାନାଥ ଦାସ ବିରଚିତ ଏକାଦଶ ସ୍କନ୍ଧ ମଧ୍ୟ ବଜାରରେ କିଣିବାକୁ ମିଳୁଅଛି । ଅତଏବ ଏକ ମହିମ୍ନପୁରୀ ନାମର ଆକୃତି ତଥା ପୂରିପୂ ରୂପ ଜଗନ୍ନାଥ ଦାସଙ୍କ ବୃତ୍ତି ସଙ୍କଳ୍ପରୁ ଓଡ଼ିଆ ଭାଗବତର ଜନ୍ମ । ଏହି ପରିପ୍ରେକ୍ଷୀରେ "ଜନମାର ଇଚ୍ଛା ଏବଂ ଜାତିର ହେଲା ଭଷା ଭବତ" (୨୮) ବୋଲି ମାୟାଧର ମାନସିଂହ ଯେଉଁ ମନ୍ତବ୍ୟ ପ୍ରଦାନ କରିଛନ୍ତି ତାହା ବାସ୍ତବରେ ପ୍ରଣିଧାନଯୋଗ୍ୟ ।

## ଭାଗବତର ଅନୁବାଦ ଶୈଳୀ :

ଓଡ଼ିଆ ଭାଗବତ ଜଗନ୍ନାଥ ଦାସଙ୍କର ସର୍ବଶ୍ରେଷ୍ଠ କୃତି (Master Piece) । ସେ ସଂସ୍କୃତ ଭାଗବତକୁ ପ୍ରାକୃତ ଭାଷାରେ ଅନୁବାଦ କରି ନଥିଲେ, ସମଗ୍ର ଓଡ଼ିଆ ଜାତିକୁ ଭାଗବତ ପାଠ ସୁଯୋଗ ଲାଭ କରିବାକୁ ଆହୁରି ଅନେକ ବର୍ଷ ଅପେକ୍ଷା କରିବାକୁ ପଡ଼ିଥାନ୍ତା । ଅନୁଦିତ ଭାଗବତରେ ଜଗନ୍ନାଥ ଦାସଙ୍କ ଅନୁବାଦଶୈଳୀ ଅନନ୍ୟ ସାଧାରଣ । ଶ୍ରୀମଦ୍ ଭାଗବତର ବହୁବିଧ ଟୀକା ମଧ୍ୟରୁ ଲକ୍ଷ୍ମୀନାରାୟଣ ଉପାସକ ଶ୍ରୀଧରସ୍ୱାମୀଙ୍କ ଟୀକା ପ୍ରାମାଣିକ ହୋଇଥିବାରୁ ମହାପୁରୁଷ ଜଗନ୍ନାଥ ଦାସ ଶ୍ରୀଧର ସ୍ୱାମୀଙ୍କ ରଚିତ 'ଭାବାର୍ଥ ଦୀପିକା' ଅବଲମ୍ବନରେ ଶ୍ରୀମଦ ଭାଗବତର ଓଡ଼ିଆ ଅନୁବାଦ କରିଛନ୍ତି (୨୯) ।

ଅନୁବାଦ ଏକ ସାରସ୍ୱତ କଳା । ଗଭୀର ବିଷୟବୋଧ ତଥା ଅଗାଧ ପାଣ୍ଡିତ୍ୟ ବଳରେ ସପ୍ତଦଶ ସଂସ୍କୃତ ଭାଗବତର ୧୮୦୦୦ ଶ୍ଳୋକର ଉତ୍କଳାନୁବାଦ କରି ୭୧୦୭୭ ପଦରେ ପ୍ରକାଶ କରିଛନ୍ତି । ସେ ଜଣେ ପ୍ରବୀଣ ଅନୁବାଦକ । ତାଙ୍କର ପ୍ରଶଂସନୀୟ ଉଦ୍ୟମ ତଥା ସାରସ୍ୱତ ପ୍ରତିଭା ପ୍ରୟୋଗରେ ଭାଗବତ ଓଡ଼ିଆ ସାହିତ୍ୟରେ ଏକ କାଳଜୟୀ ସୃଷ୍ଟିରେ ପରିଣତ ହୋଇପାରିଛି । ଓଡ଼ିଆ ସାହିତ୍ୟ ସୃଷ୍ଟି ପରିପ୍ରେକ୍ଷୀରେ ଜଗନ୍ନାଥ

---

(୨୮) ଡଃ ମାୟାଧର ମାନସିଂହ—ଓଡ଼ିଆ ସାହିତ୍ୟର ଇତିହାସ ।

(୨୯) ପଣ୍ଡିତ ଗୋପିନାଥ ନନ୍ଦ— ଅତିବଡ଼ ଜଗନ୍ନାଥ ପରିକ୍ରମା, ପୃ-୩୨

ତାଙ୍କ ଅନୁଦିତ ଭାଗବତ ନିମନ୍ତେ ଷୋଡ଼ଶ ଶତାବ୍ଦୀ ଯେପରି ଧନ୍ୟ ହୋଇଅଛି, ସେହିପରି ସ୍ମରଣୀୟ ହୋଇ ରହିବ ମଧ୍ୟ ।

ଅନୁବାଦ ସାଧାରଣତଃ ଦୁଇ ପ୍ରକାର । ଯଥା—ଭାବାନୁବାଦ ଓ ମର୍ମାନୁବାଦ । ଅତଏବ ଜଗନ୍ନାଥ ଦାସ ସଂସ୍କୃତ ଭାଗବତର ଆକ୍ଷରିକ (Literal) ଅନୁବାଦ ନକରି, ଏହାର ଭାବକୁ ଆଧାର କରି ମୁକ୍ତ ଅନୁବାଦ (Free Translation) କରିଛନ୍ତି । ସେ ମୂଳ ରଚନାର ବିଶ୍ୱସ୍ତ ଅନୁସରଣପୂର୍ବକ ସ୍ୱୀୟ ପ୍ରତିଭାପ୍ରସୂତ ଲେଖନୀରେ ଓଡ଼ିଆ ଭାଗବତକୁ ଯେପରି ଏକ ଅନବଦ୍ୟ ରୂପ ପ୍ରଦାନ କରିଛନ୍ତି, ଫଳରେ ତାହା ଏକ ମୌଳିକ ସୃଷ୍ଟିର ପ୍ରତ୍ୟୟ ଲାଭ କରିଅଛି । ଏହି ପରିପ୍ରେକ୍ଷୀରେ ସ୍ୱଭାବକବି ଗଙ୍ଗାଧର ମେହେର ଯଥାର୍ଥରେ କହିଛନ୍ତି ଯେ—ଗୋଟିଏ ହସ୍ତୀ ସ୍ୱାଭାବିକ ଭାବରେ ଗୁଳ୍ପଗମନବେଳେ ବଡ଼ ଆକର୍ଷଣୀୟ ଦେଖାଯାଏ । ମାତ୍ର ପୂର୍ବୋକ୍ତ ହସ୍ତୀର ପଦଚିହ୍ନ ଉପରେ ପଦନ୍ୟାସପୂର୍ବକ ଅନ୍ୟ ଏକ ହସ୍ତୀ ଅନୁଗମନ କଲେ, ତାହା 'ଗଜଗମନ' ଉପମାଲାଭ କଲାଭଳି ସୁନ୍ଦର ଦେଖାଯିବ ନାହିଁ । ତେଣୁ ଜଗନ୍ନାଥ ଦାସ ସ୍ୱୀୟ ମୌଳିକତାକୁ ସମ୍ବଳ ରୂପେ ବିନିଯୋଗପୂର୍ବକ ଆକ୍ଷରିକ ତଥା ଭାବାନୁବାଦ ଉଭୟ ପଦ୍ଧତିକୁ ଅନୁସରଣ କରିଛନ୍ତି ।

ପୁନଶ୍ଚ ଆକ୍ଷରିକ ଅନୁବାଦ ଅନେକ କ୍ଷେତ୍ରରେ ନୀରସ ହେବାର ଆଶଙ୍କା ଥିବାରୁ ଜଗନ୍ନାଥ ଦାସ ଆକ୍ଷରିକ ଅନୁବାଦ ଅପେକ୍ଷା ମୂଳ ଶ୍ଳୋକ ନିହିତ ଭାବର ବିନ୍ୟାସ ଉପରେ ଅଧିକ ଗୁରୁତ୍ୱ ଦେଇ ସ୍ୱୀୟ ରୁଚି ଅନୁକୂଳ ବିଷୟବସ୍ତୁ ସଂଯୋଜନ ପୂର୍ବକ ଓଡ଼ିଆ ଭାଗବତକୁ ପୁଷ୍ଟଳ କରିବା ସହିତ ସେ ନିଜର ପାଣ୍ଡିତ୍ୟ, ଅନୁଭୂତି ତଥା କଳ୍ପନାବଳାସ୍ଥ ବଳରେ ଉକ୍ତ ଗ୍ରନ୍ଥକୁ ସମଧିକ ଉର୍ଜ୍ଜସ୍ୱଳ କରି ଗଢ଼ି ତୋଳିଛନ୍ତି । ଓଡ଼ିଆ ଭାଗବତକୁ ଅନୁଧ୍ୟାନ କଲେ କବିଙ୍କର ଅନୁବାଦ ପ୍ରକ୍ରିୟାର ଅନ୍ୟ ଏକ ଦିଗ ଉନ୍ମୋଚିତ ହୋଇଥାଏ ସେ ଭାଗବତ ଅନୁବାଦ କରିବା ଅବସରରେ ନିମ୍ନ ପଦ୍ଧତିଟିଏ ଅବଲମ୍ବନ କରିଛନ୍ତି । ଯଥା—

(କ) ସଂକ୍ଷିପ୍ତୀକରଣ—ମୂଳ ଭାଗବତର କେତେକ ବିସ୍ତାରିତ ଆଖ୍ୟାୟିକାକୁ କବି ଅଳ୍ପୀକରଣ କରିଛନ୍ତି ।

(ଖ) ବସ୍ତୁବିସ୍ତାରଣ—ସଂକ୍ଷେପରେ ଆଲୋଚିତ ବିଷୟ ବିସ୍ତାରିତ ବର୍ଣ୍ଣନା ମଧ୍ୟ କରିଛନ୍ତି ।

(ଗ) ଉକ୍ତ ନିକ୍ଷେପ—ମୂଳ ଭାଗବତ ବର୍ଣ୍ଣିତ ବିଷୟବସ୍ତୁର କେତେକାଂଶ ପରିତ୍ୟାଗ ।

(ଘ) ଅନୁକ୍ତ ପ୍ରକ୍ଷେପ—କବି ଅନ୍ୟପୁରାଣଶାସ୍ତ୍ରରୁ ଆହୃତ ତଥ୍ୟାବଳୀ ସ୍ୱୀୟ ଭାଗବତରେ ସ୍ଥାନିତ କରିଛନ୍ତି । ଅତଏବ ଜଗନ୍ନାଥ ଦାସ ଯୋଗ, ବିୟୋଗ, ଆହରଣ ଓ ଅନୁସରଣ ପ୍ରକ୍ରିୟା ବଳରେ ଓଡ଼ିଆ ଭାଗବତକୁ ଏକ ଜନପ୍ରିୟ ରୂପ ପ୍ରଦାନ କରିଛନ୍ତି ।

ଭାରତୀୟ ସାହିତ୍ୟ କ୍ଷେତ୍ରରେ ସଂସ୍କୃତ ଭାଷାରେ ରଚିତ ଶ୍ରୀମଦ୍‌ଭାଗବତ ଏକଦା ଯେଉଁ ମହାଦ୍ରୁମରେ ପରିଣତ ହୋଇଥିଲା, ଜଗନ୍ନାଥ ଦାସ ସେ ବିଶାଳତରୁରୁ ବୀଜ ସଂଗ୍ରହ କରି ତାହାକୁ ଓଡ଼ିଶାର ମୃତ୍ତିକା ତଥା ଓଡ଼ିଶୀ ଜଳବାୟୁ ସାହାଯ୍ୟରେ ଏକ ଅବିନାଶୀ ରୂପ ପ୍ରଦାନ କରିଛନ୍ତି । ସେହିଦିନଠାରୁ ଜଗନ୍ନାଥ ଦାସକୃତ ଭାଗବତ ଓଡ଼ିଆର ଚିର ଧନ ରୂପେ ପରିଗଣିତ ହୋଇଅଛି । ମୂଳ ଭାଗବତ ଓ ଓଡ଼ିଆ ଭାଗବତ ମଧ୍ୟରେ ଆପାତତଃ କୌଣସି ପାର୍ଥକ୍ୟ ନାହିଁ ସତ; ମାତ୍ର ଉତ୍କଳର ଭାଷା, ଜନଜୀବନ ଓ ସାମାଜିକ ପରିବେଶ ଇତ୍ୟାଦିର ପରିସ୍ଫୁଟନ ହିଁ ଓଡ଼ିଆ ଭାଗବତର ବୈଶିଷ୍ଟ୍ୟ ।

ଜଗନ୍ନାଥ ଦାସ ବିରଚିତ ଭାଗବତ ସଂସ୍କୃତ ଭାଗବତର କେବଳ ଏକ ଓଡ଼ିଆ ସଂସ୍କରଣ ନୁହେଁ । କବି ସ୍ୱୀୟ ଅଗାଧ ମନୀଷା ବଳରେ ଏହାକୁ ଏକ ମୌଳିକ ସଂକଳନରେ ପରିଣତ କରିଛନ୍ତି । ଅନୁବାଦର ସାବଲୀଳତା ଓଡ଼ିଆ ଭାଗବତର ଅନ୍ୟ ଏକ ବିଶେଷତ୍ୱ । ଜଗନ୍ନାଥ ଦାସ ମୂଳ ଭାଗବତରୁ ସାର ସଂଗ୍ରହ କରି ଭାଗବତ ସଂହିତ ରକ୍ଷାପୂର୍ବକ ଓଡ଼ିଆରେ ଭାଷାନ୍ତର କରିଛନ୍ତି । ସର୍ବୋପରି ଓଡ଼ିଆ ଭାଷା ସାହିତ୍ୟର ବିପ୍ଳବୀ କବି ଜଗନ୍ନାଥ ଦାସ ସଂସ୍କୃତ ଭାଗବତର କଙ୍କାଳ ଉପରେ ନିଜର ଅପୂର୍ବ ଧୀଶକ୍ତି, ତୀବ୍ର ଅନୁଭୂତି, ପ୍ରଗାଢ଼ ବ୍ୟୁତ୍ପତ୍ତି ତଥା ଗଭୀର ପ୍ରତିଭାରୂପକ ରକ୍ତମାଂସ ସଂଯୋଗରେ ଏକ ଜୀବନ୍ତ କାବ୍ୟରୂପ ପ୍ରଦାନ କରିଥିବାରୁ ଓଡ଼ିଆ ଭାଗବତ ଏକ ଅନନ୍ୟ ସୃଷ୍ଟିରେ ପରିଣତ

ହୋଇଅଛି । ମୂଳ ଭାଗବତର ମୌଳିକତା ରକ୍ଷାପୂର୍ବକ ସ୍ୱ ଅନୁଭୂତିସିଦ୍ଧ ମୌଳିକତାକୁ ଛନ୍ଦେ ଛନ୍ଦେ ପ୍ରସ୍ଫୁଟିତ କରି ଜଗନ୍ନାଥ ଦାସ ଉତ୍କଳବାଣୀ ଭଣ୍ଡାରକୁ ସମୃଦ୍ଧ କରିବା ସହିତ ଓଡ଼ିଆ ଭାଗବତକୁ ସମଗ୍ର ମାନବ ଜାତି ହିତାର୍ଥେ ଉତ୍ସର୍ଗ କରିଛନ୍ତି ।

ଜଗନ୍ନାଥ ଦାସଙ୍କର ଅନନ୍ୟ ସୃଷ୍ଟି ଏହି ଭାଗବତ ଦୀର୍ଘ ପାଞ୍ଚଶତାବ୍ଦୀ ବ୍ୟାପୀ ଏକ ନିତ୍ୟ ନୂତନ ସୃଷ୍ଟି ରୂପେ ଓଡ଼ିଆ ଜାତିକୁ ପ୍ରେରଣା ପ୍ରଦାନ କରିଆସୁଅଛି । କେବଳ ସେତିକି ନୁହେଁ, ସଂସ୍କୃତ ଭାଗବତର ଉତ୍କଳୀକରଣ ଏକ ଜନହିତକର ତଥା ବୈଷ୍ଣବମାନଙ୍କର ମଙ୍ଗଳ ବିଧାୟକ କାର୍ଯ୍ୟ ବୋଲି ଓଡ଼ିଆ ଭାଗବତରେ ଉଦ୍‌ଘୋଷିତ ହୋଇ କୁହାଯାଇଛି—

"ଶ୍ରୀ ଏକାଦଶ ଭାଗବତେ । ଗୀତେ କହିଲି ଜନହିତେ ॥"
(୧୧।୯)

### ଭାଗବତର ଭାଷା ବିଭବ

ପ୍ରାକୃତ ଭାଷା ପ୍ରଚଳନ ପୂର୍ବରୁ ଓଡ଼ିଶାରେ ସାଧାରଣତଃ ସଂସ୍କୃତ ଭାଷାରେ ଲିଖିତ ସାହିତ୍ୟ ଉପଲବ୍ଧ ହେଉଥିଲା । ବିଶେଷତଃ ସଂସ୍କୃତ ଶ୍ରୀମଦ୍‌ ଭାଗବତମ୍‌ର ଗୂଢ଼ ତତ୍ତ୍ୱ ସାଧାରଣଙ୍କପକ୍ଷେ ଆଦୌ ସୁବୋଧ୍ୟ ନଥିଲା । ପୁରାଣ ସାଧାରଣ ହିତ ଉଦ୍ଦେଶ୍ୟରେ ରଚିତ ହେଉ-ଥିବାରୁ ତାହାର ଭାଷା ମୁଖ୍ୟତଃ ସରଳ ହେବା ବିଧେୟ । ଦୁର୍ବୋଧ୍ୟ ଶ୍ରୀମଦ୍ଭାଗବତମ୍‌କୁ ସର୍ବଜନବୋଧ କରିବା ନିମିତ୍ତ ଅତିବଡ଼ ଜଗନ୍ନାଥ ଦାସ ସୁନ୍ଦର ଓ ସରଳ ଓଡ଼ିଆ ଭାଷାରେ ଅନୁବାଦ କରି ସମଗ୍ର ଉତ୍କଳୀୟମାନଙ୍କୁ ଭାଗବତ ରସାମୃତ ଆସ୍ୱାଦନ କରିବାର ସୌଭାଗ୍ୟ ପ୍ରଦାନ କରି ଯଥାର୍ଥ ଭଗିରଥର ଭୂମିକା ନିର୍ବାହ କରିଛନ୍ତି ।

ଅନୁସରଣ ପ୍ରକ୍ରିୟା ତଥା ସ୍ୱକୀୟ ଭାଷା ପ୍ରୟୋଗରୁ ଜଗନ୍ନାଥ ଦାସଙ୍କ ଅନୁବାଦ କୁଶଳତା ସୂଚିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା ଯେ ସଂସ୍କୃତ ପୁରାଣର ଗୂଢ଼ତତ୍ତ୍ୱ ବ୍ୟାଖ୍ୟା କରିବାରେ ସାମର୍ଥ୍ୟ ଲାଭ କରିଛି; ତାହା ହିଁ ଉପଲବ୍ଧ ହୋଇଥାଏ (୩୦) । ପୁରାଣ ଭାଷାର ଅନାକର୍ଷଣୀୟ

(୩୦) ଶ୍ରୀ ମନମୋହନ ଚକ୍ରବର୍ତ୍ତୀ—Asiatic Society Journal.

ରୂପ ପରିବର୍ତ୍ତେ ଏଥିରେ ଦେଖାଦେଇଛି ଏପରି ଏକ ଭାଷା, ଯାହା ନୂତନ ପ୍ରାଣ ବିଭବରେ ସତତ ପରିସ୍ଫୁଟିତ । ମର୍ଯ୍ୟାଦା ବା ଆଭିଜାତ୍ୟ ବୋଧରେ ଭାଗବତର ଭାଷା ନିତ୍ୟ ପରିପ୍ଲାବିତ ହୋଇ ରହିଛି (୩୧) । ବାସ୍ତବରେ ପୁରାଣରେ ବ୍ୟବହୃତ ଗ୍ରାମୀଣ ଭାଷା ପ୍ରୟୋଗ ଜଡ଼ିତାଙ୍କ ପ୍ରବାହରୁ ମୁକ୍ତ ହୋଇ ଭାଗବତର ଭାଷା ଏକ ଅଭିନବ ରୂପଲାବଣ୍ୟ ଲାଭ କରିଛି । ଅବିକଳ ଅନୁବାଦରେ ମଧ୍ୟ କବିଙ୍କ ଭାଷା ପ୍ରୟୋଗ କୁଶଳତା ଓଡ଼ିଆ ଭାଗବତକୁ ମଞ୍ଜୁଳ ତଥା ପ୍ରାଣସ୍ପର୍ଶୀ କରି ଗଢ଼ି ତୋଳିଛି (୩୨) । ଜଗନ୍ନାଥ ଦାସଙ୍କ ଅନୂଦିତ ଭାଗବତର ଭାଷା ଶୁଦ୍ଧ, ସଂଯତ, ମାର୍ଜିତ, ଲାଳିତ୍ୟପୂର୍ଣ୍ଣ, ଅର୍ଥବୋଧକ, ସାର୍ବଜନୀକ, ଭାବଦ୍ୟୋତକ ସର୍ବୋପରି ସମ୍ଭ୍ରାନ୍ତ ଅଟେ ।

ଭାଷା ବ୍ୟବହାରରେ ସଂସ୍କୃତି ଅଳଙ୍କାର ଶାସ୍ତ୍ରରେ ଚାରିପ୍ରକାର ରୀତି ପ୍ରୟୋଗ ସୁନିର୍ଦ୍ଦିଷ୍ଟ କରାଯାଇଛି । ଯଥା--ବୈଦର୍ଭୀ, ଗୌଡ଼ୀ, ଲାଟୀ ଓ ପାଞ୍ଚାଳୀ । ଏମାନଙ୍କ ମଧ୍ୟରୁ ସର୍ବଶ୍ରେଷ୍ଠ ରୀତି ବୈଦର୍ଭୀ ଶୈଳୀରେ ଜଗନ୍ନାଥ ଦାସ ଭାଗବତ ଭାଷାନ୍ତରୀକରଣ କରିଛନ୍ତି । ଓଡ଼ିଆ ଭାଗବତର ବହୁ ସ୍ଥଳରେ ଜଗନ୍ନାଥ ଦାସ ସାହିତ୍ୟୋପଯୋଗୀ ଭାଷାର ବ୍ୟବହାର କରିଥିଲେ ମଧ୍ୟ ତାହା ମସ୍ତିଷ୍କର ଭାଷା ନହୋଇ ହୃଦୟର ଆବେଗମୟ ଭାଷାରେ ପରିଣତ ହୋଇଅଛି । ଏହାହିଁ ହେଉଛି ଭାଗବତ ଭାଷାର ବିଶେଷତ୍ୱ । ଭାଷା ହେଉଛି ଭାବର ବାହକ । ଭାବ ଓ ଭାଷାର ଅପୂର୍ବ ବିଳାସରେ ବିକଶିତ ଓଡ଼ିଆ ଭାଗବତ ଓଡ଼ିଆ ପ୍ରାଣର ଅମୂଲ୍ୟ ସମ୍ପଦ ଅଟେ ।

ପୂର୍ବସୂରୀ ସାରଳା ଦାସ ଓ ଦୀକ୍ଷାଗୁରୁ ବଳରାମ ଦାସଙ୍କ ସାହିତ୍ୟରୁ ଆହୃତ ପ୍ରାକୃତ ତଥା ଅପଭ୍ରଂଶ ଭାଷା ସହିତ ସଂସ୍କୃତି ତତ୍ସମ ଓ ତଦ୍‌ଭବ ଶବ୍ଦର ସମନ୍ୱୟରେ ଜଗନ୍ନାଥ ଦାସ ଭାଗବତ ଅନୁବାଦ କରି ଏହାର ଶବ୍ଦ ସଂଯୋଜନାରେ ଏକ ଐନ୍ଦ୍ରଜାଲିକ ଅଦ୍ଭୁତର ସ୍ପର୍ଶ

(୩୧) ଡଃ ନଟବର ସାମନ୍ତରାୟ—ଅତିବଡ଼ି ଜଗନ୍ନାଥ ପରିକ୍ରମା, ପୃ-୫୬ ।

(୩୨) ଡଃ ଗଙ୍ଗାଧର ବଳ---ଶ୍ରୀମଦ୍ ଭାଗବତ ଏକ ଅଧ୍ୟୟନ, କୋଣାର୍କ, ୬୮ତମ ସଂଖ୍ୟା, ପୃ-୨୭ ।

ଦେଇଛନ୍ତି । ତତ୍ସମ ଶବ୍ଦ ସହିତ ଦେଶଜ ଶବ୍ଦର ସମ୍ମିଶ୍ରଣ ଓଡ଼ିଆ ଭାଗବତର ଭାଷାକୁ ଏକ ଶକ୍ତିଶାଳୀ ରୂପ ପ୍ରଦାନ କରିଅଛି । ତତ୍ସମ ମୂଳକ ସାଧୁଶବ୍ଦର ବହୁଳ ବ୍ୟବହାର ଦୃଷ୍ଟିରୁ ଓଡ଼ିଆ ଭାଗବତର ଭାଷା ମୁଖ୍ୟତଃ ସଂସ୍କୃତାଶ୍ରୟୀ ଅଟେ ବୋଲି କେତେକ ସମାଲୋଚକ ମତ-ପୋଷଣ କରୁଥିବା ସ୍ଥଳେ ଏହା ବାସ୍ତବରେ ପ୍ରାକୃତ ଭାଷାପୁଷ୍ଟ ରଚନା ବୋଲି କବି ସ୍ୱକୀୟ ସୃଷ୍ଟିରେ (୩୩) ସ୍ୱୀକାର କରିଛନ୍ତି ।

ସନ୍ଥକବି ଜଗନ୍ନାଥ ଦାସ ପଲ୍ଲୀବହୁଳ ଓଡ଼ିଶାରେ ଅବସ୍ଥାନ କରୁଥିବା ଅଧିବାସୀମାନଙ୍କର କଥିତ ଭାଷା ପ୍ରତି ସଚେତନ ରହି ସର୍ବ-ଜନବୋଧ ଭାଷାରେ ଭାଗବତ ରଚନା କରିଥିଲେ । ଓଡ଼ିଶା ମାଟିର ଅନ୍ତରଙ୍ଗ ଭାଷାରେ ଲିଖିତ ଭାଗବତର ଭାଷା ହେଉଛି ଯଥାର୍ଥରେ ଓଡ଼ିଆ ଜାତିର ପ୍ରାଣର ଭାଷା । ଭାଗବତର ଆଡ଼ମ୍ବରଶୂନ୍ୟ ଭାଷା ହେଉଛି, ବାସ୍ତବରେ ଗଣଭାଷାର ସାର୍ଥକ ନିଦର୍ଶନ । ଫଳରେ ଭାଗବତର ଭାଷା ଓଡ଼ିଶାର ସର୍ବାଞ୍ଚଳର ଭାଷା ହୋଇପାରିଛି (୩୪) । ଅତଏବ ଭାଗବତ ରଚନା କାଳରେ ଓଡ଼ିଆ ଭାଷା ସମୃଦ୍ଧ ଥିଲା; ତାହା ଅନୁମେୟ ।

"ଜଗନ୍ନାଥ ଦାସଙ୍କ ଭାଗବତର ଭାଷା, ଓଡ଼ିଆ ଭାଷା ବିକାଶର ଗତିପଥରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ (୩୫) ।" "ଭାଗବତରେ ଓଡ଼ିଆ ଭାଷା ଯେଉଁ ଆଦର୍ଶ ବା ସର୍ବଜନଗ୍ରାହ୍ୟ ରୂପ ପରିଗ୍ରହ କରିଥିଲା, ତାହା ଆଜିଯାଏ ଓଡ଼ିଆ ଭାଷାର ଆଦର୍ଶ ରୂପେ ରହି ଆସିଛି (୩୬) ।" ଭାଗବତ ଓଡ଼ିଆଭାଷାକୁ କେବଳ ଆଦର୍ଶ ରୂପ ପ୍ରଦାନ କରିନାହିଁ, ତତ୍ ସହିତ ବହୁଗୁଣିତ କବିଙ୍କ ଭାଷା ପ୍ରୟୋଗଶୈଳୀ ଅଦ୍ୟାବଧି ଅନତିକ୍ରମ୍ୟ ହୋଇ ରହିଛି । ପରବର୍ତ୍ତୀ ସାହିତ୍ୟିକଗଣ ସେମାନଙ୍କ ସୃଷ୍ଟିରେ ଜଗନ୍ନାଥ ଦାସଙ୍କ ଭାଷା ପ୍ରତି ଅନୁକରଣ କରିଛନ୍ତି । ଫଳରେ ଆଧୁନିକ ରଚନାବଳୀ

---

(୩୩) (କ) ପ୍ରାକୃତ ବନ୍ଧେ ଭାଗବତ । ଭାଗବତ ୧୧.୧୦ ।

(ଖ) ପ୍ରାକୃତ ଭାଷା ଏ ପ୍ରବନ୍ଧ । ଭାଗବତ ୧୨. ୧୬ ।

(୩୪) ରାସ ପଞ୍ଚାଧ୍ୟାୟୀ, ପୃ-୫୩—ସମ୍ପାଦନା ବନମାଳୀ ମିଶ୍ର ।

(୩୫) ଅତିବଡ଼ ଜଗନ୍ନାଥ ପରିକ୍ରମା ପୃ-୧୩୫—ସଂ ନିତ୍ୟାନନ୍ଦ ଶତପଥୀ ।

(୩୬) ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ପୃ-୨୬୬—ସୁରେନ୍ଦ୍ର ମହାନ୍ତି ।

ଭାଗବତଶାସ୍ତ୍ର ଭାଷାଶୈଳୀ ଦ୍ୱାରା ପରିପୁଷ୍ଟ ହୋଇଅଛି । ତେଣୁ ଭାଗବତରେ ବ୍ୟବହୃତ ଭାଷାମାନଙ୍କ ଓଡ଼ିଆ ଭାଷା (Standard Oriya Language) ରୂପେ ଅଦ୍ୟାବଧି ଅପରିବର୍ତ୍ତିତ ରହିଅଛି ।

କେବଳ ସେତିକି ନୁହେଁ ତତ୍କାଳରେ ଓଡ଼ିଆଜାତିକୁ ଏକ ସଂସ୍କୃତି ସମ୍ପନ୍ନ ଜାତିରେ ପରିଣତ କରିବା ନିମିତ୍ତ ଭାଗବତ କିପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ସେହି ପରିପ୍ରେକ୍ଷୀରେ ବିଜୟଚନ୍ଦ୍ର ମଜୁମ୍ଦାର ଯଥାର୍ଥରେ କହିଛନ୍ତି—"ଭାଗବତକୁ ଓଡ଼ିଆରେ ପରିବେଷଣକାରୀ ଜଗନ୍ନାଥ ଦାସ ସବୁ ଶ୍ରେଣୀର ଲୋକଙ୍କୁ ନିଜ ମାତୃଭାଷା ଓଡ଼ିଆକୁ ଶ୍ରଦ୍ଧା ସହକାରେ ଶିଖିବାପାଇଁ ଯେ ପ୍ରବର୍ତ୍ତାଇ ପାରିଥିଲେ, ଏହା ବିନାଦ୍ୱିଧାରେ କୁହାଯାଇ ପାରେ । ଜଗନ୍ନାଥ ଦାସଙ୍କର ଏହି ଗ୍ରନ୍ଥ ଓଡ଼ିଆ ଜାତିକୁ ଯେପରି ଭାବେ ଉପକୃତ କରିଛି, ତାହା ପରିମେୟ ନୁହେଁ । ଏହି ଗ୍ରନ୍ଥ ଓଡ଼ିଆ ଜାତିର ନୈତିକ ଜୀବନକୁ ଗଠନ କରିଛି, ଏବେ ମଧ୍ୟ କରୁଛି । ଲୋକେ ଯେତେବେଳେ ଜାଣିଲେ ଓଡ଼ିଆ ଭାଷାରେ ଭାଗବତ ପ୍ରାପ୍ତ ହେଲାଣି ଶିଖିବାରେ ଲାଗିଗଲେ । କେବଳ ଏହି କାରଣରୁ ବଙ୍ଗଳା ଅପେକ୍ଷା ଉତ୍କଳରେ ସାକ୍ଷରତା ଅଧିକ ବ୍ୟାପକ" (୩୭) । ବାସ୍ତବରେ ଅନୁବାଦ ପ୍ରକ୍ରିୟାରେ ଜଗନ୍ନାଥ ଦାସଙ୍କର ସ୍ୱକୀୟ ଦୃଷ୍ଟିଭଙ୍ଗୀ ଭାଗବତକୁ ଏକ ସ୍ୱତନ୍ତ୍ର ମୌଳିକ ଗ୍ରନ୍ଥର ଗୌରବ ଦାନ କରିଛି ।

**ଭାଗବତ ବୃତ୍ତ :**

"ନମଇଁ ନୃସିଂହ ଚରଣ"—ଭାଗବତର ଏହି ସରଳ ପାଦଲାଳ, ଜନପ୍ରିୟ, ସୁଲଳିତ ପଦଟି ସହିତ ପ୍ରାସାଦବାସୀଙ୍କଠାରୁ ଆରମ୍ଭ କରି କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତ ଓଡ଼ିଆ ପରିଚିତ । ଭାଗବତର ବୈଶିଷ୍ଟ ଓ ବୈଶିଷ୍ଟ୍ୟ ହେଉଛି, ଏହାର ମନୋମୁଗ୍ଧକର 'ବୃତ୍ତ' । ସନ୍ଥକବି ଜଗନ୍ନାଥ ଦାସ ଓଡ଼ିଆ ଛନ୍ଦ କ୍ଷେତ୍ରରେ ଜଣେ ସଫଳ ସଂସ୍କାରକ । ସେ ପୂର୍ବସୂରୀ କବିମାନଙ୍କର ଦାଣ୍ଡିବୃତ୍ତର ଜଟିଳତା ଦୂରକରି ଭାଗବତକୁ ଲୋକପ୍ରିୟ କରି ଗଢ଼ିତୋଳିବା ନିମିତ୍ତ ନୂଆ ସ୍ୱତନ୍ତ୍ର ବୃତ୍ତ ବ୍ୟବହାର କରିଛନ୍ତି, ତାହାର ଦୁଇଟି ଚରଣରେ ଗୋଟିଏ ପାଦ ଓ

(୩୭) Typical Selection of Oriya Literature ର ମୁଖବନ୍ଧ ।

ଯତିପାତ ନଅ ଅକ୍ଷର ବିଶିଷ୍ଟ ହୋଇଥିବାରୁ ତାହା ସାଧାରଣତଃ ନବାକ୍ଷରୀ ବୃତ୍ତ ନାମରେ ପ୍ରସିଦ୍ଧ । ସେ ସଂସ୍କୃତ ଭାଗବତକୁ ନବାକ୍ଷରୀ ବୃତ୍ତରେ ଛନ୍ଦୋବିଦ୍ଧ କାବ୍ୟରୂପ ଅନୁବାଦ କରି ଓଡ଼ିଶାର ପ୍ରଥମ ଛନ୍ଦକବି ରୂପେ ସମ୍ମାନିତ ହୋଇଛନ୍ତି । ଭାଗବତର ଛନ୍ଦକୁ ନବାକ୍ଷରୀ ଛନ୍ଦ ବା ଗୁର୍ଜ୍ଜରୀ କୁହାଯାଏ । ସ୍ୱଳ୍ପୋକ୍ତି ମାଧ୍ୟମରେ କ୍ଲିଷ୍ଟ ଭାବରାଜିର ସରଳ ଏବଂ ନିରାଡ଼ମ୍ବର ପ୍ରକାଶଭଙ୍ଗୀ ଏହାର ବିଶେଷତ୍ୱ (୩୮) ।

ସ୍ୱତସ୍ଫୂର୍ତ୍ତ ଭାବ ପ୍ରକାଶ ଏହାର ବୈଶିଷ୍ଟ୍ୟ । ପ୍ରୋକ୍ତ ଗୁର୍ଜ୍ଜରୀ ରାଗ ସଂସ୍କୃତର ମଣିମଧ୍ୟା ବୃତ୍ତରୁ ଆହୃତ (୩୯) । ଏହି ନବାକ୍ଷରୀ ବୃତ୍ତର ୩ୟ, ୬ଷ୍ଠ ଓ ୯ମ ଅକ୍ଷର ଉପରେ ଯତିପାତ ହୋଇଥାଏ । ଗୁର୍ଜ୍ଜରୀ ବୃତ୍ତର ସୁଦକ୍ଷ କାରିଗର ଜଗନ୍ନାଥ ଦାସ ବିରଚିତ ଭାଗବତ ପାଠକ ବିଶେଷରେ ବିଭିନ୍ନ ଭଙ୍ଗୀରେ ଗୀତ ହୋଇଥାଏ । ଏହାର ଛନ୍ଦମାଧୁର୍ଯ୍ୟର ଅପୂର୍ବ ମୂର୍ଚ୍ଛନା ପାଠକ ପ୍ରାଣରେ ତନ୍ମୟତା ଭରିଦିଏ । ଏହା ଯେପରି ସୁଖପାଠ୍ୟ ସେହିପରି ସୁଶ୍ରାବ୍ୟ ମଧ୍ୟ ।

ଭାଗବତର ଲୋକପ୍ରିୟତାର ଅନ୍ୟତମ ମୁଖ୍ୟ କାରଣ ହେଲା, ଏହାର ଛନ୍ଦ ନିର୍ବାଚନ । ଏହି ଛନ୍ଦର ଲୋକପ୍ରିୟତା ବଢ଼ିଲା ପରେ ଏହା 'ଭାଗବତ ବାଣୀ' ନାମରେ ଅଭିହିତ ହେଲା । ବୃତ୍ତ ଓ ବାଣୀ ଏକାର୍ଥ-ବୋଧକ ନୁହେଁ । କାରଣ 'ବୃତ୍ତ'କୁ ନିର୍ଦ୍ଦିଷ୍ଟ ଭଙ୍ଗୀରେ ଗାଇବାର ଶୈଳୀ ହେଉଛି 'ବାଣୀ' । ଏହି ଭାଗବତ ବୃତ୍ତ ଏକ ବୈପ୍ଳବିକ ବାଣୀ ରୂପେ ପ୍ରାଚୀନ ବୃତ୍ତମାନଙ୍କ ମଧ୍ୟରେ ଆଣିଦେଲା ଯେପରି କ୍ରାନ୍ତିକାରୀ ପରିବର୍ତ୍ତନ, ଠିକ୍ ସେହିପରି ପରବର୍ତ୍ତୀକାଳର କବିମାନଙ୍କୁ ଏହି ଛନ୍ଦରେ ଓଡ଼ିଆ କାବ୍ୟକବିତା ଲେଖିବା ନିମିତ୍ତ ଯୋଗାଇ ଦେଇଛି ଯଥାର୍ଥ ଦିଗ୍‌ଦର୍ଶନ । ତେଣୁ ଓଡ଼ିଆ କାବ୍ୟ ସାହିତ୍ୟ ରଚନା କ୍ଷେତ୍ରରେ ଭାଗବତର ଅବଦାନ ଅପ୍ରତିହତ । ଏହାର ସୁନିର୍ବାଚିତ ଛନ୍ଦ ଯୋଗୁଁ ଭାଗବତ ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କ ମଧ୍ୟରେ ଯେପରି ଆଧୁନିକତମ, ଠିକ୍ ସେହିପରି ଆଧୁନିକ

---

(୩୮) ସୁରେନ୍ଦ୍ର ମହାନ୍ତି—ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, ପୃ—୨[illegible]୩ ।

(୩୯) କୋଣାର୍କ—(ପଞ୍ଚସଖା ବିଶେଷାଙ୍କ); ପୃ—୧୯୬ ।

—ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶନ ।

ଓଡ଼ିଆ ଗ୍ରନ୍ଥମାନଙ୍କ ମଧ୍ୟରେ ପ୍ରାଚୀନତମ ଗ୍ରନ୍ଥ ରୂପେ ସ୍ୱୀକୃତ ହୋଇ-ଅଛି ।

## ଭାଗବତରେ ଜଗନ୍ନାଥ ଦାସଙ୍କ କବିତ୍ୱ

ଓଡ଼ିଆ ସାହିତ୍ୟ ଇତିହାସରେ ପଞ୍ଚସଖାଯୁଗୀୟ କବିମାନଙ୍କ ମଧ୍ୟରେ ସନ୍ଥକବି ଜଗନ୍ନାଥଙ୍କ ସ୍ଥାନ ଅଦ୍ୱିତୀୟ । "ତାଙ୍କ ରଚିତ ଓଡ଼ିଆ ଭାଗବତ ଆଧ୍ୟାତ୍ମିକ ଗ୍ରନ୍ଥ ହେଲେହେଁ କବିତ୍ୱ ଦୃଷ୍ଟିରୁ "ଅନବଦ୍ୟ" । ଜଗନ୍ନାଥ ଦାସ ଅଲୌକିକ ଶକ୍ତିସମ୍ପନ୍ନ ଜଣେ ଆଧ୍ୟାତ୍ମିକ ପୁରୁଷ ଓ ଶାସ୍ତ୍ରଜ୍ଞ ପଣ୍ଡିତ (୫୦) । ପ୍ରତିଭା ଯଦି 'ନବନବ ଉନ୍ମେଷଶାଳିନୀ ପ୍ରଜ୍ଞା' ହୁଏ, ତେବେ । ଜଗନ୍ନାଥ ଦାସ ବାସ୍ତବରେ ଥିଲେ ଓଡ଼ିଶାର ଜଣେ ପ୍ରତିଭାଧର ବରପୁତ୍ର ।" ତାଙ୍କର ଅଲୌକିକ ପ୍ରତିଭା, ଅନୁପମ ସୌନ୍ଦର୍ଯ୍ୟ, ଶାନ୍ତ ସ୍ୱଭାବ, ବଳିଷ୍ଠ ବ୍ୟକ୍ତିତ୍ୱ, ନିରବଚ୍ଛିନ୍ନ ସାଧନା ଓ ଗଭୀର ଈଶ୍ୱର ଭକ୍ତି ଲକ୍ଷ୍ୟ କରି ସେ ସମୟର ଲୋକେ ମନେ କରୁଥିଲେ, ସତେ ଯେପରି ସେ ଜଗନ୍ନାଥ ଧର୍ମ ପ୍ରତିଷ୍ଠା କରିବା ପାଇଁ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ (୫୧) । ତାଙ୍କର ଅସାଧାରଣ ପାଣ୍ଡିତ୍ୟ, ଅଦ୍ଭୁତ ସଂଯମ ଶକ୍ତି ଓ ଶାଶ୍ୱତ କବିତ୍ୱ ଉପଲବ୍‌ଧି କରି ଶ୍ରୀଚୈତନ୍ୟ ତାଙ୍କୁ ୧୫୦୯ ଖ୍ରୀ: ଅ:ରେ ଅତିବଡ଼ି ଉପାଧି ମଣ୍ଡିତ କରିଥିଲେ ।

ପ୍ରତିଭା ପୂଜା ହେଉଛି ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ । ଯେଉଁ ଜାତି ପ୍ରତିଭାପୂଜା କରି ଶିଖିନାହିଁ; ସେ ଜାତିର ବିକାଶ ଅସମ୍ଭବ । ଉତ୍କଳବ୍ୟାସ ଜଗନ୍ନାଥ ଦାସ ଥିଲେ ଆମ ଓଡ଼ିଶାର ଲୋକଶିକ୍ଷକ । ତାଙ୍କର ଶ୍ରେଷ୍ଠ ତଥା ଅନବଦ୍ୟ କୃତି ଭାଗବତ କେବଳ ଏ ଜାତିର ଗଣସାହିତ୍ୟ ନୁହେଁ, ତାହା ଓଡ଼ିଆ ଜନସାଧାରଣଙ୍କର ପ୍ରାମାଣିତ ଧର୍ମଗ୍ରନ୍ଥ ମଧ୍ୟ । ସେଥିପାଇଁ ଭାଗବତ ମହାପୁରାଣର ପ୍ରଣେତା ଜଗନ୍ନାଥ ଦାସ ଉତ୍କଳର ପୁରପଲ୍ଲୀରେ ସୁପରିଚିତ । ଭାଗବତ ରଚନା କରି ଓଡ଼ିଆ ଭାଷା ସାହିତ୍ୟରେ ସେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିବାରୁ ପ୍ରତ୍ୟେକ

---

(୫୦) ସୂର୍ଯ୍ୟନାରାୟଣ ଦାଶ—ଓଡ଼ିଆ ସାହିତ୍ୟର ଇତିହାସ (୧ମ ଭାଗ), ପୃ—୪୭୫

(୫୧) ଡଃ. କାହ୍ନୁଚରଣ ମିଶ୍ର —ମହାପୁରୁଷ ଓ ବାଣୀ, ପୃ-୨୫୬ ।

ଓଡ଼ିଆ ପ୍ରାଣରେ ସେ ଏକ ମର୍ଯ୍ୟାଦାବନ୍ତ ଆସନର ଅଧିକାରୀ ହୋଇ ପାରିଛନ୍ତି ।

ଭାଗବତକାରଙ୍କ କବିତ୍ୱ ଓଡ଼ିଆ ସାହିତ୍ୟରେ ଅନନ୍ୟସାଧାରଣ ଓ ଅନୁପମ । ସବୁଜ ଦୂର୍ବାଦଳ ଉପରେ ପ୍ରଭାତର ଶିଶିରବିନ୍ଦୁ ପରି ଏହାର ଅକୃତ୍ରିମ ସୌନ୍ଦର୍ଯ୍ୟ ଓଡ଼ିଆ ଜାତିର ଅବଚେତନରେ ଭାଗବତର ପଦାବଳୀକୁ ଚିର ଅମ୍ଳାନ ରଖିଅଛି (୫୨) । ସେ ଥିଲେ ଏକାଧାରରେ କବି, ପଣ୍ଡିତ, ସାଧକ, ଯୋଗୀ ଓ ବିଶିଷ୍ଟ ଆତ୍ମାନୁଭବୀ । ଅଲୌକିକ ସାଧନାର ସିଦ୍ଧିପ୍ରାପ୍ତିଜନିତ ଚମତ୍କାରିତାରେ ନୁହେଁ କିମ୍ବା ଅତିବଡ଼ି ଉପାଧି ବିଭୂଷିତ ମହାଜ୍ଞାନୀ ହିସାବରେ ନୁହେଁ, ଭାଗବତରେ ପ୍ରତିଫଳିତ ତାଙ୍କର ନୈସର୍ଗିକ କବିତ୍ୱ ଯୋଗୁଁ ସେ ଓଡ଼ିଆ ଜାତିର ଚିର ନମସ୍ୟ । କବିଙ୍କର ବର୍ଣ୍ଣନାଶୈଳୀ ତଥା କବିତ୍ୱର ଭାବୋଚ୍ଛ୍ୱାସ ଯୋଗୁଁ ତାଙ୍କ ଲେଖାମାରେ ପ୍ରକୃତି, ଈଶ୍ୱର ଓ ମନୁଷ୍ୟ ମିଶି ଏକାକାର ହୋଇ ଯାଇଛନ୍ତି ।

'ମହାଭାରତ' ରଚୟିତା ସାରଳା ଦାସ ଓ 'ଜଗମୋହନ ରାମାୟଣ' କର୍ତ୍ତା ବଳରାମ ଦାସଙ୍କ ପରେ ଓଡ଼ିଶାର ତୃତୀୟ ପୁରାଣ ଲେଖକ ହେଉଛନ୍ତି 'ଭାଗବତ' ପ୍ରଣେତା ଜଗନ୍ନାଥ ଦାସ । ଭାଷା ସାହିତ୍ୟର ଅଭିବ୍ୟକ୍ତି ଦୃଷ୍ଟିରୁ ଭାଗବତକାରଙ୍କ କବିତ୍ୱ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅନନ୍ୟ । କବି ହେଉଛି ମନୀଷୀ ଅର୍ଥାତ୍ ମନର ସ୍ୱାମୀ । ଉତ୍କଳ ସରସ୍ୱତୀଙ୍କ ବରପୁତ୍ର ଜଗନ୍ନାଥ ଦାସକୃତ ଭାଗବତରେ ତାଙ୍କର ବହୁମୁଖୀ ଭାବପ୍ରସାରଣୀ ଭାଷା ପ୍ରୟୋଗ, ଜନସୁଲଭ ଶୈଳୀ, ପଦ ସଙ୍ଗଠନ, ଶବ୍ଦ ବିନ୍ୟାସ, ଅଳଙ୍କାର ସମାବେଶ, ସାବଲୀଳ ପ୍ରକାଶଭଙ୍ଗୀ ତଥା ଚରିତ୍ର ଚିତ୍ରଣ ମୂଳକ ବୈଶିଷ୍ଟ୍ୟ ଇତ୍ୟାଦି ଶାସ୍ତ୍ରୀୟ ନିୟମରେ ଉପସ୍ଥାପିତ । ଉପନିଷଦରେ 'କବି'ଙ୍କୁ କ୍ରାନ୍ତଦର୍ଶୀ ରୂପେ ଅଭିହିତ କରାଯାଇଛି । ପୁନଶ୍ଚ ସେ ଭବିଷ୍ୟଦ୍ରଷ୍ଟା ଓ ସର୍ବଦ୍ରଷ୍ଟା ମଧ୍ୟ । ଜନତାର ମାର୍ଗପ୍ରଦର୍ଶକ, ଆଦର୍ଶବାଦୀ ଶିକ୍ଷକ, ଶାନ୍ତିତତ୍ତ୍ୱର ଉପଦେଷ୍ଟା, ବ୍ୟବହାର ଜ୍ଞାନଦାତା, ମନୋବୈଜ୍ଞାନିକ, ଅନ୍ତର୍ଦ୍ରଷ୍ଟା, ପୂର୍ବଦୃଷ୍ଟିସମ୍ପନ୍ନ ତଥା ସମନ୍ୱୟବାଦୀ କବି ଜଗନ୍ନାଥ ଦାସ ସ୍ୱୀୟ ଦିବ୍ୟଦୃଷ୍ଟି ବଳରେ ଭାଗବତ ରଚନା କରି

(୫୨) ସୁରେନ୍ଦ୍ର ମହାନ୍ତି—ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, ପୃ ୨୬୫ ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ବୈପ୍ଳବାତ୍ମକ ପରିବର୍ତ୍ତନ ଆଣିଥାଇଛନ୍ତି । ଭାଷାଜ୍ଞାନ ଦକ୍ଷତାର ଅନୁବାଦ କରିଥିଲେ ହେଁ ସ୍ୱକୀୟ ପାଣ୍ଡିତ୍ୟ ଯୋଗୁଁ ଭାଗବତ ଏକ ମୌଳିକ ସୃଷ୍ଟି ରୂପେ ପରିଗଣିତ ହୋଇଅଛି ।

ଆଳଙ୍କାରିକମାନଙ୍କ ମତରେ କବି ହେଉଛନ୍ତି ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ପ୍ରତିଭୂ । "ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ ।" ଅସାଧାରଣ ବ୍ୟୁତ୍ପତ୍ତିସମ୍ପନ୍ନ କବି ଜଗନ୍ନାଥ ଦାସଙ୍କର ଅମର ସୃଷ୍ଟି ହେଉଛି ଓଡ଼ିଆ 'ଭାଗବତ' । ସେ ବେଦବେଦାନ୍ତ ତଥା ସକଳ ଶାସ୍ତ୍ରର ନିର୍ଯ୍ୟାସରେ ହିଁ ଭାଗବତକୁ ପରିପୁଷ୍ଟ କରିଛନ୍ତି । 'କବତେ ଇତି କବିଃ— ଲୌକିକ ଅର୍ଥରେ ଯିଏ ତଥ୍ୟ ଦର୍ଶନ, ବସ୍ତୁ ନିରୂପଣ ଓ ତତ୍ତ୍ୱାର୍ଥ ବିବରଣ କରନ୍ତି ସେ କବି । ଭାଗବତରେ ସରଳ ତଥା ବିଶଦ ଭାବରେ ବହୁତ୍ର କଠିନ-ଦାର୍ଶନିକ-ତତ୍ତ୍ୱ ସମୀକ୍ଷାନ୍ତର କବିଙ୍କର ସିଦ୍ଧହସ୍ତତା ପ୍ରମାଣିତ । "ଜଟିଳ ଦର୍ଶନ ଓ ଧର୍ମର ତତ୍ତ୍ୱକୁ ସଂକ୍ଷେପରେ ପଦ୍ୟରେ ପ୍ରକାଶ କରିବାର ନିପୁଣତା ସାଙ୍ଗକୁ ନିର୍ଦ୍ଦୋଷ ଓଡ଼ିଆ ଭାଷା ଉପରେ ତାଙ୍କର ଦଖଲ ଥିଲା । ଏହା ତାଙ୍କର ପାଣ୍ଡିତ୍ୟ ଓ କବିତ୍ୱର ନିଦର୍ଶନ (୬୩) ।"

ଜଗନ୍ନାଥ ଦାସ ସ୍ୱୀୟ ଅନୂଦିତ ଭାଗବତରେ ବର୍ଣ୍ଣନୀୟ ବସ୍ତୁର ପ୍ରାଞ୍ଜଳତା, ସୁବୋଧତା ଓ ରସୋତ୍ପତ୍ତି ନିମିତ୍ତ ଅନ୍ୟ ପୁରାଣ ଶାସ୍ତ୍ରର ସହାୟତା ନେଇଥିଲେ ମଧ୍ୟ ମୂଳଗ୍ରନ୍ଥର ବିଷୟବସ୍ତୁ ଓ ବସ୍ତୁବିନ୍ୟାସର ସଂରକ୍ଷଣ କରିବାରେ ଆନ୍ତରିକ ରୁଚି ପ୍ରଦର୍ଶନ କରିଯାଇଛନ୍ତି । ପ୍ରତି ସ୍କନ୍ଧର ପ୍ରାରମ୍ଭରେ ମଙ୍ଗଳାଚରଣ, ତନ୍ମଧ୍ୟରେ ବସ୍ତୁ ସୂଚନା ଏବଂ ଅଧ୍ୟାୟ ପରିସମାପ୍ତିରେ କବି ଭଣିତାର ପାରମ୍ପରିକତା ରକ୍ଷା କରିବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିରର ଆଦ୍ୟ ଉପାସ୍ୟ ନୃସିଂହଙ୍କୁ ପ୍ରଣତି ଜଣାଇ କବି ପରେ ପରେ ଶ୍ରୀଜଗନ୍ନାଥଙ୍କ ପ୍ରତି ନମସ୍କ୍ରିୟା ଜଣାଇଛନ୍ତି । ସର୍ବୋପରି କବିଙ୍କର ଭକ୍ତି ତନ୍ମୟତାର ସାର୍ଥକ ଅଭିବ୍ୟକ୍ତି ଫଳରେ ଉପସଂହାରଗୁଡ଼ିକ ଲୋକ କଲ୍ୟାଣକାମୀ ହୋଇଅଛି ।

ଭାଗବତରେ କର୍ମ, ଜ୍ଞାନ, ଭକ୍ତି, ଯୋଗ, ଧ୍ୟାନ ତଥା ଶୂନ୍ୟ ପ୍ରଭୃତି ଆଧ୍ୟାତ୍ମିକ ତତ୍ତ୍ୱଗୁଡ଼ିକୁ କାବ୍ୟିକ ମହିମାରେ ରସୋତ୍ତୀର୍ଣ୍ଣ ତଥା

---

(୬୩) ସଚ୍ଚିଦାନନ୍ଦ ମିଶ୍ର —ଅନେକ ଜଗନ୍ନାଥ ଦାସ
ଝଙ୍କାର, ଜୁନ୍ ୮୪ ସଂଖ୍ୟା, ପୃ-୨୪୧ ।

ପ୍ରାଣସ୍ପର୍ଶୀ କରି ଗଢ଼ି ତୋଳିବା ପରେ କବି ଏହାକୁ ସାଧାରଣ ଜନତାକୁ ଉପହାର ଦେଇଛନ୍ତି । ଭାଗବତରେ ସନ୍ନିବିଷ୍ଟ କର୍ମବାଦ, ନିଷ୍କାମ ଧର୍ମବାଦ, ଚୈତନ୍ୟବାଦ ସମ୍ବଳିତ ବ୍ୟାବହାରିକ ତତ୍ତ୍ୱ, ଆଧ୍ୟାତ୍ମିକ ତତ୍ତ୍ୱ, ସାମାଜିକ ତତ୍ତ୍ୱ ତଥା ନାମତତ୍ତ୍ୱ ପ୍ରଭୃତିର ସହଜ ବ୍ୟାଖ୍ୟାରେ କବିଙ୍କର ବହୁ ଶାସ୍ତ୍ରଦର୍ଶିତାର ପରିଚୟ ମିଳିଥାଏ । ବାସ୍ତବରେ ତତ୍ତ୍ୱ ବ୍ୟାଖ୍ୟାନରେ କବିଙ୍କର ସ୍ୱାତନ୍ତ୍ର୍ୟ ଅଦ୍ୟାବଧି ଅନତିକ୍ରମ୍ୟ ରହିଅଛି ।

କାବ୍ୟର କଳାବୈଚିତ୍ର୍ୟ ତଥା ସୁଲଳିତ ଭାଷା ବିଭବରେ ଭାଗବତ ମହାପୁରାଣ ଅମୂଲ୍ୟ ଭ୍ରାନ୍ତ ବିକଶିତ । ଭାଗବତର ରସୋତ୍ତୀର୍ଣ୍ଣ ବର୍ଣ୍ଣନଚାତୁରୀ ଏହାକୁ ମୌଳିକତା ପ୍ରଦାନ କରିଅଛି । କେବଳ କୋମଳ ବର୍ଣ୍ଣାବଳୀ ପ୍ରୟୋଗରେ ଜଗନ୍ନାଥ ଦାସ ସ୍ୱୀୟ କଳ୍ପନାକୁ ସାକାର ରୂପ ପ୍ରଦାନ କରିଥିବାରୁ ଅଶିକ୍ଷିତ ଗ୍ରାମ୍ୟ ଓଡ଼ିଆମାନେ ଭାଗବତ ରସାସ୍ୱାଦନ କରିବାରେ ସମର୍ଥ ହୋଇଛନ୍ତି । ଶୁଦ୍ଧ, ସରଳ, ରସ ଢଳଢଳ, ଭାବ ସୁକୋମଳ, ମନ କର୍ଣ୍ଣତର୍ପଣ, ଯୁକ୍ତ ଭାଗବତର ପଦାବଳୀ ଶିଶୁ କଣ୍ଠରେ ଯେପରି ପେୟ, ସେହିପରି ଏଥିରେ ପୁଞ୍ଜୀଭୂତ ବିଭିନ୍ନ ଉପାଦାନ ସମାଜର ଆମୂର୍ଖ ପଣ୍ଡିତ ସମସ୍ତଙ୍କ ପକ୍ଷେ ଉପାଦେୟ । ଭକ୍ତ କବି ତାଙ୍କର ସାର୍ଥ ଅଭିଜ୍ଞତା, ଅପୂର୍ବ ଦୂରଦର୍ଶିତା ସହିତ ଉଚ୍ଚକୋଟୀର କଳ୍ପନା କୁଶଳତା ତଥା ସୂକ୍ଷ୍ମ କବିତ୍ୱ କଳାରେ ଭାଗବତକୁ ଏକ କମନୀୟ ସୃଷ୍ଟିରେ ପରିଣତ କରି ଉତ୍କଳଭାରତୀଙ୍କୁ ଉତ୍ସର୍ଗ କରିଯାଇଛନ୍ତି ।

ଜଗନ୍ନାଥ ଦାସ ଗୋସ୍ୱାମୀଙ୍କ ବର୍ଣ୍ଣନାପାଟବ ଅବର୍ଣ୍ଣନୀୟ । ସେ ସ୍ୱ ଅନୂଦିତ ଭାଗବତରେ କାବ୍ୟ ଅନୁମୋଦିତ ବିଭିନ୍ନ ପାକର ସମାବେଶରେ ଉକ୍ତ ମହାନ୍ ଗ୍ରନ୍ଥକୁ ରସସିକ୍ତ ତଥା ମନୋଜ୍ଞ କରି ଗଢ଼ି ତୋଳିଛନ୍ତି । ଭାଗବତର ତତ୍ତ୍ୱାର୍ଥ ବାହ୍ୟତଃ ନାରିକେଳ ପାକବତ୍ ଅବୋଧ ହୋଇଥିବା ସ୍ଥଳେ ଏହାର ଆଭ୍ୟନ୍ତରୀଣ ଅର୍ଥ ଦ୍ରାକ୍ଷାପାକ ପରି ଅତ୍ୟନ୍ତ ରସାଳ । ପୁନଶ୍ଚ ଭାଗବତର କେତେକାଂଶ ଗୁଡ଼ପାକ ସଦୃଶ ଅତ୍ୟନ୍ତ ସହଜ ବୋଧ ହୋଇଥିବାସ୍ଥଳେ ଅନ୍ୟ କେତେକାଂଶ ଖର୍ଜୁରପାକ ପରି ବାହ୍ୟତଃ ରସଯୁକ୍ତ ତଥା ଏହାର ମର୍ମାର୍ଥ ନିଗୂଢ଼ ତଥ୍ୟଭିତ୍ତିକ ଅଟେ । ଓଡ଼ିଆ ଭାଗବତ ଭକ୍ତିରସର ଅସରନ୍ତି ନିର୍ଝରଣୀ । ସର୍ବୋପରି ପ୍ରସାଦ ଓ ମାଧୁର୍ଯ୍ୟ ରସରେ ରସାଣିତ ଉକ୍ତ ଭାଗବତରେ ରାଗାନୁଗାଭକ୍ତି

ଅପେକ୍ଷା ଜ୍ଞାନମିଶ୍ରା ଭକ୍ତିର ପ୍ରାଧାନ୍ୟ ସୁସ୍ପଷ୍ଟ । ଭାଗବତରେ ପ୍ରକୃତି ଓ ମନୁଷ୍ୟ ଜୀବନର ଭାବଚ୍ଛ୍ୱାସରେ ଏକୀଭୂତ ହୋଇ ଭକ୍ତିକୁ ଏକ ଅପୂର୍ବ କାବ୍ୟମୟ କୋମଳତା ପ୍ରଦାନ କରିଥାଇଛନ୍ତି (୮୮) । ଏଥିରେ କବିଙ୍କର ଭକ୍ତିମନ୍ତ୍ର ସହଜରେ ଉପଲବ୍ଧ ହୋଇଥାଏ ।

ଏହି ପରିପ୍ରେକ୍ଷୀରେ କବିଙ୍କ ସମ୍ପର୍କରେ ଯେତେ ଅଧିକ ପରିମାଣରେ ଆଲୋଚନା କଲେ ମଧ୍ୟ ତାହା ଯଥେଷ୍ଟ ହେବ ନାହିଁ । ଓଡ଼ିଆ ଭାଗବତରେ ଜଗନ୍ନାଥ ଦାସଙ୍କ କବିତ୍ୱ ଶକ୍ତି "ନଶୀଥର ତାରାଖଚିତ ଆକାଶପରି ରହସ୍ୟମୟ, ଶିଶିରସ୍ନାତ ପ୍ରଭାତସମ ସ୍ନିଗ୍ଧ ଓ ନବୀନ ଗୋଧୂଳିର ସ୍ତିମିତ ଆଲୋକବତ୍ ଭାବୋଦ୍ଦୀପ୍ତ (୮୯) । ଭାବ ଆଉ ଭାଷାର ତୁଳୀରେ ଭାଗବତ ରଚନାକାର ଜଗନ୍ନାଥ ଦାସ ଗୋସ୍ୱାମୀ, ଯେଉଁ ବର୍ଣ୍ଣିଳ ଇନ୍ଦ୍ରଧନୁ ସୃଷ୍ଟି କରିଛନ୍ତି; ତାହା ଉତ୍କଳ ସାରସ୍ୱତାକାଶର ଶୋଭାବର୍ଦ୍ଧନ କରିବା ସହିତ କବିଙ୍କର କବିତ୍ୱ ସମ୍ପର୍କରେ ସମ୍ୟକ୍ ସୂଚନା ପ୍ରଦାନ କରେ ।

**ଭାଗବତର ସାହିତ୍ୟିକ ମୂଲ୍ୟ :**

ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଶାସ୍ତ୍ରୀଙ୍କ ମତରେ "ଯାହା ମାନବ ଦେହରେ ନବଶକ୍ତି ସଞ୍ଚାର କରେ, ସଂସ୍କୃତିକୁ ବଳ ଦିଏ ଏବଂ ସାମାନ୍ୟକୁ ମହାନ କରି ଗଢ଼ିତୋଳେ; ତାହାହିଁ ସାହିତ୍ୟ ।" ବାସ୍ତବରେ ଭାଗବତ ଓଡ଼ିଆ ସମାଜକୁ ଆଧ୍ୟାତ୍ମିକ ଶକ୍ତିରେ ଶକ୍ତିମାନ କରି ଓଡ଼ିଆ ସଂସ୍କୃତିକୁ ପରିପୁଷ୍ଟ କରିବା ସହିତ ସାଧାରଣ ମାନବକୁ ଅସାଧାରଣ ବ୍ୟକ୍ତିରେ ରୂପାନ୍ତରିତ କରିବା ନିମିତ୍ତ ଆବଶ୍ୟକ ଉପାଦାନ ଯୋଗାଇଥାଏ । ପ୍ରମାଣ ଶିକ୍ଷାବିତ୍ ଦେବନସୋଗ୍‌ଙ୍କ ମନ୍ତବ୍ୟାନୁସାରେ ସାହିତ୍ୟରେ ଯୁଗସୃଷ୍ଟି ନିମିତ୍ତ ପ୍ରଭାବଶାଳୀ ଲେଖକମାନଙ୍କର ଯୁଗାନ୍ତକାରୀ ରଚନା ଆବଶ୍ୟକ ।

ଏହି ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ ଇତିହାସରେ ଭକ୍ତିଯୁଗର ସ୍ରଷ୍ଟା ସନ୍ଥକବି ଜଗନ୍ନାଥ ଦାସଙ୍କର ଯୁଗଜୟୀ ରଚନା 'ଭାଗବତ' ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ମାଇଲ ସ୍ତମ୍ଭ ଅଟେ । ଭାଗବତ ଆବେଦନ

---

(୮୮) ସୁରେନ୍ଦ୍ର ମହାନ୍ତି—ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, ପୃ-୨୮୨ ।
(୮୯) ମୃତ୍ୟୁଞ୍ଜୟ ନାୟକ—ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ, ପୃ-୧୦୭ ।

ପୁରାତନ ହେଲେ ମଧ୍ୟ ସାହିତ୍ୟିକ ଉତ୍କର୍ଷ ଯୋଗୁଁ ଏହା ନିତ୍ୟ ନୂତନ ରୂପେ ପ୍ରତିଭାତ । ପୌରାଣିକ ଭାବଧାରାର ସର୍ବବିଧ ନିର୍ଯ୍ୟାସରୁ ସୃଷ୍ଟ ଭାଗବତ 'ପାଠ'ର ପ୍ରାଚୀନ ତଥା ଅର୍ବାଚୀନ ସବୁ ଗ୍ରନ୍ଥପାଠର ମୂଲ୍ୟ ଉପଲବ୍ଧ ହୋଇଥାଏ । ସାହିତ୍ୟ ଓ ସଂସ୍କୃତି ମଧ୍ୟରେ ନାଡ଼ିସୂତ୍ରର ସମ୍ପର୍କ ବିଦ୍ୟମାନ । କାରଣ ସାହିତ୍ୟ ହେଉଛି ସାଂସ୍କୃତିକ ଜୀବନର ପରିମାପକ । ଭାଗବତରେ ମଧ୍ୟ ଓଡ଼ିଆ ସଂସ୍କୃତିର ସାମଗ୍ରିକ ପ୍ରତିଫଳନ ସଂଘଟିତ ହୋଇଅଛି । ଉତ୍କଳର ଭାଷା, ଜନଜୀବନ ଓ ସାମାଜିକ ରୀତି ନିୟମ ଇତ୍ୟାଦି ସନ୍ଥକବିଙ୍କ ଉତ୍କଳାନୁବାଦରେ ସୁସ୍ପଷ୍ଟ । ଭାଗବତ ସ୍ମରଣ ତଥା ଶ୍ରବଣ ମାତ୍ରେ ଓଡ଼ିଆ ଜାତିର ଭାଷା, ସାହିତ୍ୟ, ଧର୍ମ, ଦର୍ଶନ ଓ ସଂସ୍କୃତି ସତତ ପଲ୍ଲବିତ ତଥା ପୁଷ୍ପିତ ହୋଇଉଠେ । ଆଧ୍ୟାତ୍ମିକ ଭାବନା, ସାଂସ୍କୃତିକ ଚେତନା, ଦାର୍ଶନିକତା, ଭାଷା, ସାହିତ୍ୟ ଓ ଛନ୍ଦ ଦୃଷ୍ଟିରୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଏକ ଚିରନ୍ତନ ସାହିତ୍ୟ ରୂପେ ଭାଗବତର ବୈଶିଷ୍ଟ୍ୟ ଅଦ୍ୟାବଧି ଅନତିକ୍ରମ୍ୟ ହୋଇ ରହିଅଛି ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ରଚନାବଳୀର ସଂଖ୍ୟା ଅପରିମିତ । ଏପରି ସାହିତ୍ୟ ସୃଷ୍ଟିର ପୃଷ୍ଠଭୂମିରେ ପ୍ରଧାନତଃ ଦୁଇଗୋଟି ମୁଖ୍ୟ ଉଦ୍ଦେଶ୍ୟ ବିଦ୍ୟମାନ । ଯଥା—ଆଧ୍ୟାତ୍ମିକ ତଥା ନୈତିକ ମାର୍ଗରେ ଜନଜୀବନକୁ ଅନୁପ୍ରାଣିତ କରିବା ସହିତ ଗୁଣଗ୍ରାହୀମାନଙ୍କୁ କାବ୍ୟାମୋଦ ପ୍ରଦାନପୂର୍ବକ ଚିତ୍ତବିନୋଦନ କରିବା । ଏହି ପରିପ୍ରେକ୍ଷୀରେ ବିଚାରକଲେ ଜଣାଯାଏ ଯେ, ଭାଗବତ ପାଠଦ୍ୱାରା ପାଠକ ତଥା ଶ୍ରୋତା ଉଭୟେ ଶାସ୍ତ୍ର ଜ୍ଞାନ ଲାଭ କରିବା ସହିତ କାବ୍ୟାମୋଦ ମଧ୍ୟ ଲାଭ କରିଥାନ୍ତି ।

ସାହିତ୍ୟ ନୀତିଶାସ୍ତ୍ର ନୁହେଁ ମାତ୍ର ତାହା ନୀତି ନିୟନ୍ତ୍ରଣ କରିଥାଏ । ଏହି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ ଭାଗବତ ଏପରି ଏକ ସୃଷ୍ଟି ଯାହାକି ମାନବଜୀବନକୁ ସୁନିୟନ୍ତ୍ରିତ କରି ଗଢ଼ି ତୋଳିବାରେ ସହାୟକ ହୋଇଥାଏ । ପୁନଶ୍ଚ ସାହିତ୍ୟ ଜୀବନ ନୁହେଁ ମାତ୍ର ଜୀବନର ବେଦ । ଓଡ଼ିଆର ଜୀବନବେଦ ଉକ୍ତ ଭାଗବତ ଯଥାର୍ଥରେ ଏକ ମହାର୍ଘ ସାହିତ୍ୟ । Mathew Arnoldଙ୍କ ମତରେ "Literature is the criticism of life" । ଜଗନ୍ନାଥ ଦାସ ବିରଚିତ ଭାଗବତରେ ପ୍ରୋକ୍ତ ସାହିତ୍ୟର

ବହୁତ ନିହିତ ଅଛି । ତେଣୁ ପରମଶାସ୍ତ୍ର ଭାଗବତ ଗଣସାହିତ୍ୟର ଯଥାର୍ଥ ପ୍ରତିନିଧି । ପରବର୍ତ୍ତୀ ଯୁଗର ସୃଷ୍ଟି ଉପରେ ଭାଗବତର ପ୍ରଭାବକୁ ଆଦୌ ଅସ୍ୱୀକାର କରାହେବ ନାହିଁ ।

ଓଡ଼ିଆ ଭାଗବତର ଲୋକପ୍ରିୟତା ଉତ୍ତର ପୁରୁଷର ବହୁ କବିଙ୍କୁ ଏହି ଶୈଳୀରେ କାବ୍ୟକବିତା ସଂରଚନା ନିମିତ୍ତ ପ୍ରୋତ୍ସାହିତ କରିଥିଲା । ଧନବନ୍ଧୁ ଖାଡ଼ଙ୍ଗା ସଦୃଶ ଅନେକେ ମଧ୍ୟ ନିଜ ଭାଗବତ ଲେଖି ସଫଳ ହୋଇଛନ୍ତି । ସର୍ବୋପରି ଭାଗବତର ଲୋକପ୍ରିୟତାରେ ପ୍ରଲୁବ୍ଧ ହୋଇ ବଙ୍ଗ ଭାଷାରେ ଭାଗବତ ଅନୂଦିତ ହେବା ଫଳରେ ଏହା ବଙ୍ଗବାସୀଙ୍କୁ ସ୍ୱତନ୍ତ୍ର ଆନନ୍ଦ ପ୍ରଦାନ କରୁଅଛି । Classical Literature ର ସମସ୍ତ ବିଭାବ ଜଗନ୍ନାଥ ଦାସଙ୍କ ଭାଗବତରେ ସୁରକ୍ଷିତ । ସୁବୋଧ୍ୟ ସରଳଭାଷା, ସାବଲୀଳଛନ୍ଦମାଧୁରୀ, କମନୀୟ ଶବ୍ଦ ସଂଯୋଜନା, ମଞ୍ଜୁଳ ଉପମା ତଥା ସୁଭାଷିତାବଳୀ ମାଧ୍ୟମରେ ଜଗନ୍ନାଥ ଦାସ ସଂସ୍କୃତ ଭାଗବତକୁ ଓଡ଼ିଆ ଭାଷାରେ ନବନ୍ୟାସ କରିଛନ୍ତି । ସର୍ବୋପରି ଭାଗବତର ମନୋମୁଗ୍ଧକର କାହାଣୀ ବୃତ୍ତି ଓଡ଼ିଆ ସାହିତ୍ୟରେ ବିଶେଷତ୍ୱ । କେବଳ ସେତିକି ନୁହେଁ ଭାଗବତରେ ଅନାବଶ୍ୟକ ଅଳଙ୍କାରର ଝଙ୍କାର ନାହିଁ ସତ୍ୟ, ମାତ୍ର କାବ୍ୟର ସ୍ୱାଭାବିକ ସୌନ୍ଦର୍ଯ୍ୟ ଏଥିରେ ସର୍ବତ୍ର ବିଦ୍ୟମାନ । ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ଭାଗବତ ହେଉଛି, ଓଡ଼ିଆ ଜାତିର ଏକ ମହାନ ତଥା ମୂଲ୍ୟବାନ୍ ସାରସ୍ୱତ ସମ୍ପଦ ।

## ଭାଗବତ ଓଡ଼ିଶାର ଜାତୀୟତାର ପ୍ରତୀକ

ସମସ୍ତ ବାତୁଳର ପାର୍ଶ୍ୱ ଚଳନରେ ଓଡ଼ିଆ ଜାତିର ଇତିହାସ ହୁଏତ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇପାରେ, କିନ୍ତୁ ପ୍ରାଚୀନ ସଂସ୍କୃତି ସହ ନିବିଡ଼ ପରିଚୟ ଲାଭ ନକଲେ ନିଶ୍ଚିତ ରୂପେ ଓଡ଼ିଆ ଜାତିର ଆତ୍ମାକୁ ଆମେ ଚିହ୍ନିପାରିବା ନାହିଁ । ଶ୍ରୀଜଗନ୍ନାଥ ଯେପରି ଓଡ଼ିଶାର ଜାତୀୟ ଦେବତା, ଜଗନ୍ନାଥ ଦାସଙ୍କର ଭାଗବତ ସେହିପରି ଓଡ଼ିଶାର ଜାତୀୟ ମହାକାବ୍ୟ । ଜଗନ୍ନାଥ ଓ ଭାଗବତ ହେଉଛନ୍ତି ଓଡ଼ିଆର ଜାତୀୟ ସମ୍ପଦ । ଭାଗବତ [illegible] ଅତିବଡ଼ି ଜଗନ୍ନାଥ ଗୋସ୍ୱାମୀ ଓଡ଼ିଶାର ଜାତୀୟ ମହାକବି । ଜାତୀୟତାଭାବ ତାଙ୍କ ଭାଗବତର ଛନ୍ଦେ ଛନ୍ଦେ ପ୍ରକଟିତ ।

ଏହା ଆଧ୍ୟାତ୍ମିକତା ସହିତ ଲୋକମାନଙ୍କ ମନରେ ଜାତୀୟ ଏକତା ଓ ସହଯୋଗ ମନୋଭାବ ଉଦ୍ରେକ କରିଥାଏ ।

ଓଡ଼ିଆ ଜାତିର ଧାର୍ମିକ, ନୈତିକ ଓ ଜାତୀୟତାର ପ୍ରାଣ ଦ୍ରଷ୍ଟା ଜଗନ୍ନାଥ ଦାସ ସ୍ୱରଚିତ ଭାଗବତ ମାଧ୍ୟମରେ ବ୍ୟକ୍ତିଗତ ଜୀବନରେ ମାତ୍ର, ସମାଜ ଜୀବନରେ ସଂହତି ଓ ଜାତୀୟ ଜୀବନର ପ୍ରୀତି ସଂଚାର କରିବା ନିମିତ୍ତ ବାସ୍ତବ ଦିଗ୍‌ଦର୍ଶନ ଦେଇଛନ୍ତି । ଯଥାର୍ଥରେ ଭାଗବତ ଓଡ଼ିଆର ପ୍ରାଣଧାରାକୁ ସ୍ପର୍ଶକରିଛି, ମାତୃଭାଷା ପ୍ରତି ଶ୍ରଦ୍ଧାନ୍ୱିତ କରାଇଛି ଓ ଛିନ୍ନବିଚ୍ଛିନ୍ନ ଜାତି ମଧ୍ୟରେ ଐକ୍ୟବୋଧ ମଧ୍ୟ ପ୍ରତିଷ୍ଠା କରିପାରିଛି । ଭାଗବତ ସଦୃଶ ଅନ୍ୟ କୌଣସି ଓଡ଼ିଆ ଗ୍ରନ୍ଥ ଏପରି ଉନ୍ନତ କୋଟୀକୁ ଉନ୍ନୀତ ହୋଇପାରି ନାହିଁ । ଭାଗବତରେ ଅବେଦ ପ୍ରାଣତା, ସାମ୍ୟମୈତ୍ରୀର ଗାନ ଓ ଜାତୀୟତାର ମନ୍ତ୍ର ପ୍ରମୂର୍ତ୍ତ ହୋଇଅଛି । ଓଡ଼ିଆ ଜାତିର ସାମଗ୍ରିକ ବିକାଶ ପରିପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଭାଗବତର ସ୍ଥାନ ଅଦ୍ୟାବଧି ଅସନ୍ନ ହୋଇରହିଛି ।

ଭାଗବତ ବସ୍ତୁତଃ ଓଡ଼ିଆ ଜାତୀୟତାର ପ୍ରତୀକ । ଓଡ଼ିଶାରେ ଏପରି କୌଣସି ଗ୍ରାମ ନାହିଁ, ଯେଉଁଠି ଅତୀତରେ ଭାଗବତ ଟୁଙ୍ଗୀ ଗଢ଼ି ଉଠିନଥିଲା କିମ୍ବା ଏପରି କୌଣସି ଘର ନାହିଁ, ଯେଉଁଠି ପ୍ରତ୍ୟହ ଭାଗବତ ପଠିତ ହେଉନଥିଲା । କେବଳ ଓଡ଼ିଶା ନାହିଁ, ଓଡ଼ିଶା ବାହାରେ ମଧ୍ୟ ଯେଉଁଠାରେ ଓଡ଼ିଆ ଅବସ୍ଥାନ କରୁଥିଲେ ସେଠାରେ ଭାଗବତ ଗାଦି ସ୍ଥାପନ କରି ନିତ୍ୟ ଭାଗବତ ଅଧିତ ହେଉଥିଲା । ପ୍ରାଚୀନ ଉତ୍କଳର ଅସ୍ତିତ୍ୱ-ସଙ୍କୁଚିତ ହୋଇ ସାମ୍ପ୍ରତିକ ଓଡ଼ିଶା, ଛିନ୍ନମସ୍ତା ଓ ଛିନ୍ନ କଳେବର ଏକ ରାଜ୍ୟରେ ପରିଣତ ହୋଇଥିଲେ ହେଁ ଓଡ଼ିଆ ଭାଗବତର ପ୍ରଭାବ ପଶ୍ଚିମବଙ୍ଗର ମେଦିନୀପୁର ଅଞ୍ଚଳର କାନ୍ଥି, ମଧ୍ୟପ୍ରଦେଶର ବସ୍ତର, ଆନ୍ଧ୍ରପ୍ରଦେଶର ପାର୍ବତୀପୁରମ୍, ବିଶାଖାପଟ୍ଟନମ୍ ଓ ଶ୍ରୀକାକୁଳମ୍ ପ୍ରଭୃତି ସ୍ଥାନରେ ଦେଖିବାକୁ ମିଳିଥାଏ । କେବଳ ସେତିକି ନୁହେଁ, ଗୋପବନ୍ଧୁଙ୍କ ଭାଷାରେ—ଗଞ୍ଜାମ ଜିଲ୍ଲାର ଅରଣ୍ୟ ମଧ୍ୟରେ, ବଙ୍ଗପ୍ରଦେଶର ଲୁଣ ସମୁଦ୍ର କୂଳରେ, ମାନ୍ଦ୍ରାଜର ଗୋଦାବରୀ ଅଞ୍ଚଳରେ, ମଧ୍ୟପ୍ରଦେଶର ଗିରିପ୍ରାନ୍ତରେ ଓଡ଼ିଶାର ସାଗର ସୈକତରେ ଜଗନ୍ନାଥ ଦାସଙ୍କର ପବିତ୍ର ଭାଗବତର

ମଧୁର ପଦାବଳୀ ଅଦ୍ୟାବଧି ସକଳଙ୍କ ଓଡ଼ିଆ ଜାତିର ହୃତ୍‌ପିଣ୍ଡକୁ ଅନୁରକ୍ତ ଓ ଜାଗ୍ରତ କରାଉଛି (୬୭) ।

ଭାଗବତର ଆତ୍ମପ୍ରକାଶ କାଳରୁ ତାର ଅନୁତ୍ତମ ତଥା ସୁ-ବୋଧମୟ ପଦାବଳୀକୁ ଓଡ଼ିଆ ଜାତି ତାର ଅବଚେତନ ମାନସରେ ସ୍ଥାନ ଦେଇ ଆସିଛି । ନାରୀ-ପୁରୁଷ, ଶିକ୍ଷିତ-ଅଶିକ୍ଷିତ, ଅଜ୍ଞ-ବିଜ୍ଞ, ବ୍ରାହ୍ମଣ-ଶୂଦ୍ର, ନିର୍ବିଶେଷରେ ଓଡ଼ିଆ ଭାଗବତ ସମସ୍ତଙ୍କ ଧର୍ମଶାସ୍ତ୍ର ରୂପେ ପାଞ୍ଚଶତାବ୍ଦୀ ବ୍ୟାପୀ ଆମର ଜାତୀୟ ଜୀବନକୁ ନିୟନ୍ତ୍ରିତ କରିଆସିଛି । ଭାଗବତ ଆମ ହୃଦୟରେ ଏପରି ଏକ ସାର୍ବଜନୀନ ଜାତୀୟ ଭାବସତ୍ତା ସୃଷ୍ଟି କରିପାରିଛି, ଯାହା ଫଳରେ ଓଡ଼ିଆ ସମାଜ ଏକ ମତବାଦ'ର ଭିତରେ ନିଜକୁ ପରିଚାଳିତ କରିଆସିଛି । ଅନେକ ବର୍ଷ ଅତିକ୍ରାନ୍ତ ହୋଇଯାଇଥିଲେ ମଧ୍ୟ ଭାଗବତ ଶିକ୍ଷା ଓ ଭାଗବତ ଭାବନା ପ୍ରତ୍ୟେକ ଓଡ଼ିଆମାନସକୁ ଆଚ୍ଛନ୍ନ କରି ରଖିବା ସହିତ ଶୃଙ୍ଖଳିତ ମଧ୍ୟ କରିଆସିଛି ।

ଭାଗବତ ଅବଲମ୍ବନରେ ଓଡ଼ିଆ ଜାତି ଓ ଓଡ଼ିଆଭାଷା ପ୍ରାଣ-ପ୍ରାଚୁର୍ଯ୍ୟରେ ପରିପୁଷ୍ଟ ହୋଇପାରିଛି । ଜଗନ୍ନାଥ ଦାସ ଭାଗବତ ରଚନା କରି କେବଳ ଯେ ଏ ଜାତିର ପ୍ରାଣରେ ନବଜୀବନ ସଞ୍ଚାର କରିଛନ୍ତି ତାହାନୁହେଁ, ତତ୍ ସହିତ ତଦାମନ୍ତନ ଓଡ଼ିଆ ସମାଜର ଜାତୀୟ ଚରିତ୍ର ଗଠନ ନିମିତ୍ତ ଏକ ନିର୍ଭରଯୋଗ୍ୟ ପରିବେଶ ସୃଷ୍ଟି କରିଛନ୍ତି । ଓଡ଼ିଆ ଜାତିର ସ୍ୱରୂପକୁ ଉଦ୍‌ଘାଟନ କରିବା ସହିତ ଓଡ଼ିଆ ଜନଜୀବନକୁ ସରସ ସୁନ୍ଦର କରି ଗଢ଼ିତୋଳିବା ନିମିତ୍ତ ଓଡ଼ିଆ ଭାଗବତ ପ୍ରଭୂତ ଉପାଦାନ ଯୋଗାଇଛି । ଏକଦା ଘୋର ଦୁର୍ଦ୍ଦିନରେ କେବଳ ଭାଗବତ ହିଁ ଏ ଜାତିର ଜାତୀୟତାକୁ ଉଜ୍ଜୀବିତ ରଖି ପାରିଥିଲା ।

ଦୀର୍ଘ ୩୦୦ ବର୍ଷର ପରାଧୀନତାର ଅନ୍ଧକାର ମଧ୍ୟରେ ଓଡ଼ିଶାର ପ୍ରତିପଲ୍ଲୀରେ ଅବସ୍ଥାପିତ ଭାଗବତ ଟୁଙ୍ଗୀରେ ସ୍ତିମିତ ଦୀପାଲୋକରେ ପଠିତ ଭାଗବତ ପୋଥିଦ୍ୱାରା ହିଁ ଓଡ଼ିଆର ଜାତୀୟ ଚରିତ୍ର ସୁରକ୍ଷିତ ହୋଇ ରହିଥିଲା । ଭାଗବତ ଯଥାର୍ଥରେ ଓଡ଼ିଆ ଜାତୀୟତାର ପ୍ରାଣକେନ୍ଦ୍ର । ଧର୍ମ ମାଧ୍ୟମରେ ଐକ୍ୟ ପ୍ରତିଷ୍ଠା କରିବା ପାଇଁ କବିଙ୍କର ଏକାନ୍ତ କାମନା ଥିଲା ।

---

(୬୭) ଉତ୍କଳ—୪ର୍ଥ ବର୍ଷ ୪ର୍ଥ ସଂଖ୍ୟା, ପୃ. ୧୨ ।

ଚୈତନ୍ୟ ଯେ ଭାଗବତ ଧର୍ମକୁ ଜଗନ୍ନାଥ ଧର୍ମ ଭାବରେ ପ୍ରତିପାଦନ କରି ଓଡ଼ିଆ ଜାତିକୁ ଓ ତା'ର ଜାତୀୟ ଜୀବନକୁ ଯେପରି ପ୍ରେରଣା ପ୍ରଦାନ କରିଥିଲେ, ତାହା ଏ ଜାତି ମାନସରୁ ଆଉରି ଲିଭି ନପାରେ ନାହିଁ। ଏହା'ର ଅନ୍ତରାଳରେ ରହିଛି, ଭାଗବତର 'ଚୈତନ୍ୟ ତଥା ହୃଦୟ ପାଇଁ ଯୁଗଯୁଗର ଆବେଦନ। ପାଶ୍ଚାତ୍ୟ ଶିକ୍ଷା ଓ ପାଦ୍ରି ପ୍ରଚାରିତ ଧର୍ମ ଏ ଦେଶରେ ମାନସିକ ହୋଇ ଯେତେବେଳେ ଭାରତର ସମନ୍ୱୟବୋଧକୁ ଧ୍ୱଂସ କରି ଦେଉଥିଲା, ଠିକ୍ ସେହି ସନ୍ଧିକ୍ଷଣରେ ଓଡ଼ିଆ ଭାଗବତ ପ୍ରଭାବକୁ ପ୍ରତିହତ କରି ଓଡ଼ିଶାରେ ଏକ ବଳିଷ୍ଠ ଭାଷାର ସୁଦୃଢ଼ ଭିତ୍ତି ସ୍ଥାପନ କରିବା ସହିତ ଓଡ଼ିଶାର ଧର୍ମ ସଂସ୍କୃତିରେ ଏକ ଉଜ୍ଜ୍ୱଳ ଆଲୋକସ୍ତମ୍ଭ ରୂପେ ଭାଗବତ ଯଥାର୍ଥ ପଦକ୍ଷେପ ନେଇଥିଲା।

ଭାଗବତରେ ଐକ୍ୟ ବିଧାୟକ ଶକ୍ତି ହିଁ ନିହିତ। ଗାଁ ଗାଁ ମଧ୍ୟରେ ପାରସ୍ପର୍ଯ୍ୟ ସଂହତି ପ୍ରତିଷ୍ଠା ନିମିତ୍ତ ଭାଗବତ ଠାକୁରଙ୍କୁ ବିମାନରେ ବସେଇ କରାଇ ଗାଁର ଉପାନ୍ତରରେ ଏକ ପଡ଼ିଆ କିମ୍ବା ତୋଟାରେ ସମ୍ମିଳିତ କରାଇ ଏକ ମହୋତ୍ସବ ପାଳନ କରାଯାଇଥାଏ। ଉକ୍ତ ସାଂସ୍କୃତିକ ଉତ୍ସବକୁ ଭାଗବତ ମେଳଣ (ମିଳନ) କୁହାଯାଏ। ଏହା ସାଧାରଣତଃ ଦୋଳପୂର୍ଣ୍ଣିମାର ପରବର୍ତ୍ତୀ ଦିବସମାନଙ୍କରେ ଅନୁଷ୍ଠିତ ହୋଇଥାଏ। ତେଣୁ ଭାଗବତ ସମସ୍ତ ବାଦବିସମ୍ବାଦର ନିବାରକ ତଥା ଓଡ଼ିଆର ସ୍ଥିତି ସଂହତିର ଅପ୍ରତିହତ ପ୍ରଣେତା। ଉପର୍ଯ୍ୟୁକ୍ତ ପର୍ଯ୍ୟାଲୋଚନାରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ଓଡ଼ିଆ ଭାଷାର ସୁରକ୍ଷା ତଥା ଓଡ଼ିଆ ଜାତୀୟତା ପ୍ରତିଷ୍ଠା ନିମିତ୍ତ ସମଗ୍ର ଓଡ଼ିଆବାସୀ ଜାତୀୟ ମହାକବି ଜଗନ୍ନାଥ ଦାସଙ୍କ ନିକଟରେ ଋଣୀ।

## ଭାଗବତ : ଓଡ଼ିଶାର ସାକ୍ଷରତା ମିଶନ

ସମାଜରେ ଅଶିକ୍ଷା ଅନ୍ଧକାର ଦୂରକରି ଶିକ୍ଷା ବିସ୍ତାର କରିବାରେ ଏକଦା ଭାଗବତ ଏକାନ୍ତ ସହାୟକ ହୋଇଥିଲା। ନିରକ୍ଷର ଓଡ଼ିଶାବାସୀଙ୍କୁ ସାକ୍ଷର କରିବା ନିମିତ୍ତ ଭାଗବତର ଭୂମିକା ଅନସ୍ୱୀକାର୍ଯ୍ୟ। ଅତୀତରେ ଗ୍ରାମୀଣ ନିରକ୍ଷର ଓଡ଼ିଆ, ଭାଗବତ ଗ୍ରନ୍ଥ ପାଠ କରିବା ଉଦ୍ଦେଶ୍ୟରେ ହିଁ ସାକ୍ଷର ହେଉଥିଲେ।

ଏହି ପ୍ରସଙ୍ଗରେ ଗ୍ରାମ୍ୟ ପ୍ରଚଳିତ ଏକ ପ୍ରବାଦ ପ୍ରଣିଧାନଯୋଗ୍ୟ ; ଯଥା—"ଘରେ ଭାଗବତ ଗାଦି ଅଛୁ । ପୁଅ ମୂର୍ଖ ହେବ ? ପୁଅ ପାଠ ପଢ଼ିଲେ ନାତି ହଞ୍ଜିରେ ବଇଠା ହୋଇ ଭାଗବତ ଅଧ୍ୟାୟେ ଗାଇବ ।" କେବଳ ସେତିକି ନୁହେଁ, ଓଡ଼ିଆ ପିଲାମାନେ ଅକ୍ଷର ଚିହ୍ନି ଭାଗବତ ପଢ଼ିବାରେ ସମର୍ଥ ହେଲେ, ଅନ୍ତିମ ଶଯ୍ୟାରେ ମୁମୂର୍ଷୁ ପିତାମାତାଙ୍କୁ ଅଧ୍ୟାୟେ ଭାଗବତ ପଢ଼ି ଶୁଣାଇବେ; ଏତାଦୃଶ ଏକ ଆବେଗମୟ ଭାବନା, ତତ୍କାଳରେ ମୁମୂର୍ଷୁ ଓଡ଼ିଆର ଅନ୍ତଃସ୍ଥଳକୁ ଦ୍ରବୀଭୂତ କରି ରଖିଥିଲା । ତେଣୁ ଭାଗବତ ପାଠ ଓଡ଼ିଶାର ପ୍ରାଥମିକ ଶିକ୍ଷାର ଏକ ଅପରିହାର୍ଯ୍ୟ ଅଙ୍ଗ ରୂପେ ଗୃହୀତ ହେବା ହେତୁ ତତ୍କାଳରେ ଏହା ଓଡ଼ିଶାର ଗ୍ରାମ୍ୟ ଚଟଶାଳୀରେ ପ୍ରାଥମିକ ସ୍ତରରେ ଏକ ପ୍ରଧାନ ପାଠ୍ୟଗ୍ରନ୍ଥ ରୂପେ ପରିଗଣିତ ହୋଇଥିଲା । ଏପରିକି ହରିଜନ ପିଲାମାନେ ଭାଗବତ ଟୁଙ୍ଗୀର ବାହାର ବାରଣ୍ଡାରେ ବସି ଶିକ୍ଷାଲାଭ କରିବା ସହିତ ଭାଗବତ ପଠନରେ ଅଭ୍ୟସ୍ତ ହେଉଥିଲେ । ତେଣୁ ଲୋକମୁଖରେ ପ୍ରଚଳିତ ଥିଲା—"ପାଠ ପଢ଼ିଥିଲେ ଗୀତ ବୋଲୁଥାନ୍ତି ବାଉରି ଘରର ପୁଅ ।" (୪୭) ଅତଏବ ଭାଗବତ ଶିକ୍ଷାକୁ ସାର୍ବଜନୀନକରଣ ନିମିତ୍ତ ଏକ ପ୍ରଧାନ ମାଧ୍ୟମ ଥିଲା ।

ଚଟଶାଳୀରେ ଚଟମାନେ ବର୍ଣ୍ଣପରିଚୟ ପରେ ସଂଖ୍ୟାଲିଖନ, ଗଣିକିଆ, କଡ଼ାକଣ୍ଡା, ପାହ୍ୟାପଣିକିଆ, ଗୁଣ୍ଠିକିଆ, ଶୋଧ, ଓଜାଙ୍କ, ଫେଡ଼ାଣ ଇତ୍ୟାଦିରେ ଅଭ୍ୟସ୍ତ ହୋଇସିବା ପରେ ଯେଉଁଦିନ ଭାଗବତ ପୋଥି ଧରି ପଢ଼ା ଆରମ୍ଭ କରନ୍ତି; ସେଦିନ ପିତାମାତାଙ୍କର ଆନନ୍ଦର ସୀମା ରହେନାହିଁ । ପିଲା ଭାଗବତ ଆରମ୍ଭ କରିବାକୁ ସାଧାରଣତଃ 'ଭାଗବତ ଛୁଆଁ' କୁହାଯାଏ । ମାଟିବଂଶ ଅବଧାନ ଚଟକୁ ଭାଗବତ ପଢ଼ିବା ନିମିତ୍ତ ଯୋଗ୍ୟ କରାଇ ଥିବାରୁ ଗ୍ରାମ ଅଭିଭାବକଙ୍କ ତରଫରୁ ତାଙ୍କୁ ଯଥୋଚିତ ପାରିତୋଷିକ ଦେଇ ସମ୍ମାନିତ କରାଯାଇଥାଏ । ତତ୍କାଳରେ "ଯେଉଁପିଲା ଅଧ୍ୟାୟେ ଭାଗବତ ବୋଲି ପାରିଲା, ତା'ର ବିଦ୍ୟା ଶେଷ ହୋଇଥିଲା (୪୮) ।

---

(୪୭) ଜଗବନ୍ଧୁ ସିଂହ—ପ୍ରବନ୍ଧସାର
(୪୮) ଜଗବନ୍ଧୁ ସିଂହ—ପ୍ରାଚୀନ ଉତ୍କଳ

ବାସ୍ତବରେ ଭାଗବତ ଟୁଙ୍ଗି ସ୍ଥାପିବା ପରେ ତଥାକଥିତ ପାଠପଢ଼ା ଶେଷକରି ଓଡ଼ିଆ ଜୀବିକାର୍ଜନ ନିମିତ୍ତ ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହେଉଥିଲା । ପୁନଶ୍ଚ ଜ୍ୱାଇଁ ପୁନେଇଁ ଖାଇ ଶ୍ୱଶୁର ଘରକୁ ଗଲେ; ତାକୁ ଭାଗବତ ପୋଥିଟିଏ ଦେଇ ତା' ଗଳାରୁ ଭାଗବତ ପୁଡ଼ାଏ (ପୃଷ୍ଠାଏ) ଶୁଣିବା ନିମିତ୍ତ ସନ୍ଧ୍ୟାରେ ସମବେତ ପଡ଼ୋଶୀ ଉତ୍ସୁକତା ପ୍ରକାଶ କରୁଥିଲେ । ସେ ଭାଗବତ-ପଢ଼ିପାରିଲେ ପ୍ରଶଂସିତ ହେଉଥିଲା, ନଚେତ୍ ଉପହସିତ ହେବା ନିଶ୍ଚିତ ଥିଲା । ଏହି ସମ୍ଭାବ୍ୟ ଭୟରେ ଅଧାପାଠୁଆ ଓଡ଼ିଆମାନେ ଶିକ୍ଷାନ୍ତ ପରେ ମଧ୍ୟ ସ୍ୱଚ୍ଛନ୍ଦ କଣ୍ଠରେ ଓ ଠିକ୍ ବୃତ୍ତରେ ଭାଗବତ ବୋଲିବା ପାଇଁ ଯତ୍ନଶୀଳ ହେଉଥିଲେ । ଫଳରେ ଯୁବଶିକ୍ଷାରେ ଭାଗବତ ମଧ୍ୟ ଯଥେଷ୍ଟ ସହାୟକ ହୋଇଥିଲା ।

ଭାଗବତ ଏକଦା ଓଡ଼ିଆର ସକଳ ଜ୍ଞାନର ମାପକାଠି ଥିଲା । ଜଣେ ଲୋକର ପାଣ୍ଡିତ୍ୟ ଅଛି କି ନାହିଁ, ତାହା ପରୀକ୍ଷା କରିବା ପାଇଁ ଭାଗବତ ହେଉଛି ଏକ କଷଟିପଥର ସଦୃଶ । କାରଣ "ସକଳ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥" ଏହି ଏକମାତ୍ର ଗ୍ରନ୍ଥରେ ସକଳ ଶାସ୍ତ୍ରର ତତ୍ତ୍ୱଜ୍ଞାନ ଲାଭ ସମ୍ଭବ ହୋଇଥାଏ । ତେଣୁ ଉତ୍କଳୀୟମାନଙ୍କର ସାବଜ୍ଞାନ ଅଜ୍ଞତା ଦୂରୀକରଣ ସହିତ ପଣ୍ଡିତମାନଙ୍କର ବିଦ୍ୱତ୍ତା ପରୀକ୍ଷଣ ଏହାର ମୌଳିକ ଲକ୍ଷ୍ୟ । ଏହି ଗ୍ରନ୍ଥ ତତ୍ତ୍ୱଦର୍ଶୀମାନଙ୍କ ପାଇଁ ଯେପରି ମହାନ, ନିରକ୍ଷରମାନଙ୍କ ପାଇଁ ତୁଲ୍ୟ ମୂଲ୍ୟବାନ ।

ଭାଗବତର ପରୋକ୍ଷ ପ୍ରେରଣା ଓ ପ୍ରତ୍ୟକ୍ଷ ଭୂମିକା ଫଳରେ ୧୯୦୧ ମସିହା ଜନଗଣନା ବିବରଣୀରେ ଓଡ଼ିଶାର ସାକ୍ଷର ସଂଖ୍ୟା ଅନ୍ୟ ରାଜ୍ୟ ତୁଳନାରେ ଯଥେଷ୍ଟ ଅଧିକ ହୋଇଥିଲା । ବିଜୟ ଚନ୍ଦ୍ର ମଜୁମ୍‌ଦାରଙ୍କ ବକ୍ତବ୍ୟରେ ଏହାର ସତ୍ୟତା ମଧ୍ୟ ସ୍ୱୀକୃତ ହୋଇଅଛି । ଓଡ଼ିଶାର ନିରକ୍ଷରତା ଦୂରୀକରଣ ଅଭିଯାନ ପରିପ୍ରେକ୍ଷୀରେ ଓଡ଼ିଆ ଭାଗବତର ଭୂମିକା ସମ୍ପର୍କରେ ସେ ମତପୋଷଣ କରି କହିଛନ୍ତି ଯେ— "ଭାଗବତକୁ ଓଡ଼ିଆରେ ପରିବେଷଣ କରି ଜଗନ୍ନାଥ ଦାସ ସବୁ ଶ୍ରେଣୀର ଲୋକଙ୍କୁ ନିଜ ମାତୃଭାଷା ଓଡ଼ିଆକୁ ଶ୍ରଦ୍ଧା ସହକାରେ ଶିକ୍ଷା କରିବା ନିମିତ୍ତ ଯେ ପ୍ରବର୍ତ୍ତାଇ ପାରିଥିଲେ; ଏହା ବିନା ଦ୍ୱିଧାରେ କୁହାଯାଇପାରେ ।

"ଜଗନ୍ନାଥ ଦାସଙ୍କର ଏହି ଗ୍ରନ୍ଥ ଓଡ଼ିଆ ଜାତିକୁ ଯେପରି ଭାବେ ଉପକୃତ କରିଛି; ତାହା ଚିରମେୟ। ଏହି ଗ୍ରନ୍ଥ ଓଡ଼ିଆ ଜାତିର ନୈତିକ ଜୀବନକୁ ଗଠନ କରିଛି ଓ ଏବେ ମଧ୍ୟ କରୁଅଛି। ଲୋକେ ଯେତେବେଳେ ଜାଣିଲେ ଓଡ଼ିଆ ଭାଷାରେ ଭାଗବତ ପ୍ରାପ୍ତ ହେଲାଣି, ସେତେବେଳେ ସେମାନେ କେବଳ ଭାଗବତ ପଢ଼ିବା ପାଇଁ, ଓଡ଼ିଆ ଶିଖିବାରେ ଲାଗି-ଗଲେ। କେବଳ ଏହି କାରଣରୁ ବଙ୍ଗଳା ଅପେକ୍ଷା ଉତ୍କଳରେ ସାକ୍ଷରତା ସଂଖ୍ୟା ଅଧିକ ବ୍ୟାପକ" (୪୯) । ଭାଗବତ ପଢ଼ିବାରେ ଦୁଇବାର ଆଗ୍ରହରୁ ଓଡ଼ିଆ ସାକ୍ଷର ହେବା ପାଇଁ ପ୍ରଭୂତ ପ୍ରେରଣା ଲାଭ କରିଥିଲ।

ଏପରି ବ୍ୟକ୍ତିତ ଅନେକ "ଇଂରେଜୀ ଓ ବଙ୍ଗଳା ଐତିହାସିକ-ମାନେ ସ୍ୱୀକାର କରିଛନ୍ତି ଯେ ଜଗନ୍ନାଥ ଦାସଙ୍କ ଭାଗବତ ହିଁ ଓଡ଼ିଆ ଜାତିର ପ୍ରାଣବନ୍ଦ ହୋଇ ଓଡ଼ିଶା ଏବଂ ଓଡ଼ିଆ ଜାତିକୁ ବଞ୍ଚାଇ ରଖି ପାରିଛି" (୫୦) । ଅତଏବ ସର୍ବସାଧାରଣଙ୍କ ଶିକ୍ଷାଲାଭ କ୍ଷେତ୍ରରେ ଭାଗବତର ଅପ୍ରତିହତ ପ୍ରଭାବ ଫଳରେ ଓଡ଼ିଆ ଏକ ସୁନିୟନ୍ତ୍ରିତ ତଥା ସଂସ୍କୃତ ଜାତିରେ ପରିଣତ ହୋଇ ପାରିଛି। ତେଣୁ ଓଡ଼ିଶାବାସୀଙ୍କୁ ଶିକ୍ଷାଲୋକ ପ୍ରଦାନ କରିବା ପରିପ୍ରେକ୍ଷୀରେ ଓଡ଼ିଆ ଭାଗବତ ଯେ ଏକ ମିଶନ ସ୍ୱରୂପ ଭୂମିକା ନିର୍ବାହ କରିଥିଲା; ଏହା ଅବିସମ୍ବାଦିତ ସତ୍ୟ ଅଟେ।

## ଭାଗବତର ଆଧ୍ୟାତ୍ମିକ ମୂଲ୍ୟବୋଧ :

ଭାଗବତ ଓଡ଼ିଆ ଜନତାର ଏକ ଆଧ୍ୟାତ୍ମିକ ଧର୍ମଗ୍ରନ୍ଥ। ଏକଦା ଓଡ଼ିଆ ଭାଗବତ ଲୋକଶିକ୍ଷା ପ୍ରଦାନ କରିବା ସହିତ ଧର୍ମୀୟ ଚେତନା ଜାଗ୍ରତ କରିବାରେ ସହାୟକତା ପ୍ରଦାନ କରୁଥିଲା। ତେଣୁ କାଳକ୍ରମେ ଜଗନ୍ନାଥ ଦାସକୃତ ଭାଗବତ ଓଡ଼ିଶାର ପଲ୍ଲୀପଲ୍ଲୀରେ ଏପରି ଭାବେ ଆଦୃତ ହେଲା ଯେ ଓଡ଼ିଶାବାସୀ ଏହାକୁ ଭାଗବତ ସ୍ୱରୂପରେ ପୂଜା କଲେ

(୪୯) ବିଜୟ ଚନ୍ଦ୍ର ମଜୁମଦାର—Typical Selections of Oriya Literature.

(୫୦) ଜାନକୀବଲ୍ଲଭ ପଟ୍ଟନାୟକ ଉତ୍କଳପ୍ରସଙ୍ଗ, ଜୁଲାଇ ୮୮ ସଂଖ୍ୟା, ପୃ ୩

ଓ ଭାଗବତ ତାଙ୍କୁ ବିଷ୍ଣୁଜ୍ଞାନରେ ସମ୍ମାନ ଦେଲେ । ନୂତନ ବୈଷ୍ଣବ ଧର୍ମର ଅଭ୍ୟୁଦୟ କାଳରୁ ଭାଗବତ ଗ୍ରନ୍ଥକୁ ଓଡ଼ିଆ ଜାତି ବେଦ, ଗୀତା ତଥା ଉପନିଷଦର ଏକ ସାମଗ୍ରିକ ବିଗ୍ରହ ରୂପେ ଗ୍ରହଣ କରି ଆସିଛି । ପ୍ରତ୍ୟେକ ଭକ୍ତକବିଙ୍କ ପକ୍ଷରେ ଏହା ଯେପରି ପବିତ୍ରତମ, ସେହିପରି ପରମ-ପ୍ରିୟ ମଧ୍ୟ । ପବିତ୍ର ମହାନଦୀର ସଲିଳରେ ଅବଗାହନ କଲେ ମନୁଷ୍ୟ ଯେପରି ପାପମୁକ୍ତ ହୋଇଥାଏ, ସେହିପରି ଭାଗବତର ସୁଧାମୟ ପଦାବଳୀ ଶ୍ରବଣରେ ତା'ର ମନୁଷ୍ୟତ୍ୱ ପରିଷ୍କୃତ ହୋଇଥାଏ । ଭାଗବତ କେବଳ ଏକ ଧର୍ମଗ୍ରନ୍ଥ ନୁହେଁ, ପରନ୍ତୁ ଉତ୍କଳୀୟମାନଙ୍କର ଆଧ୍ୟାତ୍ମିକ ଚେତନାରେ ଏହା ଦେବବିଗ୍ରହ ତୁଲ୍ୟ ପ୍ରତିଭାତ ।

ପୁରପଲ୍ଲୀର ଓଡ଼ିଆ ଘରେ ବହୁ କାଳରୁ ଭାଗବତ ପୋଥି ସାକ୍ଷାତ ବିଷ୍ଣୁ, ବାସୁଦେବ ବା ଜଗନ୍ନାଥ ସ୍ୱରୂପ ଉପାସିତ ହୋଇ ଆସୁଛନ୍ତି । ଭାଗବତ ସଦୃଶ ଅନ୍ୟ କୌଣସି କବିଙ୍କର ସାରସ୍ୱତ ସୃଷ୍ଟି ଅଦ୍ୟାବଧି ଅନୁରୂପ ସମ୍ମାନ ଲାଭ କରିପାରି ନାହିଁ । ଭାଗବତର ଉକ୍ତି ହେଉଛି ଭକ୍ତିଭାବର ଏକ ପବିତ୍ର ଉତ୍ସ । "ଶ୍ରୀଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀମାନେ ।" ଓଡ଼ିଶାର ସମସ୍ତ ସାରସ୍ୱତ ସମ୍ପଦମାନଙ୍କ ମଧ୍ୟରେ ଭାଗବତ ଜ୍ଞାନତତ୍ତ୍ୱ ଦୃଷ୍ଟିରୁ ଯେପରି ଅଦ୍ୱିତୀୟ, ଭକ୍ତିତତ୍ତ୍ୱ ଦୃଷ୍ଟିରୁ ସେହିପରି ଅନୁପମ ମଧ୍ୟ । ଉତ୍କଳମଣିଙ୍କ ଭାଷାରେ "ଭାଗବତ ଓଡ଼ିଆର ଆରାଧ୍ୟ ଦେବତା, ଧର୍ମଗ୍ରନ୍ଥ, ପାଠ୍ୟପୁସ୍ତକ । ଗୃହେ ଗୃହେ ଏହାର ଆଦର ଏବଂ ପୂଜା" (୫୧) । ଏହାର ଛନ୍ଦେ ଛନ୍ଦେ ଭକ୍ତିସ୍ରୋତ ଉଚ୍ଛ୍ୱସିତ । ଏହା ଆବୃତ୍ତି ଫଳରେ ଓଡ଼ିଆର ଆଧ୍ୟାତ୍ମିକ ବାସନା ପରିତୃପ୍ତ ହୋଇଥାଏ । ତତ୍‌ସହିତ ଓଡ଼ିଆର ଶ୍ରବଣ ଓ ମନ ମଧ୍ୟ ପୁଲକିତ ହୋଇଉଠେ । ପ୍ରତି ସନ୍ଧ୍ୟାର ଶୁଭ ଆଗମନୀ ଅବସରରେ ଭାଗବତ ଟୁଙ୍ଗୀରେ ଯେତେବେଳେ "ନମଇଁ ନୃସିଂହ ଚରଣ···" ପ୍ରଭୃତି ସୁକୋମଳ ପଦାବଳୀ ଝଙ୍କୃତ ହୋଇଉଠେ, ସେତେବେଳେ ତାହା ଶ୍ରବଣରେ ପ୍ରତି ଓଡ଼ିଆର ହୃଦୟ ମନ୍ଦିରରେ ଆଧ୍ୟାତ୍ମିକତାର ହିଲ୍ଲୋଳ ସୃଷ୍ଟି ହୋଇଥାଏ । ଓଡ଼ିଆମାନେ ଭାଗବତ ପାଠ ପ୍ରାରମ୍ଭରେ ଓ ପଠନ ପରିସମାପ୍ତିରେ ଭାଗବତ ପୋଥି/ଗ୍ରନ୍ଥକୁ ଦେବତାଜ୍ଞାନରେ ମଥାରେ ସ୍ପର୍ଶ କରିଥାନ୍ତି । ଏହି ପରମଶାସ୍ତ୍ର

(୫୧) ଉତ୍କଳ—୪ର୍ଥ ବର୍ଷ, ୪ର୍ଥ ସଂଖ୍ୟା, ପୃ-୧୨ ।

ଓଡ଼ିଆ ଜାତିର ଏକ ଆଧ୍ୟାତ୍ମିକ ଅନୁଭୂତି ମାତ୍ର । ଓଡ଼ିଆର ଦୈନନ୍ଦିନ ଜୀବନର ପ୍ରତି ମୁହୂର୍ତ୍ତରେ ଭାଗବତ ଚନ୍ଦ୍ରିକା ଭରିଦିଏ । ସେଥିପାଇଁ ଯଥାର୍ଥରେ କୁହାଯାଇଛି—

"ଯାହାର ଭକତି ପରିର ମାନବ ପ୍ରକୃତି କରେ ଭାବେ ବିଭୋର
ହରିବୋଲ ହୁଳହୁଳି ଶବଦେ ପବିତ୍ରୋଜ୍ଜ୍ୱଳ ସକଳ ପୁର । (୫୨)

ଭାଗବତରେ ତୋଷୀତତଂ ସଂକୀର୍ଣ୍ଣ ଧର୍ମମତ ପ୍ରତିବନ୍ଦ୍ୱୀ ଆଦର୍ଶ ମାନବଧର୍ମ ହିଁ ସମ୍ପୃକ୍ତ ହୋଇଅଛି । ପୁନଶ୍ଚ ଉଚ୍ଚମାନବର ଆଦର୍ଶବୋଧ ଭାଗବତରେ ଚିତ୍ରିତ । ମାନବ ଜୀବନର ପୂର୍ଣ୍ଣାଙ୍ଗ ବିକାଶ ନିମିତ୍ତ ଭାଗବତ ଉଦ୍‌ବୋଧନ ଦେଇଛି । ସୃଷ୍ଟିର ଶ୍ରେଷ୍ଠ ଜୀବ ମନୁଷ୍ୟର ଆତ୍ମଚିନ୍ତନ ନିମିତ୍ତ ଭାଗବତ ବାସ୍ତବ ଦିଗ୍‌ଦର୍ଶନ ଦେଇଅଛି । ମାନବ ଧର୍ମର ସକଳ ବିଭାବ ଏଥିରେ ସନ୍ନିବିଷ୍ଟ । "ଜୀବନ ଏକ ବିଦ୍ୟାଳୟ"— ଏହି ଧାରଣା ଭାଗବତ ପ୍ରଦାନ କରିଛି (୫୩) ।

ନିଷ୍କଳୁଷ ଜୀବନଯାପନ ପାଇଁ ଭାଗବତ ହେଉଛି ଶ୍ରେଷ୍ଠ ଅବଲମ୍ବନ । ଭାଗବତ ହେଉଛି ସଂଯମ, ତ୍ୟାଗ, ଅତିଥି ସେବା ପ୍ରଭୃତି ମାନବଧର୍ମର ମହାନ୍ ଆଲେଖ୍ୟ । ଜୀବସେବା, ପରୋପକାରରେ ସ୍ୱର୍ଗପ୍ରାପ୍ତି ଯେ ଅବଶ୍ୟମ୍ଭାବୀ, ଏହା ଭାଗବତର ମୌଳିକ ବକ୍ତବ୍ୟ । ସତ୍ୟ ଆଉ ଶିବର ଉପାସନାରେ ଭାଗବତ ଗ୍ରନ୍ଥ ସମୁଜ୍ଜ୍ୱଳ । ଉକ୍ତ ପରମ ଭକ୍ତିଗ୍ରନ୍ଥ ଆଧ୍ୟାତ୍ମିକ ଚେତନ, ଆଦର୍ଶମାନବିକତା ଓ ନୈତିକ ଜାଗରଣ ଅଭିବୃଦ୍ଧି ନିମିତ୍ତ ଉଦ୍ଦିଷ୍ଟ । ଓଡ଼ିଆ ଜାତିକୁ ଏକ ଧର୍ମପ୍ରବଣ ତଥା ନୀତିବାନ ଜାତି ରୂପେ ଗଠନ କରିବା ପଶ୍ଚାତରେ ରହିଛି, ଭାଗବତର ସୁଦୂରପ୍ରସାରୀ ପ୍ରଭାବ । ଓଡ଼ିଆର ଜ୍ଞାନ ବିଜ୍ଞାନ, ଧର୍ମଦର୍ଶନ, ଶିକ୍ଷାଦୀକ୍ଷା, ଯାନିଯାତ୍ରା, ପର୍ବପର୍ବାଣି, ମେଳାମହୋତ୍ସବ, ଆଚାର ବ୍ୟବହାର, ଚାଲିଚଳଣି ଖାଦ୍ୟପେୟ, ପରମ୍ପରା ଇତ୍ୟାଦି ସବୁ କିଛିର ଆଧାର ହେଉଛି ଭାଗବତ । ଅତଏବ ଭାଗବତ ହେଉଛି ଓଡ଼ିଆ ସଂସ୍କୃତିର ପ୍ରଜ୍ଞାପୀଠ ।

---

(୫୨) ନୀଳକଣ୍ଠ ରଥ—କବି ଜଗନ୍ନାଥ ଦାସ, ପୃ-୧୫ ।

(୫୩) ଆଲୋକ—ଡ଼ଃ କ୍ଷେତ୍ରବାସୀ ନାୟକ ।

## ଶ୍ରୀ ଜଗନ୍ନାଥ ସ୍ୱୟଂ ପରମ ଭାଗବତମନ୍ତ୍ର

ଓଡ଼ିଶାର ରାଷ୍ଟ୍ରଦେବତା / ସାମ୍ୟମୈତ୍ରୀ ବିଧାୟକ / ମହାଭାବର ଘନୀଭୂତ ବିଗ୍ରହ/ଆଦ୍ୟପ୍ରଣିଧାନ/ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ, ଔଦାର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତୀକ/ଲୋକବେଦ ପ୍ରଥିତ ଚକ୍ର ପୁରୁଷୋତ୍ତମ / ନିର୍ଗୁଣ ସଗୁଣବାଦର ଯୁଗନଦ୍ଧ ପରିପ୍ରକାଶ / ସମନ୍ୱୟ ଭାବାନୁବନ୍ଧନର ଶ୍ରେଷ୍ଠ ଉଦ୍‌ଗାତା/ପରମାରାଧ୍ୟ ଦାରୁବ୍ରହ୍ମ ସନାତନ ଶ୍ରୀଜଗନ୍ନାଥ ମହାପ୍ରଭୁ (୫୪) ପୃଥିବୀର ପ୍ରାଚୀନତମ ଦେବତା । ଶ୍ରୀଜଗନ୍ନାଥ ଚେତନାର ଉଦ୍ଭବକାଳୀନ ଅର୍ଥାତ୍ ସମସାମୟିକ ଦେବତାମାନଙ୍କ ଅସ୍ତିତ୍ୱ ସଂଗ୍ରହାଳୟ ମାନଙ୍କରେ ଦର୍ଶନୀୟ ପ୍ରତ୍ନତାତ୍ତ୍ୱିକ ବସ୍ତୁ ରୂପରେ ସଂରକ୍ଷିତ କିମ୍ବା କେବଳ ପୁରାଣ ପୃଷ୍ଠାରେ ଉପଲବ୍ଧ ହୋଇଥାଏ । ଯେହେତୁ ଶ୍ରୀଜଗନ୍ନାଥଙ୍କ ଠାରୁ ପ୍ରାଚୀନତର ଦେବତା ସମ୍ପର୍କିତ ତଥ୍ୟମାନ ଥିବାର ଜଣାଯାଏ ନାହିଁ, ତେଣୁ ତାଙ୍କୁ ସନାତନ ଦେବତା ବା ଭଗବତ ଠାକୁର କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିହେତୁ ଶ୍ରୀଜଗନ୍ନାଥ ସଂସ୍କୃତି, ସନାତନ ସଂସ୍କୃତି ବା ଭାଗବତ ସଂସ୍କୃତି ନାମରେ ସର୍ବଜନବନ୍ଦିତ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥଙ୍କୁ ଓଡ଼ିଆ ଭାଗବତର ପ୍ରାଣପୁରୁଷ ରୂପେ ପ୍ରତିପାଦନ କରିବା ଆଲୋଚନାର ଉପଜୀବ୍ୟ ଅଟେ ।

ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରି ଶ୍ରୀଜଗନ୍ନାଥଙ୍କ ବୈଦିକ ପ୍ରତିଷ୍ଠାକୁ ପରିପ୍ରଚାର କରିଛନ୍ତି ମାତ୍ର । ଆମ ଧର୍ମଚେତନାର ସାରମର୍ମ ଭାଗବତ ନିହିତ, ଯାହାର ନାମାନ୍ତର ଶ୍ରୀଜଗନ୍ନାଥ ଚେତନା । ଶ୍ରୀଜଗନ୍ନାଥଃ ସଗୁଣବ୍ରହ୍ମ କୃଷ୍ଣ ବାସୁଦେବଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ସାତ୍ତ୍ୱତବଂଶୀ କୃଷ୍ଣବାସୁଦେବଙ୍କ ପ୍ରତୀକ ରୂପେ ଶ୍ରୀଜଗନ୍ନାଥଙ୍କୁ ଶରଣଂ ମେ ଜଗନ୍ନାଥ ଶ୍ରୀକୃଷ୍ଣ ପୁରୁଷୋତ୍ତମଃ" (୫୫) ଉକ୍ତି ମାଧ୍ୟମରେ ସ୍ତୁତି କରାଯାଇଥାଏ ।

ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ଉଭୟେ ଏକ ଓ ଅଭିନ୍ନ । ପୁରାଣର ଶ୍ରୀକୃଷ୍ଣ ଆଜି ଜୀବନ୍ତ କୃଷ୍ଣ ଭାବେ ଶ୍ରୀମନ୍ଦିରରେ ଉପାସିତ, ସିଏକି ଆମର

---

(୫୪) ବେଣୁଧର ପରିଡ଼ା, ତା ୧-୭-୯୦, ରବିବାର ସମାଜ ପୃ ୧ ।

(୫୫) ସାତ୍ତ୍ୱତ ତନ୍ତ୍ରର ସପ୍ତମ ପଟଳ ।

ପରମ ଆରାଧ୍ୟ ଶ୍ରୀଜଗନ୍ନାଥ ଅଟନ୍ତି । ପ୍ରତ୍ୟେକ ଧାମ ଯୁଗେ ଯୁଗେ ସ୍ୱକୀୟ ମହିମାରେ ମହିମାନ୍ୱିତ । ପୁରୁଷୋତ୍ତମ ଧାମ ଶ୍ରୀକ୍ଷେତ୍ର ହେଉଛି ସାମ୍ୟବାଦର ଅକ୍ଷୁର୍ଣ୍ଣ ତଥା ଅବଚ୍ଛିନ୍ନ ପ୍ରତୀକ । ଜ୍ଞାନମିଶ୍ରା ଭକ୍ତିପ୍ରଧାନ ଓଡ଼ିଶୀ ବୈଷ୍ଣବ ଧର୍ମାବଲମ୍ବିମାନଙ୍କ ମତରେ, ଶ୍ରୀଜଗନ୍ନାଥଙ୍କ ଲୀଳାପୀଠ ପୁରୁଷୋତ୍ତମ କ୍ଷେତ୍ର ହେଉଛି ମହାନିତ୍ୟ ସ୍ଥଳ ଓ ତନ୍ମଧ୍ୟରେ ନୀଳାଚଳ ହିଁ ଗୋଲକ ଧାମ । ପୁନଶ୍ଚ କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥ ହେଉଛନ୍ତି ନିତ୍ୟକୃଷ୍ଣ ବା ଗୋଲକକୃଷ୍ଣ । ନିତ୍ୟଗୋଲକ, ଶ୍ରୀକ୍ଷେତ୍ରରେ ନିତ୍ୟକୃଷ୍ଣ, ନିତ୍ୟରାଧାଙ୍କ ସହିତ ଏକାଙ୍ଗ ହୋଇ ଶ୍ରୀଜଗନ୍ନାଥ ସ୍ୱରୂପରେ ବିରାଜମାନ କରିଛନ୍ତି (୫୬) । ଶ୍ରୀଜଗନ୍ନାଥ ବିଗ୍ରହରେ ରାଧାକୃଷ୍ଣଙ୍କର ସମ୍ମିଳିତ ବିଗ୍ରହ ସମନ୍ୱିତ ଅଛି ବୋଲି ବୈଷ୍ଣବମାନଙ୍କର ଅଭିମତ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କୁ ପ୍ରକୃତିପୁରୁଷର ଯୁଗନଦ୍ଧ ବିଗ୍ରହ ରୂପେ ପରିକଳ୍ପନା କରାଯାଇ ତାଙ୍କୁ ପୁରୁଷବେଶ ସହିତ ନାରୀବେଶରେ ମଧ୍ୟ ପାଟପଡନି, ନାକଚଣା, ମଥାମଣି, ବସଣି ପ୍ରଭୃତି ବେଶଭୂଷା ତଥା ଅଳଙ୍କାରରେ ସୁସଜ୍ଜିତ କରାଯାଇ ଥାଏ ।

ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ରୂପେ ପ୍ରତିପାଦନ ନିମିତ୍ତ ପୁରାଣ ପୃଷ୍ଠାରେ ପ୍ରମାଣର ଅଭାବ ନାହିଁ । ଶ୍ରୀକୃଷ୍ଣଙ୍କ ଅର୍ଦ୍ଧଦଗ୍ଧ ଶରୀରାଂଶ ସମୁଦ୍ର ଜଳରେ ଭାସି ଦାରୁରୂପେ ଶ୍ରୀକ୍ଷେତ୍ରକୁ ଆସିବା ଓ ସେଠାରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ରୂପେ ପୂଜିତ ହେବା ଓଡ଼ିଶାର ପୁରାଣ ପରମ୍ପରାରେ ସ୍ୱୀକୃତ ହେବା ସହିତ ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ମଧ୍ୟରେ ଅଭେଦତ୍ୱ ସୂଚିତ ହୋଇଅଛି । ତାହାର କୌଣସି ବିବରଣୀ ସଂସ୍କୃତ ପୁରାଣରେ ନଥିଲେ ସୁଦ୍ଧା ଶ୍ରୀକୃଷ୍ଣ ଜଗନ୍ନାଥ ପରିକଳ୍ପନାର ଏହା ଯେ ଶେଷ ପରିଣତି; ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ (୫୮) ।

ଉତ୍କଳୀୟ ବୈଷ୍ଣବଗଣ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ରୂପେ ଶ୍ରେଷ୍ଠତ୍ୱ ଅର୍ପଣ କରୁଥିବା ସ୍ଥଳେ ଗୌଡ଼ୀୟ ବୈଷ୍ଣବଗଣ ଶ୍ରୀକୃଷ୍ଣଙ୍କୁ ସର୍ବମୟକର୍ତ୍ତା

---

(୫୬) ସୂର୍ଯ୍ୟନାରାୟଣ ଦାଶ—ଓଡ଼ିଆ ସାହିତ୍ୟର ଇତିହାସ, ୨ୟ ଭାଗ (୧୯୬୮), ପୃ-୩୪୩ ।

(୫୭) ଡଃ ନଟବର ସାମନ୍ତରାୟ—ନୀଳାଦ୍ରିବିହାରୀ ଜଗନ୍ନାଥ—ଆମ ଜଗନ୍ନାଥ ଆମ ସଂସ୍କୃତି, ପୃ-୯୬ ।

ରୂପେ ମାନ୍ୟତା ପ୍ରଦାନ କରିଥାନ୍ତି । ମାତ୍ର ଶ୍ରୀକ୍ଷେତ୍ରରେ ପ୍ରୋକ୍ତ ଉଭୟ ଉପାସ୍ୟ ସ୍ୱତନ୍ତ୍ର ନୁହନ୍ତି କି ଉଭୟଙ୍କ ମତବାଦ ଦ୍ୱୟର କୌଣସି ସ୍ୱାତନ୍ତ୍ର୍ୟ ମଧ୍ୟ ନାହିଁ । କ୍ଷେତ୍ରର ଦର୍ଶନରେ—

"ଜଗନ୍ନାଥ ଯେ ଷୋଳକଳା । ତହୁଁ କଳାଏ ନନ୍ଦବଳା ॥
କଳାକ ଷୋଳକଳା କରି । ଗୋଟିଏ ଛାଡ଼ିଲୁ ନରହରି (୫୮)॥"

ଅର୍ଥାତ୍ ଷୋଡ଼ଶକଳା ବିଶିଷ୍ଟ ପୂର୍ଣ୍ଣାବତାର ଶ୍ରୀଜଗନ୍ନାଥଙ୍କ ଏକକଳା ସମ୍ଭୂତ ଶ୍ରୀକୃଷ୍ଣ ସ୍ୱ ଶକ୍ତି ପରାକାଷ୍ଠା ବଳରେ ଷୋଡ଼ଶ କଳାରେ ପରିଣତ ହୋଇ ସ୍ୱୀୟ ମହାନୁଭବତ୍ୱ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କ ସହିତ ତାଙ୍କର ଅଭିନ୍ନତ୍ୱ ପ୍ରମାଣିତ ହୋଇଅଛି ।

୧୪୯୦ ଖ୍ରୀଷ୍ଟାବ୍ଦ ଭାଦ୍ରଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ) ବୁଧବାର ଅନୁରାଧା ନକ୍ଷତ୍ର ମଙ୍ଗଳମୁହୂର୍ତ୍ତରେ ଶ୍ରୀକ୍ଷେତ୍ର ସନ୍ନିକଟବର୍ତ୍ତୀ କପିଳେଶ୍ୱରପୁର ଶାସନରେ ପୁରାଣପଣ୍ଡା ଶ୍ରୀ ଭଗବାନ ଦାସଙ୍କ ଔରସ ତଥା ଭକ୍ତିମତୀ ପଦ୍ମାବତୀ ଦେବୀଙ୍କ ଗର୍ଭରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅନୁକମ୍ପା ବଳରେ ଯୋଗଜନ୍ମା ଜଗନ୍ନାଥ ଦାସ ଜନ୍ମଗ୍ରହଣ କରିଥିଲେ । ସେ ମହାଶୟ ତତ୍କାଳୀନ ସମୟର ଆବେଦନ କ୍ରମେ ଶ୍ରୀଜଗନ୍ନାଥ ସଂସ୍କୃତିର ପରିପ୍ରେକ୍ଷୀର ନିମିତ୍ତ ଭାଗବତ ରଚନା କରି ଅକ୍ଷୟକୀର୍ତ୍ତି ରଖି ଯାଇଛନ୍ତି । ସେହି ଦିନଠାରୁ ଶ୍ରୀଜଗନ୍ନାଥ ଓ ଭାଗବତ ଓଡ଼ିଶାର ଦୁଇଟି ସାଂସ୍କୃତିକ ଉତ୍ସ ରୂପେ ଆମ ଜାତିର ମହନୀୟତା ଜ୍ଞାପିତ କରୁଅଛି । ଏହି ପ୍ରସଙ୍ଗରେ ଲୋକୋକ୍ତି ରହିଛି—"ଦେଖିବ ଜଗନ୍ନାଥ, ଖାଇବ ଦୁଧଭାତ, ଗାଇବ ଭାଗବତ ।"

ଭାଗବତ ଧର୍ମର ପରମ ଉପାସ୍ୟ ଶ୍ରୀଜଗନ୍ନାଥ ଓଡ଼ିଶାର ଘରେ ଘରେ ବିଷ୍ଣୁ, କୃଷ୍ଣ, ବାସୁଦେବ ରୂପେ ଉପାସିତ । ପୁରାଣ ପରମ୍ପରାରେ ଶ୍ରୀକୃଷ୍ଣ ସର୍ବଶ୍ରେଷ୍ଠ ଦେବତା ରୂପେ ସ୍ୱୀକୃତ ହୋଇଥିଲେ ହେଁ ତାଙ୍କ ସହିତ ସମନ୍ୱୟ ସ୍ଥାପନପୂର୍ବକ ଉତ୍କଳ ଭାରତୀର ବରପୁତ୍ର ଜଗନ୍ନାଥ ଦାସ ଭାଗବତ ରଚନା କରିଛନ୍ତି । ପରମାରାଧ୍ୟ ଶ୍ରୀଜଗନ୍ନାଥଙ୍କ ସଦୃଶ ଭାଗବତ ମଧ୍ୟ ଓଡ଼ିଶାର ଉପାସ୍ୟ ଧର୍ମଗ୍ରନ୍ଥ । ଶ୍ରୀଜଗନ୍ନାଥ ଯେପରି ସର୍ବଧର୍ମ ସମନ୍ୱିତ

(୫୮) ଦିବାକର ଦାସ — ଜଗନ୍ନାଥ ଚରିତାମୃତ ।

ଗଣଦେବତା ରୂପେ ବର୍ଣ୍ଣିତ, ଠିକ୍ ସେହିପରି ଭାଗବତରେ ସମସ୍ତ ଧର୍ମଦର୍ଶନର ସମନ୍ୱୟ ପ୍ରତିଫଳିତ ହୋଇଅଛି । ଭାଗବତ ମହାସିନ୍ଧୁକୁ ମନ୍ଥନ କରି ଯୁଗ ପ୍ରୟୋଜନାନୁସାରେ ଭାରତୀୟ ଧର୍ମସଂସ୍କୃତିର ପରମସତ୍ତ୍ୱ ଶ୍ରୀଜଗନ୍ନାଥଙ୍କୁ ଗଣଦେବତା ରୂପେ ଆହ୍ୱାନ କରି ଅତିବଡ଼ି ଜଗନ୍ନାଥ ଦାସ ଭାଗବତରେ ଏକ ଅପୂର୍ବ ଜଗନ୍ନାଥ ତତ୍ତ୍ୱର ସନ୍ଧାନ ଦେଇଛନ୍ତି (୫୯) । ଆମେ ଯେଉଁ ଭାଗବତ ଗ୍ରନ୍ଥ ପୂଜା କରୁ ତାହା ଶ୍ରୀଜଗନ୍ନାଥଙ୍କ ସଦୃଶ ଅତ୍ୟନ୍ତ ମହାନ ।

ପଞ୍ଚସଖା ଯୁଗର ଅନ୍ୟତମ ଶ୍ରେଷ୍ଠ ସାହିତ୍ୟ ସାଧକ ଅତିବଡ଼ି ଜଗନ୍ନାଥ ଦାସ ଗୋସ୍ୱାମୀ କୃଷ୍ଣଚରିତ ଶ୍ରୀମଦ୍ ଭାଗବତକୁ ଓଡ଼ିଆରେ ଅନୁବାଦ କରି ଶୁଦ୍ଧ ଅଧ୍ୟାତ୍ମବାଦ ଓ ଭକ୍ତିଭାବ ସଂଯୋଗରେ ଉତ୍କଳୀୟ ସଂସ୍କୃତିର ସମୀକ୍ଷା କରିଛନ୍ତି । ଟୀକାକାର ଶ୍ରୀଧର ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରି ଶ୍ରୀଜଗନ୍ନାଥଙ୍କୁ ଭାଗବତର ପ୍ରାରମ୍ଭରେ ନୃସିଂହ ରୂପେ ପ୍ରାର୍ଥନା କରି କହିଛନ୍ତି "—ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ।" ନିମଦାରୁ ନିର୍ମିତ ଶ୍ରୀଜଗନ୍ନାଥ କାଷ୍ଠସ୍ତମ୍ଭରୁ ଆବିର୍ଭୂତ ନୃସିଂହଙ୍କର ଏକ ପରିବର୍ତ୍ତିତ ରୂପ । ଇନ୍ଦ୍ରଦ୍ୟୁମ୍ନଙ୍କ ସାହସିକ ଅଶ୍ୱମେଧ ଯଜ୍ଞ ପରିସମାପ୍ତି ପରେ ମହୋଦଧିରୁ ପ୍ରାପ୍ତ ଚତୁଃଶାଖା ବିଶିଷ୍ଟ ଅପୂରୁଷେୟ ଦାରୁରୁ ପ୍ରଥମେ ନୃସିଂହ ଆତ୍ମପ୍ରକାଶ କରିବା ପରେ ଚତୁର୍ଦ୍ଧା ମୂର୍ତ୍ତିରେ ପରିଣତ ହୋଇଥିଲେ । ଜାଗତିକ ଜୀବର ଶରୀର ଅନ୍ନମୟ କୋଷରୁ ନିର୍ମିତ । ଉଦ୍ଭିଦ (ଦାରୁ) ଜଗତ ଯୋଗୁ ବୃଷ୍ଟିପାତ ସମ୍ଭବ ଓ ବୃଷ୍ଟିପାତ ମନୁଷ୍ୟର ଖାଦ୍ୟ ଉତ୍ପନ୍ନରେ ସହାୟକ ହୋଇଥାଏ । ପ୍ରକାରାନ୍ତରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ସେଥିପାଇଁ କୈବଲ୍ୟନାଥ ବୋଲି ଅଭିହିତ କରି କବି କହିଛନ୍ତି— "ସେ ହରି କୈବଲ୍ୟର ନାଥ । ଭାବ ସ୍ୱଭାବେ ଏ ଜଗତ ।" କବି କୃଷ୍ଣ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭେଦତ୍ୱ ସ୍ଥାପନ ପୂର୍ବକ ଭାଗବତରେ ଅନେକଥର ଅବତାରଣା କରିଛନ୍ତି ଯେ— "ଶଙ୍ଖବାଦେ ବେଢ଼ି ଜଗନ୍ନାଥ । ଫଣାରେ ଢାଙ୍କିଲ ଅନନ୍ତ ।" ଅନ୍ୟ କେତେକ ସ୍ଥଳରେ ଭକ୍ତକବି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରାଧାନ୍ୟ ଦେଇ ତାଙ୍କୁ ଅବତାରୀ ରୂପେ ବର୍ଣ୍ଣନା କରି କହିଛନ୍ତି—

(୫୯) କମଳକୃଷ୍ଣ ପାଲ—ଶ୍ରୀଜଗନ୍ନାଥ ଓ ଭାରତୀୟ ସଂସ୍କୃତି, ପୃ-୧୯୪ ।

"ନମସ୍ତେ ପ୍ରଭୁ ଜଗନ୍ନାଥ । ଅନାଥ ଲୋକଙ୍କର ନାଥ ॥
ହୋଇଲୁ ଦଶ ଅବତାର । ନାଶିଲୁ ଅବନୀର ଭାର ॥"

ପୁନଶ୍ଚ ତାଙ୍କ ମତରେ "ଶିର(ଶ୍ରୀ) ଅଙ୍ଗରୁ ବନ୍ଦ ଜାତ" ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କ ଶ୍ରୀ ଅଙ୍ଗରୁ ଭାଗବତର ଉଦ୍ଭବ ହୋଇଅଛି । ଭାଗବତର ପ୍ରାଣାଧାର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଜବ ପରମ ଭାଗବତ ବୋଲି ପ୍ରତିପାଦନ କରିବା ଅଭିପ୍ରାୟରେ ଭାଗବତର ଦ୍ୱାଦଶ ସ୍କନ୍ଦକୁ ମହାପ୍ରଭୁଙ୍କ ବିଭିନ୍ନ ଅବୟବ ସହ ତୁଳନା କରିଛନ୍ତି । ଯଥା—ପ୍ରଥମ ସ୍କନ୍ଦ- ବାମପାଦ, ୨ୟ ସ୍କନ୍ଦ—ଦକ୍ଷିଣପାଦ ଓ ଅନ୍ୟ ସ୍କନ୍ଦଗୁଡ଼ିକ ଯଥାକ୍ରମେ—ବାମଜାନୁ, ଦକ୍ଷିଣଜାନୁ ନାଭି, ଉଦର, ବାମବାହୁ, ଦକ୍ଷିଣବାହୁ, କଣ୍ଠ, ମୁଖ, ମସ୍ତକ ଏବଂ ସର୍ବଶେଷ ତଥା ଦ୍ୱାଦଶସ୍କନ୍ଦ ମହାପ୍ରଭୁଙ୍କର ଶରୀର ବିସ୍ତାର ଅଟେ । ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଯାହା ନାହିଁ, ଶାଶ୍ୱତ ଓ ସନାତନ; ତାହାହିଁ ଭାଗବତର ଅନ୍ତଃସାର ଅଭିବ୍ୟକ୍ତି ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦାରବ ରୂପର ଯଥାର୍ଥ ପ୍ରକଟିତ ହୋଇଛି କବିଙ୍କର ନିମ୍ନ ଉକ୍ତିରେ । ଯଥା—"ସକଳ ଦେବ ହୋଇ ବୃକ୍ଷେ । ଫଳ ଫଳିଲେ ଅନ୍ତରୀକ୍ଷେ ।" ଅର୍ଥାତ୍ ସ୍ୱର୍ଗଲୋକର ସକଳ ଦେବା ଦେବୀ ବୃକ୍ଷର ଫଳ ସଦୃଶ ବିରାଜିତ ଥିବାରୁ, ସେହି ବୃକ୍ଷରେ ଶ୍ରୀଜଗନ୍ନାଥଙ୍କ ଅଙ୍ଗ ସଂରଚନା ମୃତ୍ତିକା, ଶିଳା, ଧାତୁ ଓ ମଣି ଅପେକ୍ଷା ପ୍ରକୃଷ୍ଟତମ ବିବେଚିତ ହୋଇଅଛି । ପୁନଶ୍ଚ ଭାଗବତରେ ଯେଉଁସବୁ ଦେବତାଙ୍କୁ ପ୍ରାଧାନ୍ୟ ଅର୍ପିତ ହୋଇଅଛି, ସେମାନେ ସମସ୍ତ ଶ୍ରୀମନ୍ଦିର ପରିସର ମଧ୍ୟରେ ଉପାସିତ । କେବଳ ସେତିକି ନୁହେଁ ଏକାଦଶ ସ୍କନ୍ଦ ଅଷ୍ଟବିଂଶ ଅଧ୍ୟାୟରେ କବି ଶ୍ରୀଜଗନ୍ନାଥଙ୍କ ପୂଜା ପଦ୍ଧତିକୁ ବିଶଦଭାବେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥଙ୍କର ଶ୍ରୀଚରଣ କମଳରେ ଆଶ୍ରୟ ଲାଭ କରିବା ନିମିତ୍ତ ଆଶାୟୀ ହୋଇ କହିଛନ୍ତି —"ଶ୍ରୀଜଗନ୍ନାଥଙ୍କ ଚରଣେ । ଚିତ୍ତ ମୋ ରହୁ ଅନୁକ୍ଷଣେ ।" ସର୍ବୋପରି ଭାଗବତ ଗ୍ରନ୍ଥର ପରିସମାପ୍ତିରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପ୍ରାର୍ଥନା କରି କହିଛନ୍ତି—"ଚାରି ସହିତେ ଭୁଜବାହୁ । ତୋ ପାଦେ ମୋର ଧ୍ୟାନ ରହୁ ।"

## ଭାଗବତ ଠାକୁର

ସମଗ୍ର ବିଶ୍ୱରେ ସମ୍ପୂଜିତ ବିରାଜିତ ଉପାସ୍ୟମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ ପ୍ରାଚୀନତମ ଓ ସର୍ବାଗ୍ରଗଣ୍ୟ ଦେବତା ହିନ୍ଦୁ ଦର୍ଶନରେ ସେ

ସନାତନ ବା ଭାଗବତଠାକୁର ଲୋକ ସଙ୍ଗତା ଅଭିବନ୍ଦିତ ହୋଇ ଆସିଛନ୍ତି । ଓଡ଼ିଶାରେ ଶ୍ରୀକ୍ଷେତ୍ରସ୍ଥ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ଉପାସିତ ହେବା ସହିତ ପ୍ରତି ଓଡ଼ିଆ ଘରେ ତାଙ୍କର ଉପାସନା ଅବ୍ୟାହତ ରହିଛି । ଓଡ଼ିଶାର ଘରେ ଘରେ ଭାଗବତ ଧର୍ମର ପ୍ରତିଷ୍ଠା ଓ ଘରେ ଘରେ ଭାଗବତ ପୂଜା । ପ୍ରତ୍ୟେକ ଓଡ଼ିଆ ଘରେ ଓ ଓଡ଼ିଶାର ପ୍ରତ୍ୟେକ ଗ୍ରାମର ଭାଗବତ ଟୁଙ୍ଗୀରେ ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି ସ୍ୱରୂପ ପଞ୍ଚସଖ ଧର୍ମର ପ୍ରଧାନ ଧର୍ମଗ୍ରନ୍ଥ ଶ୍ରୀମଦ୍‌ଭାଗବତର ପୋଥିକୁ ଲୋକେ ଗାଦି ଆକାରରେ ସ୍ଥାପନ କରି, ତହିଁରେ ଜଗନ୍ନାଥ ମୂର୍ତ୍ତି କିମ୍ବା ମହାପ୍ରଭୁଙ୍କ ପଟଚିତ୍ର ସଂସ୍ଥାପନପୂର୍ବକ ତାହାକୁ ଭାଗବତ ଗୋସେଇଁ ବା ବାସୁଦେବ ନାମରେ ପୂଜାର୍ଚ୍ଚନା କରିଥାନ୍ତି । ଚତୁର୍ବ୍ୟୂହଙ୍କ ପ୍ରତିଭୂ ରୂପରେ କେଉଁଠାରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ପଟଚିତ୍ର ଆରାଧିତ ତ ଅନ୍ୟ କେଉଁଠାରେ ଶ୍ରୀଜଗନ୍ନାଥଙ୍କର ଏକକ ପ୍ରତିକୃତି ପତିତପାବନ ରୂପେ ଜଗନ୍ନାଥ ମୂର୍ତ୍ତି ଉପାସିତ ।

ପୁନଶ୍ଚ ଅନ୍ୟ କେତେକଙ୍କଠାରେ ଭାଗବତ ବାସୁଦେବ, ଅନନ୍ତ ବାସୁଦେବ ଓ ଭୁବନେଶ୍ୱରୀଙ୍କ ତ୍ରିମୂର୍ତ୍ତି ମଧ୍ୟ ଉପାସିତ ହୋଇଛନ୍ତି । ଏହାହିଁ ଥିଲା ଓଡ଼ିଶାରେ ପ୍ରଚଳିତ ପଞ୍ଚସଖ ଧର୍ମର ବାସୁଦେବ ଉପାସନାର ବଳିଷ୍ଠ ପରମ୍ପରା । ଅତୀତ ଓଡ଼ିଶାରେ ଏପରି ଗ୍ରାମ ନଥିଲା, ଯେଉଁଠାରେ କି ଭାଗବତ ଠାକୁରଙ୍କ ଉପାସନା ପ୍ରଚଳିତ ନଥିଲା । ସେ ଠାକୁର ଭାଗବତ ପୋଥି ହେଉ କି ସୋଲ ନିର୍ମିତ ଜଗନ୍ନାଥ ମୁଖାପଟି ହେଉ ଅଥବା ମହାପ୍ରଭୁଙ୍କ ଦାରବ ବିଗ୍ରହ ହେଉ । ସରଳ ଧର୍ମପ୍ରାଣ ଓଡ଼ିଆ ଭାଗବତ ଗୋସେଇଁଙ୍କୁ ସ୍ୱୟଂ ଭଗବାନଙ୍କ ଉପସ୍ଥିତି ବୋଲି ବିଶ୍ୱାସ କରୁଥିଲା । ସାମ୍ପ୍ରତିକ ଯୁଗର ପରିବର୍ତ୍ତିତ ସମୟ ପରିପ୍ରେକ୍ଷୀରେ ଓଡ଼ିଶାବାସୀଙ୍କ ହୃଦୟ କନ୍ଦରରେ ସେ ଭାଗବତ ଠାକୁର ଆସନପାତି ବସିଛନ୍ତି; ଏହା ଅନସ୍ୱୀକାର୍ଯ୍ୟ ।

## ଭାଗବତ ଗାଦି

ଜଗନ୍ନାଥ ଦାସଙ୍କ ସାରସ୍ୱତ କୋଣାର୍କ ତାଙ୍କ ଜୀବଦ୍ଦଶାରେ ମୂର୍ତ୍ତିମନ୍ତ ନଥିଲା । ସେ ଭାଗବତର ତ୍ରୟୋଦଶ ସ୍କନ୍ଧ ପର୍ଯ୍ୟନ୍ତ ରଚନା କରିଥିଲେ ବୋଲି ସାଧାରଣରେ ବିଶ୍ୱାସ ରହିଆସିଛି । ମାତ୍ର ସେ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ୩୨୦ ଅଧ୍ୟାୟ ଭାଗବତକୁ ବାରଖଣ୍ଡରେ ପରିଣତ କରିଥିଲେ;

ଯାହାର ଉପାମସ୍ତ ଗୋପଲୀଳା ଓ ମଥୁରଲୀଳା ନାମରେ ଦୁଇଖଣ୍ଡ ବିଶିଷ୍ଟ ଅଟେ । ପରବର୍ତ୍ତୀ ସମୟରେ ମହାଦେବ ଦାସ ଭାଗବତର ଦ୍ୱାଦଶ ଓ ତ୍ରୟୋଦଶ ସ୍କନ୍ଧ ରଚନା କରି (୭୦) ଜଗନ୍ନାଥ ଦାସଙ୍କ ସାରସ୍ୱତ କୃତିକୁ ପୂର୍ଣ୍ଣାଙ୍ଗ ରୂପ ପ୍ରଦାନ କରିଥିଲେ । ଏତଦ୍‌ବ୍ୟତୀତ ବିପ୍ର ମହାଦେବ ଦାସଙ୍କ ରଚିତ ତଥା ଜଗନ୍ନାଥ ଦାସଙ୍କ ନାମରେ ଲିଖିତ (୭୧) ଦ୍ୱାଦଶ ସ୍କନ୍ଧ ସହିତ ଦ୍ୱାରକାନାଥ ଦାସଙ୍କ ପ୍ରଣିତ ୧୩ ଅଧ୍ୟାୟବିଶିଷ୍ଟ ତ୍ରୟୋଦଶ ସ୍କନ୍ଧ ଭାଗବତ ଦୃଷ୍ଟିଗୋଚର ହୁଏ ।

ଭାଗବତ ପଠନର ସୁବିଧା ନିମିତ୍ତ ତତ୍କାଳୀନ ଲୋକେ ତାଳ-ପତ୍ରରେ ଭାଗବତ ଉତ୍ତାରିବାକୁ ପରମ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ଫଳରେ ଭାଗବତର ଅନୁଲିପି (Copy) ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବା ହେତୁ ସମସ୍ତଙ୍କ ପକ୍ଷେ ଏହାର ଅଧ୍ୟୟନ ସୁଲଭ ହେଲା । ଏହାଦ୍ୱାରା ପ୍ରତି ଘରେ ଘରେ ଭାଗବତ ଗାଦି ଗଢ଼ି ଉଠିଲା । ଓଡ଼ିଆ ଘରେ ଅନ୍ୟ କିଛି ପୋଥି ନଥାଉ ପଛେ ଅନ୍ୟୂନ ଭାଗବତ ପୋଥି ଖଣ୍ଡିଏ ଉପାସନା ନିମିତ୍ତ ବିଦ୍ୟମାନ ଥିଲା । ଓଡ଼ିଆର ସାରସ୍ୱତ ସୃଜନ ପ୍ରବୃତ୍ତି ଭଗବତ ନଙ୍କ ଦ୍ୱାରା ଅନୁବନ୍ଧିତ ହୋଇ ଓଡ଼ିଆଙ୍କୁ ଅନେକ ପୋଥି ଲେଖିବା ପାଇଁ ପ୍ରେରଣା ଯୋଗାଇଥିଲା । ପୁନଶ୍ଚ ସେ ସଂଗ୍ରହ ମନୋବୃତ୍ତି ପୋଷଣ ପୂର୍ବକ ଅନେକ ପୋଥି ସଂଗ୍ରହ କରି ଭାଗବତ ପୋଥି ସହିତ ଘରର ଗୋଟିଏ କୋଣରେ ମାଟିର ପିଣ୍ଡି ବା କାଷ୍ଠାସନ ଉପରେ ଉପସ୍ଥାପିତ କରି ଉକ୍ତ ଅମୂଲ୍ୟ ସାରସ୍ୱତ ବିଭବଗୁଡ଼ିକୁ ସଭକ୍ତି ଉପାସନା କରିବାକୁ ପରମ କର୍ତ୍ତବ୍ୟ ବୋଲି ମନେ କରୁଥିଲା । ଖଟୁଲି ଉପରେ ବିଭିନ୍ନ ପୋଥି ଯଥା—ଭାଗବତ, କାର୍ତ୍ତିକ ମହାତ୍ମ୍ୟ, ଦଶ୍ୟଚାଭକ୍ତି ସହିତ ଅନେକ ପୁରାଣ, ସ୍ତୁତି, ମେଳା, ପାଳି, ଓଷାବ୍ରତ ଚଉତିଶ ବର୍ଣ୍ଣିତ ପୋଥି ସମୂହ ସମାବିଷ୍ଟ ହୋଇଥିଲେ ହେଁ ତାହା ସାଧାରଣତଃ 'ଭାଗବତ ଗାଦି' ନାମରେ ନାମକରଣ ହୋଇଛି । କେବଳ ଏହି କାରଣରୁ ଭାଗବତ ଏକମାତ୍ର ଗ୍ରନ୍ଥ, ଯାହାକୁ ଓଡ଼ିଆମାନେ ଦେବତାଙ୍କପରେ ପୂଜା କରି ଆସୁଛନ୍ତି ।

---

(୭୦) ସୂର୍ଯ୍ୟନାରାୟଣ ଦାସ—ଓଡ଼ିଆ ସାହିତ୍ୟର ଇତିହାସ, ପ୍ରଥମଭାଗ, ପୃ-୪୮୯ରୁ ।

(୭୧) ଭାଗବତ ଦ୍ୱାଦଶସ୍କନ୍ଧ -- ପ୍ରଥମ ଅଧ୍ୟାୟ ।

ଓଡ଼ିଆ ଭାଗବତକୁ ଭଗବତ ସ୍ୱରୂପ ପୂଜା କରିବା ସହିତ ଭାଗବତ ଗାଦିକୁ ମଧ୍ୟ ବିଷ୍ଣୁ କ୍ଷନରେ ମାନ୍ୟତା ପ୍ରଦର୍ଶନ କରିଥାନ୍ତି । ଭାଗବତ ପୋଥି ଅବସ୍ଥାପିତ ଭାଗବତଗାଦିକୁ ଓଡ଼ିଆ ପୂଜାକରି ଭୋଗ ଲଗାଏ, ସନ୍ଧ୍ୟା-ବେଳେ ଆରତି କରେ । ଅନ୍ୟାନ୍ୟ ଠାକୁରଙ୍କୁ ପୂଜା କରିବା ସମୟରେ ଯେଉଁ ବିଧି ଆଚରଣ ହୋଇଥାଏ, ଭାଗବତ ପୁରାଣକୁ ପୂଜା କରିବାବେଳେ ସେଥିରୁ କିଛିମାତ୍ର ବାଦ୍ ପଡ଼େନାହିଁ । ଓଡ଼ିଶାର ଭାଗବତ ଗାଦିଗୁଡ଼ିକ ଧର୍ମପୀଠ ରୂପେ ଭକ୍ତିପ୍ରାଣମାନଙ୍କର ଧର୍ମଧାରଣାକୁ ପରିଚ୍ଛନ୍ନ କରିବା ସଙ୍ଗେ ସଙ୍ଗେ ଶାସ୍ତ୍ର-ସାହିତ୍ୟ ଆଲୋଚନାର ପ୍ରକୃଷ୍ଟ ସହାୟତା କରି ବହୁଶ୍ରଦ୍ଧାଳୁ ପାଠକ ତଥା ଧର୍ମପ୍ରାଣ ଶ୍ରୋତୃବର୍ଗଙ୍କୁ ଯୁଗପତ ଅନୁପ୍ରାଣିତ କରିଆସୁଅଛି । ମାତ୍ର ସମ୍ପ୍ରତି ଏହା ଏକ ଅନ୍ତଃସାରଶୂନ୍ୟ ଅନୁଷ୍ଠାନରେ ପରିଣତ ହୋଇଥିଲେ ମଧ୍ୟ ଭାଗବତ ଗୋସାଇଁଙ୍କ ପ୍ରତି ଓଡ଼ିଆର ବିଶ୍ୱାସ ଅଦ୍ୟାବଧି ଅତୁଟ ରହିଅଛି ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପୂଜିଲେ ଯେଉଁ ପୁଣ୍ୟ ମିଳିଥାଏ, ଭାଗବତଗାଦିକୁ ପୂଜା କଲେ ଠିକ୍ ସେହି ଫଳ ମିଳିଥାଏ । ଏତାଦୃଶ ଲୋକ ବିଶ୍ୱାସ ଅଦ୍ୟାବଧି ଓଡ଼ିଶାର ପୁରପଲ୍ଲୀରେ ବଳବତ୍ତର ରହିଅଛି । କାହା-ଘରେ କେହି ବାଧିକ ପଡ଼ିଲେ, କାହାର ଗାଈ ଛୁଟିକା ହେଲେ, କାହାର କୌଣସି ମୂଲ୍ୟବାନ ବସ୍ତୁ କିଛି ନ ମିଳିଲେ, ଗାଈ ଗୋଠକୁ ଯାଇ ଆଉ ନ ଫେରିଲେ, ଘରୁ ରୁଷି ପଳାଇଥିବା ବ୍ୟକ୍ତିକୁ ଖୋଜି ନପାଇଲେ ଓଡ଼ିଆ ଭାଗବତ ଗୋସାଇଁଙ୍କୁ ମାନସିକ କରି ଅଭୀଷ୍ଟ ପୂର୍ତ୍ତି ଉଦ୍ଦେଶ୍ୟରେ ଭୋଗ-ଲଗାଇ ଥାଏ । ଓଡ଼ିଆ ଘରେ ନୂଆ ବାସନ କିଣାଯିବା ପରେ ସେଥିରେ ଭୋଗଦେଇ ଭାଗବତ ଠାକୁରଙ୍କୁ ଲାଗି କଲା ପରେ ଓଡ଼ିଆ ସେ ବାସନ ବ୍ୟବହାର କରିଥାଏ । ବାଡ଼ିରେ ଫଳଟିଏ ନୂଆ ହୋଇ ଫଳିଲେ ପ୍ରଥମ ଫଳଟି ଭାଗବତ ଗୋସାଇଁଙ୍କୁ ଉତ୍ସର୍ଗ କରିଥାଏ । ଗାଈ ଜନ୍ମ କରିବା ପରେ ଓଡ଼ିଆ କ୍ଷୀର ବ୍ୟବହାର ପୂର୍ବରୁ ପ୍ରଥମେ କ୍ଷୀର ଭାଗବତ ଠାକୁରଙ୍କୁ ଭୋଗ ଲଗାଇଥାଏ । ନୂଆଲୁଗା କିଣି ପରିଧାନ ପୂର୍ବରୁ ମଧ୍ୟ ଭାଗବତ ଗୋସାଇଁଙ୍କୁ ତାହାଂ ଲାଗି କରିଥାଏ । ଅତଏବ ଭାଗବତ ଗାଦି ଗୋସାଇଁ ଓଡ଼ିଆର ସରଳ ବିଶ୍ୱାସର ମୂର୍ତ୍ତିମନ୍ତ ପ୍ରତୀକ ।

## ଭାଗବତ ଘର :

ଜଗନ୍ନାଥ ଦାସଙ୍କ କର୍ତ୍ତୃକ ଓଡ଼ିଆରେ ଭାଗବତ ରଚିତ ହେବା-ପରେ ଓଡ଼ିଶାରେ ଆନଗର ଜନପଦ ସର୍ବତ୍ର ଏହାର ଦ୍ରୁତ ପ୍ରସାର ଘଟିଲା । ପ୍ରାଥମିକ ଶିକ୍ଷାଲାଭ ପାଇଁ ହେଉ ଅଥବା ପିତାମାତାଙ୍କ ମୁକ୍ତି ପ୍ରୟାସରେ ହେଉ ତାଳପତ୍ର ଲିଖିତ ଭାଗବତ ପୋଥି ସର୍ବାଧିକ ପରିମାଣରେ ଆତ୍ମପ୍ରକାଶ କଲା । ମୁଦ୍ରଣ ଯନ୍ତ୍ରର ପ୍ରଚଳନ ପରେ ମଧ୍ୟ ଅନ୍ୟ ବହି ତୁଳନାରେ ଓଡ଼ିଆ ଭାଗବତ ଅଧିକ ସଂଖ୍ୟାରେ ମୁଦ୍ରିତ ହୋଇ ବହୁ ଜନାଦୃତ ହେଲା । ଓଡ଼ିଆଘରେ ଅନ୍ୟ କୌଣସି ବହି ହୁଏତ ନଥାଇ ପାରେ, ମାତ୍ର ଭାଗବତ ଖଣ୍ଡେ ନିଶ୍ଚୟ ମିଳିବ । ଓଡ଼ିଶାରେ ଏପରି କୌଣସି ପ୍ରବୀଣ ଲୋକ ନଥିବେ ଯେ ଅଧ୍ୟାୟେ ଭାଗବତ ପାଠ କରି ନଥିବେ କିମ୍ବା ଭାଗବତର ଗୋଟାଏ ଦୁଇଟା ପଂକ୍ତି ମୁଖସ୍ଥ କରି ନଥିବେ । ଏଥିରୁ ଭାଗବତର ଲୋକପ୍ରିୟତା ସହଜରେ ବୋଧଗମ୍ୟ ।

ଭାଗବତ ସଦୃଶ ଅନ୍ୟ କୌଣସି ଓଡ଼ିଆ ସାହିତ୍ୟ ଅନୁରୂପ ଲୋକପ୍ରିୟତା ଅର୍ଜନ କରିପାରି ନାହିଁ । ଓଡ଼ିଶାରେ ଭାଗବତର ଲୋକପ୍ରିୟତାର ଅନ୍ୟତମ ବଳିଷ୍ଠ କାରଣ ହେଉଛି, ଏହା ବ୍ରାହ୍ମଣ-ଶୂଦ୍ର ନିର୍ବିଶେଷରେ ପାଠ କରିବା ବା ଶ୍ରବଣ କରିବା ନିମିତ୍ତ କୌଣସି ପ୍ରତିବନ୍ଧକ ନଥିଲା । ତେଣୁ ଏହି ପରମଶାସ୍ତ୍ର ଯଥାର୍ଥରେ ଓଡ଼ିଶାର ଲୋକସାହିତ୍ୟ । ଓଡ଼ିଆଙ୍କ ପାଇଁ ଶ୍ରୀଜଗନ୍ନାଥ ଯେପରି ଗଣଦେବତା, ସେହିପରି ଓଡ଼ିଆ ଭାଗବତ ଗଣସାହିତ୍ୟ ମଧ୍ୟ । ଶ୍ରୀଜଗନ୍ନାଥଙ୍କ ପରେ ଓଡ଼ିଆ ସମାଜରେ ଯଦି ସମ୍ମାନାସ୍ପଦ ବୋଲି ଆଉ କିଛି ଥାଏ, ତେବେ ତାହା ହେଉଛି ଓଡ଼ିଆ ଭାଗବତ । ଭାଗବତ ଏକମାତ୍ର ଗ୍ରନ୍ଥ ଯାହାକୁ ଓଡ଼ିଆ ଦେବତା ସ୍ଥାନରେ ପୂଜା କରିଥାଏ ।

ଭାଗବତକୁ ଉପଜୀବ୍ୟ କରି ଗ୍ରାମୀଣ ସଂସ୍କୃତିର ପ୍ରଧାନ କେନ୍ଦ୍ର ରୂପେ ଓଡ଼ିଶାର ପ୍ରତିପଲ୍ଲୀରେ 'ଭାଗବତ ଘର' ନାମରେ ଅନୁଷ୍ଠାନମାନ ଗଢ଼ି ଉଠିଥିଲା । ଜଗନ୍ନାଥ ଦାସ କୃତ ଭାଗବତ ଓଡ଼ିଆ ପ୍ରାଣକୁ ଏପରି ଆଲୋଡ଼ିତ କରିଥିଲା ଯେ ପ୍ରତି ଗ୍ରାମରେ ଭାଗବତ ପୋଥି ଉପାସନା ଓ ପଠନ ନିମିତ୍ତ ଭାଗବତ ଘର ନାମରେ ଏକ ସାମାଜିକ ଅନୁଷ୍ଠାନ ତଥା ସାଂସ୍କୃତିକ ପୀଠ ଜନ୍ମଲାଭ କଲା । ଭାଗବତ ଘର ବଡ଼ ପବିତ୍ର ସ୍ଥାନ

ବୋଲି ଓଡ଼ିଆର ଧର୍ମମୂଳକ ବିଶ୍ୱାସ । ସ୍କୁଲ ଇନସ୍ପେକ୍ଟର ଭୂଦେବ ମୁଖାର୍ଜୀ ଏହି ପରିପ୍ରେକ୍ଷୀରେ ଯଥାର୍ଥ ମନ୍ତବ୍ୟ ଦେଇ କହିଥିଲେ—"ଓଡ଼ିଶାରେ ଏପରି କୌଣସି ସ୍ୱଳ୍ପ ଗ୍ରାମ ନାହିଁ, ଯେଉଁଠି ଜଗନ୍ନାଥ ଦାସଙ୍କ ଭାଗବତ ରକ୍ଷିତ ଓ ନିତ୍ୟ ପଠିତ ହୁଏ ନାହିଁ ।" କେବଳ ଓଡ଼ିଶା ନାହିଁ ଓଡ଼ିଶା ବାହାରେ ଯେଉଁଠାରେ ଓଡ଼ିଆ ଅବସ୍ଥାନ କରନ୍ତି; ସେଠାରେ ଭାଗବତ ଘର ପ୍ରତିଷ୍ଠିତ ହେବା ସହିତ ଭାଗବତର ଭକ୍ତି ପଦ ଯଥା—"କହନ୍ତି ଜଗନ୍ନାଥ ଦାସ"ର ଧ୍ୱନି ନିସ୍ପୃତ ଉଠିଛି । ଅତଏବ ଭାଗବତ ପଠନ ତଥା ପୂଜନର ମେଳ ସ୍ଥଳ ରୂପେ ଏହି ଅନୁଷ୍ଠାନ ମୁଣ୍ଡ ଟେକିଛି । ମାଟି ତିଆରି ନଡ଼ାଛପର ଏକ ଭାଗବତ ଘରକୁ ଅନେକ ହରିହାଟ ଘର, ଠାକୁର ଘର ବା ଭାଗବତ ଟୁଙ୍ଗୀ ନାମରେ ଅଭିହିତ କରିଥାନ୍ତି । ଏଠାରେ ପ୍ରତ୍ୟହ ଭାଗବତ ପୋଥି ପୂଜା, ଭାଗବତ ପାରାୟଣ, ଭାଗବତ ପାଠ ଓ ପର୍ବପର୍ବାଣୀରେ ଶୁଖିଲା ଭୋଗ ମଧ୍ୟ ଲାଗି ହୋଇଥାଏ ।

ଓଡ଼ିଆ ଜାତିର ଆଧ୍ୟାତ୍ମିକ ଚେତନାର କେନ୍ଦ୍ରସ୍ଥଳୀ ଆଲୋଚ୍ୟ ଭାଗବତ ଘର ହିନ୍ଦୁ ଜାତୀୟ ମଣ୍ଡପ ଓ ଉଲ୍ଲେଖଯୋଗ୍ୟ ଭାବେ କହିଲେ । ଗାଁ ଭାଗବତ ଟୁଙ୍ଗୀ ସରଳପ୍ରାଣ ପଲ୍ଲୀବାସୀ ଓଡ଼ିଆଙ୍କର ସାନ୍ଧ୍ୟ ମିଳନସ୍ଥଳୀ । ପ୍ରତି ସନ୍ଧ୍ୟାରେ ଭାଗବତ ଘରେ ଆରତି ଘଣ୍ଟା ବାଜିବା ଅବସରରେ ଗାଁରେ ସନ୍ଧ୍ୟା ନାମି ଆସେ । ତତ୍ପରେ ସେଠାରେ ଆଶା ଆନନ୍ଦ-ବିଶ୍ୱାସର ପୋଲଙ୍ଗ ତେଲ ପ୍ରଦୀପ ଜଳି ଉଠେ । କର୍ମବ୍ୟସ୍ତ ମାନବ ଦିବାବସାନ ର ସମବେତ ସମ୍ମିଳନରେ ଭାଗବତ ପାଠ ହୁଏ । ଭାଗବତ ପାଠଦ୍ୱାରା ଲୋକଙ୍କ ମନରେ ଧର୍ମବିଶ୍ୱାସ ଦୃଢ଼ୀଭୂତ ହୋଇଥାଏ । ତତ୍କାଳୀନ ଲୋକମାନଙ୍କର ପାପକାର୍ଯ୍ୟ ପ୍ରତି ବିଶେଷ ଭୟ ଥିଲା । ଭାଗବତ ପାଠଦ୍ୱାରା ଲୋକେ ଅନେକ ପାପ କାର୍ଯ୍ୟରୁ ବିରତ ହେଉଥିଲେ । ଭାଗବତର ଅମୃତ ପଦାବଳୀ ଶ୍ରବଣରେ ବିମୋହିତ ହୋଇ ଶ୍ରୋତା ପାଳିକରିବା ମାଧ୍ୟମରେ ସ୍ୱୀୟ ଶୀଘ୍ର ଅନୁମୋଦନ କରିଥାନ୍ତି । କେବେ କେବେ ଭାଗବତର ଗୂଢ଼ତତ୍ତ୍ୱ ଆଲୋଚନା ସହିତ ଭଜନ କୀର୍ତ୍ତନ ମଧ୍ୟ ହୋଇଥାଏ । କାହାର ମାନସିକ ଥିଲେ ଶେଷରେ ଭୋଗ କରାଯାଏ । ନଚେତ୍ ଔପଚାରିକତା ରକ୍ଷାପୂର୍ବକ ପରମେଶ୍ୱରଙ୍କ ଭୋଗ କରାଯାଇ ପ୍ରସାଦ ବଣ୍ଟନ ପରେ ପ୍ରତ୍ୟେକ ଗୃହ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

ଭାଗବତ ପଠନ ପରେ ଗ୍ରାମର ମୁଖିଆ ସମ୍ଭ୍ରାନ୍ତ ପରିବେଷ୍ଟନୀ କହିବା ସହିତ ଗ୍ରାମ ତଥା ପଡ଼ୋଶୀ ଗ୍ରାମର ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରୁଥାନ୍ତି । ଆବଶ୍ୟକ ସ୍ଥଳେ ଭାଇ ଭାଇ ମଧ୍ୟରେ ପୃଥକ ହେବା, ଜମିଜମା ଗଣ୍ଡଗୋଳ ସଂକ୍ରାନ୍ତ ବିଭିନ୍ନ ଗ୍ରାମୀଣ ସମସ୍ୟା ନିଷ୍ପତ୍ତି ମାଧ୍ୟମରେ ସମାଧାନ ହୋଇଥାଏ । ତତ୍କାଳରେ ସରଳ ଗ୍ରାମବାସୀ ମାନେ କୋର୍ଟ କଚେରୀକୁ ଦୌଡ଼ୁ ନଥିଲେ କିମ୍ବା ଓକିଲ/କିରାଣୀ/ ଦଲାଲଙ୍କ ଶିକାର ହେଉ ନଥିଲେ । ଭାଗବତଗାଦି ଦେଖିଲକ୍ଷଣି କିମ୍ବା ଭାଗବତ ଘରେ ପ୍ରବେଶ କଲାମାତ୍ରେ ଦୋଷୀ ସ୍ୱତଃ ତା'ର ଦୋଷ ସ୍ୱୀକାର କରୁଥିଲା । ଶେଷରେ ତା'ର ବିଚାର କରାଯାଇ ପ୍ରୟୋଜନ ଅନୁସାରେ ଅର୍ଥଦଣ୍ଡ/ଲଘୁ ଶାରୀରିକ ଦଣ୍ଡ କିମ୍ବା ଉଭୟ ଦଣ୍ଡରେ ଦୋଷୀକୁ ଦଣ୍ଡିତ କରାଯାଉଥିଲା । ଗାଁ ଗାଁ ମଧ୍ୟରେ ଉପୁଜିଥିବା ବିବାଦ ମଧ୍ୟ ବିଭିନ୍ନ ଗ୍ରାମପଞ୍ଚଙ୍କ ବିଚାରରେ ମୀମାଂସା କରାଯାଉ ଥିଲା ।

ତଦାନୀନ୍ତନ ଦରିଦ୍ର ଅଧିକାଂଶ ମାମଲାଖୋର ବ୍ୟକ୍ତି ମକଦ୍ଦମାରେ ସର୍ବସ୍ୱାନ୍ତ ହୋଇ ଯେତେବେଳେ ଆପୋଷ ମିଳାମିଶା ପାଇଁ ସମ୍ମତି ପ୍ରକାଶ କରୁଥିଲେ, ସେତେବେଳେ ଉଭୟ ପକ୍ଷଙ୍କର ମନୋନୀତ ପଞ୍ଚାୟତ ଏହି ଭାଗବତ ଟୁଙ୍ଗିରେ ବସି ସତ୍ୟାସତ୍ୟ ଉଦ୍‌ଘାଟନପୂର୍ବକ ସେମାନଙ୍କ ସମସ୍ୟା ସମାଧାନ କରୁଥିଲେ । ନ୍ୟାୟ ପୂର୍ବରୁ ବାଦୀ ଓ ପ୍ରତିବାଦୀମାନେ ସତ୍ୟ ବ୍ୟାଖ୍ୟାନ ନିମିତ୍ତ ଭାଗବତ ପୋଥି ଛୁଇଁ ଶପଥପାଠ କରୁଥିଲେ । ସେହି ପଦ୍ଧତି ସାମ୍ପ୍ରତିକ ବିଚାରାଳୟମାନଙ୍କରେ ମଧ୍ୟ ଅନୁସୃତ ହେଉଅଛି ।

ପଞ୍ଚାୟତ ବସି ଯାହା ନିଷ୍ପତ୍ତି କରୁଥିଲେ, ତାହା ଉଭୟ ପକ୍ଷ ଅଙ୍ଗୀକାର କରିବା ସହିତ ଏହି ଭାଗବତ ଘରେ ଭୋଜଭାତ କରି ମନୋମାଳିନ୍ୟ ଦୂର କରୁଥିଲେ । ପଞ୍ଚାୟତର ଫଇସଲ ରାଜିନାମା ଆକାରରେ ଥାନା ତଥା ବିଚାରାଳୟରେ ଉପସ୍ଥାପନ କରାଯାଇ ମୋକଦ୍ଦମା ଉଠାଇ ଆଣିବାର ବ୍ୟବସ୍ଥା ହେଉଥିଲା । ଅତଏବ ସମସ୍ତ ବାଦବିସମ୍ବାଦର ନିର୍ବାପକ ତଥା ଗ୍ରାମ୍ୟ ସଂହତିର ଅପ୍ରତିହତ ପ୍ରତୀକ ଉକ୍ତ ଭାଗବତ ଘର ଏକଦା ଗାଁ ଗହଳିର ମୁଖ୍ୟ ବିଚାରାଳୟ ଭୂମିକା ନିର୍ବାହ କରୁଥିଲା । ଓଡ଼ିଶାର ଏହି ଭାଗବତ ଘର ହିଁ ଆଧୁନିକ ଗ୍ରାମ ପଞ୍ଚାୟତର ଜନ୍ମଦାତା ।

ଏହା ଭାଗବତ ଘର ଗ୍ରାମ୍ୟ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଦିନରେ ଗାଁର ଶ୍ରେଷ୍ଠ ଶ୍ରେଷ୍ଠ ପିଲମାନେ ମାଟିବଂଶ ଅବଧାନ୍ ପାଖେ ଏଇଠି ପାଠ ପଢ଼ୁଥିଲେ । ପୁରୁଣାକାଳିଆ ଭାଗବତ ଘର ଗ୍ରାମର ଗୋଟିଏ ପ୍ରଧାନ ଶିକ୍ଷାମନ୍ଦିର ମଧ୍ୟ ଥିଲା ଏବଂ ସାମ୍ପ୍ରତିକ ସ୍କୁଲ କଲେଜ ଅପେକ୍ଷା ବିଶେଷ ଉପକାର ମଧ୍ୟ କରୁଥିଲା । ତତ୍କାଳରେ ଗାଁକୁ କେହି ଅତିଥି ଅଭ୍ୟାଗତ ଆସିଲେ, ସେମାନଙ୍କ ରହଣିର ବ୍ୟବସ୍ଥା ଏହିଠାରେ ହିଁ କରାଯାଉଥିଲା । ଗ୍ରାମବାସୀମାନେ ସେମାନଙ୍କ ପରିଚର୍ଯ୍ୟାର ପ୍ରବନ୍ଧ ଏହିଠାରେ ହିଁ କରୁଥିଲେ । ସମଗ୍ର ଭାରତବର୍ଷରେ ଏତାଦୃଶ ଅତିଥେୟ-ତାର ନିଦର୍ଶନ ସମ୍ପୂର୍ଣ୍ଣ ବିରଳ ।

ପ୍ରାଚୀନ ଉତ୍କଳର ଏହି ଭାଗବତ ଘର ଥିଲା ଗାଁ ପୋଥିଘର, ସଙ୍ଗୀତ ପୀଠ, ଭଜନ କୀର୍ତ୍ତନର କେନ୍ଦ୍ରସ୍ଥଳ, ଅବସର ବିନୋଦନ କେନ୍ଦ୍ର ତଥା ଗଞ୍ଜିଳ କ୍ଲବ ଇତ୍ୟାଦି ସବୁକିଛି । ପୁନଶ୍ଚ ଏହା ଅନୁଷ୍ଠାନ ଗ୍ରାମ୍ୟ ବିଦ୍ୟାଳୟ, ଗ୍ରାମ୍ୟ ପୁସ୍ତକାଳୟ, ଗ୍ରାମ୍ୟ ସଦ୍‌ଘର, ଗ୍ରାମ ଅଦାଲତ, ନୈଶବିଦ୍ୟାଳୟ, ସମବାୟ ସମିତି ତଥା ଅତିଥିଶାଳା ପ୍ରଭୃତି ବହୁବିଧ ଉଦ୍ଦେଶ୍ୟ ସାଧନ ନିମିତ୍ତ ଉଦ୍ଦିଷ୍ଟ ଥିଲା । ପୁନଶ୍ଚ ଭାଗବତ ଘର ଥିଲା ସାଂସ୍କୃତିକ କେନ୍ଦ୍ର । ଗାଁକୁ ଦାଣ୍ଡ ନାଟ, ପାଲା, ଦାସକାଠିଆ ପ୍ରଭୃତି ଲୋକନୃତ୍ୟକାରୀ ଦଳ ଆସିଲେ ସେମାନେ ଏହି ଘରେ ଅବସ୍ଥାନ କରୁଥିଲେ । ସଦ୍ୟୋପଚ୍ଚ କାହାରି ଘରକୁ କୁଣିଆ ଆସିଲେ ଯଦି ତା'ର ଘରେ ରହିବା ନିମିତ୍ତ ପର୍ଯ୍ୟାପ୍ତ ସୁବିଧା ନଥାଏ, ତେବେ ସେମାନେ ମଧ୍ୟ ଏହିଠାରେ ରହିଥାନ୍ତି । ମୁଖ୍ୟତଃ ଭାଗବତ ଘର ହେଉଛି ଗ୍ରାମର କୋଠଘର । ଏ ଘର ସମସ୍ତ ଗ୍ରାମବାସୀଙ୍କର । ଏ ଘରେ ସମସ୍ତଙ୍କର ସମାନ ଅଧିକାର । ଘରର ଛପର ବନ୍ଦ କରିବା ନିମିତ୍ତ ସମସ୍ତେ ଟୋକେଇ (ପାଞ୍ଚବିଡ଼ା) ନଡ଼ା ଓ ଖଣ୍ଡେ ଲେଖାଏଁ ବାଉଁଶ ଚାନ୍ଦା ହିସାବରେ ଦେଇ, ସମସ୍ତେ ପରିଶ୍ରମ କରି ଘରକୁ ଛପର କରିଥାନ୍ତି ।

ଭାଗବତ ଘରକୁ କେନ୍ଦ୍ର କରି ପ୍ରତି ଗାଁରେ ଏକ ଏକ ପାଣ୍ଠି ମଧ୍ୟ ଗଢ଼ି ଉଠି ଥିଲା । ନ୍ୟାୟ ବିଚାରରୁ ଦୋଷୀ ଠାରୁ ଆଦାୟ କରାଯାଇଥିବା ଅର୍ଥ, କୋଠ ଗଛ ମାଛରୁ ପ୍ରାପ୍ତ ଟଙ୍କା ଓ ଗ୍ରାମବାସୀମାନଙ୍କ ଦ୍ୱାରା ପ୍ରଦତ୍ତ ଚାନ୍ଦା ଫଳରେ ଭାଗବତ ଗୋସେଇଁଙ୍କର ଏହି ସ୍ୱତନ୍ତ୍ର ପାଣ୍ଠି ଗଠନ

କରାଯାଇଥାଏ । ଏହି ପାଣ୍ଠିରୁ ଗ୍ରାମବାସୀମାନେ ଅଭାବ ଅସୁବିଧାରେ କରଜ ନେଇ ପରେ ସୁବିଧା ଅନୁସାରେ ସମୂଳ ସୁଧ ପରିଶୋଧ କରିଥାନ୍ତି । ସମସ୍ତଙ୍କ ହିତ ଉଦ୍ଦେଶ୍ୟରେ ଏହି ସଞ୍ଚିତ ଅର୍ଥ ବିନିଯୁକ୍ତ ହେବା ସଙ୍ଗେ ସଙ୍ଗେ ଗ୍ରାମବାସୀମାନେ ଅର୍ଥଲୋଲୁପୀ ମହାଜନଙ୍କ ଶୋଷଣରୁ ରକ୍ଷା ମଧ୍ୟ ପାଉଥାନ୍ତି । ଓଡ଼ିଶାର ଏହି ଭାଗବତ ଘରର ବହୁମୁଖୀ ଭୂମିକାରେ ପ୍ରଲୁବ୍ଧ ହୋଇ ଭାଗବତ ଘର ଗୁମ୍ଫାରେ ଅନୁପ୍ରେରିତ ହୋଇ ଶଙ୍କରଦେବ ଆସାମରେ 'ନାମଘର' ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କରି ସୁଫଳ ମଧ୍ୟ ପାଇଥିଲେ ।

'ଓଡ଼ିଆ ଭାଗବତର ସର୍ବକାଳୀନ ମୂଲ୍ୟବୋଧ ପରିପ୍ରେକ୍ଷୀରେ ଆମ ସଂସ୍କୃତି ସୁରକ୍ଷାର ଅଭିନ୍ନ ଉପକ୍ରମ ହେଉଛି 'ଭାଗବତ ଘର' । ଭାଗବତ ଘରର ଭାଗବତ ପାଠ, ନାମ ସଂକୀର୍ତ୍ତନ, ନ୍ୟାୟ ନିଶାପ, ଅର୍ଥନୀତି ଓ ବୋଲକାରୀ ପ୍ରଭୃତିର ଉପାଦେୟତା ହୃଦୟଙ୍ଗମ କରି ସାମ୍ପ୍ରତିକ ସରକାର ପ୍ରତି ଗ୍ରାମରେ ଭାଗବତ ଘର ପୁନଃ ପ୍ରତିଷ୍ଠା ନିମିତ୍ତ ଯେଉଁ ଯୋଜନା ପ୍ରସ୍ତୁତ କରୁଛନ୍ତି, ତାହା ବାସ୍ତବରେ ଅଭି-ନନ୍ଦନୀୟ ।

## ଭାଗବତ କେନ୍ଦ୍ରିକ ସାଂସ୍କୃତିକ କାର୍ଯ୍ୟକ୍ରମ

ଭାଗବତ ମହାପୁରାଣ ଆୟୁ, ବିଦ୍ୟା, ଧନ, ଯଶ, ପ୍ରତିଷ୍ଠା ପ୍ରଦାନକାରୀ ଅନୁପମ ତଥା ଅଦ୍ୱିତୀୟ ଓଡ଼ିଆ ଧର୍ମଗ୍ରନ୍ଥ ଏହା ପଠନ ଓ ଶ୍ରବଣରେ ମହାମାରୀ, ଅତିବୃଷ୍ଟି ଅନାବୃଷ୍ଟି ; ଭୂତପ୍ରେତବାଧା, ଦୁଷ୍ଟଗ୍ରହ ଯୋଗ ଏବଂ ଅନ୍ୟାନ୍ୟ ଆଧିଭୌତିକ, ଆଧିଦୈବିକ ତଥା-ଆଧ୍ୟାତ୍ମିକ ବିପଦ ସମୂହ ଦୂରୀଭୂତ ହୋଇଥାଏ । ଉପର୍ଯ୍ୟୁକ୍ତ ସୁଫଳ ପ୍ରାପ୍ତି ପ୍ରତ୍ୟାଶାରେ ପ୍ରତ୍ୟେକ ସନ୍ଧ୍ୟାରେ ଭାଗବତ ଘରର ଅନ୍ୟୁନ ଏକ ଅଧ୍ୟାୟ ଭାଗବତ ପାଠ କରାଯାଇଥାଏ । ଏତଦ୍‌ବ୍ୟତୀତ ଯେଉଁମାନଙ୍କ ଘରେ ଭାଗବତ ଗାଦି ଥାଏ, ସେହି ଶ୍ରମଜୀବୀ ତଥା କୃଷିଜୀବୀମାନେ ଦିନର କଠିନ ପରିଶ୍ରମ ପରେ ସନ୍ଧ୍ୟାରେ ଅଧ୍ୟାୟେ ଭାଗବତ ପାଠକରି ଆଧ୍ୟାତ୍ମିକ ସନ୍ତୋଷ ଲାଭ କରିଥାନ୍ତି । ପୁନଶ୍ଚ କେତେକ ନିର୍ଦ୍ଦିଷ୍ଟ ଅବସରରେ ଭାଗବତର କେତେକ ବିଶେଷ ଅଂଶ ଆବୃତ୍ତି କରିବା ନିମିତ୍ତ ବ୍ୟବସ୍ଥା ପ୍ରଚଳିତ ଅଛି ।

ସେମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣଜନ୍ମାଷ୍ଟମୀରେ ଗୋପଲୀଳାର ପ୍ରଥମ ପାଞ୍ଚ ଅଧ୍ୟାୟ ଅର୍ଥାତ୍ କୃଷ୍ଣଜନ୍ମ ପର୍ଯ୍ୟନ୍ତ ଓ ଗିରିଗୋବର୍ଦ୍ଧନ ପୂଜାରେ ଦ୍ୱାରକାଲୀଳା ଅଧିତ ହୋଇଥାଏ । କାର୍ତ୍ତିକମାସ କୃଷ୍ଣ ପୂଜନ ନିମିତ୍ତ ପ୍ରକୃଷ୍ଟ ସମୟ । ତେଣୁ କାର୍ତ୍ତିକ ସନ୍ଧ୍ୟାରେ ଆକାଶଦୀପ ଜାଳି ନିୟମିତ ଭାଗବତ ପାଠ କରିଥାନ୍ତି । ବିଶେଷତଃ କାର୍ତ୍ତିକ ପଞ୍ଚକ ଶୁକ୍ଳଦଶମୀ ଅବସରରେ ଭାଗବତର ଦଶମସ୍କନ୍ଧ ଅନ୍ତର୍ଗତ ୨୯ ତମରୁ ୩୩ ତମ ଅଧ୍ୟାୟ ପର୍ଯ୍ୟନ୍ତ 'ରାସପଞ୍ଚାଧ୍ୟାୟୀ'' ଅଧ୍ୟୟନ କରାଯାଇଥାଏ । କେବଳ ସେତିକି ନୁହେଁ, ଭାଗବତକୁ ଆଧାରକରି ଓଡ଼ିଆ ସମାଜରେ କେତେକ ଭାଗବତ ଉତ୍ସବ ମଧ୍ୟ ଅନୁଷ୍ଠିତ ହୋଇଥାଏ । ଯଥା—

ଆଷାଢ଼ ପୂର୍ଣ୍ଣିମା — ଶ୍ରୀବ୍ୟାସଦେବଙ୍କ ଜନ୍ମ, ଗୁରୁ ପୂର୍ଣ୍ଣିମା ।
ଶ୍ରାବଣ ପୂର୍ଣ୍ଣିମା -- ଶ୍ରୀବଳରାମଙ୍କ ଜନ୍ମ ।
ଭାଦ୍ର କୃଷ୍ଣାଷ୍ଟମୀ— ଶ୍ରୀକୃଷ୍ଣ ଜନ୍ମ ।
ଭାଦ୍ର ଶୁକ୍ଳାଷ୍ଟମୀ— ଶ୍ରୀରାଧା ଜନ୍ମ । ଭାଗବତକର୍ତ୍ତା ଜଗନ୍ନାଥ ଦାସ ଜୟନ୍ତୀ ।
ଭାଦ୍ର ଶୁକ୍ଳଦ୍ୱାଦଶୀ— ବାମନ ଜନ୍ମ ।
ଭାଦ୍ର ପୂର୍ଣ୍ଣିମା — ଭାଗବତ ଜନ୍ମ ।
ମାଘଶୁକ୍ଳ ସପ୍ତମୀ— ଜଗନ୍ନାଥ ଦାସଙ୍କ ମହାପ୍ରୟାଣ ।

ନିତ୍ୟ ଭାଗବତ ପଠନ ଓ ଉପଯୁକ୍ତ ଭାଗବତ ଉତ୍ସବ ପାଳନରୁ ଓଡ଼ିଆ ସମାଜରେ ଭାଗବତର ପ୍ରଭାବ ଯେ ସୁଦୂର ପ୍ରସାରୀ; ଏହା ଅନସ୍ୱୀକାର୍ଯ୍ୟ । ଯେତେଦିନ ପର୍ଯ୍ୟନ୍ତ ପୃଥିବୀ ମାନଚିତ୍ରରେ ଓଡ଼ିଶାର ଅସ୍ତିତ୍ୱ ବିଦ୍ୟମାନ ଥିବ, ସେତେଦିନ ପର୍ଯ୍ୟନ୍ତ ଭାଗବତ ଘରେ ଜଗନ୍ନାଥ ଦାସକୃତ 'ଭାଗବତ' ଉପାସିତ ତଥା ଅଧିତ ହେଉଥିବ । ଏକଦା ଭାଗବତକୁ ଆଧାରକରି ଅତୀତ ଓଡ଼ିଶାରେ ଏକ ସାଂସ୍କୃତିକ ଆନ୍ଦୋଳନ ଗଢ଼ି ଉଠିଥିଲା । ତାହାର ପରିଣତି ସ୍ୱରୂପ ଓଡ଼ିଶାରେ ସବୁଦିନ ହରିଜନ୍ମ, ଶରତ ରାସ, ଭାଗବତ ଜନ୍ମ, ଭାଗବତବଟୁ, ଭାଗବତ ପାରାୟଣ, ଭାଗବତ ସପ୍ତାହ, ଟୀଣ୍ଡି ଭାଗବତ, ଅନନ୍ତମୁଖୀ ଭାଗବତ ଓ ହରିଦ୍ୱାଦଶ ପ୍ରଭୃତି ଅନୁଷ୍ଠାନର ଆୟୋଜନ କରାଯାଇଥାଏ । ପ୍ରୋକ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ ଗୁଡ଼ିକ ଓଡ଼ିଶାର ସାମାଜିକ ଅନୁଷ୍ଠାନରେ ପରିଣତ ହୋଇ ସାର୍ବଜନୀନତା

ଲାଭ କରିଥିବାରୁ ଉତ୍କଳୀୟ ଜନମାନସରେ ଭାଗବତର ମହତ୍ତ୍ୱ ଯେ ଉତ୍ତୁଙ୍ଗ ଶିଖରରେ ବିଦ୍ୟମାନ ଥିଲା, ଏହା ଅବିସମ୍ବାଦିତ ସତ୍ୟ । ସାଂସ୍କୃତିକ ଦୃଷ୍ଟିରୁ ପ୍ରୋକ୍ତ ସାଂସ୍କୃତିକ କାର୍ଯ୍ୟକ୍ରମର ବିଶଦ ଆଲୋଚନା ଅପରିହାର୍ଯ୍ୟ ମନେହୁଏ ।

## ଭାଗବତ ବଡ଼ା :

ଗାଁ ଭାଗବତ ଟୁଙ୍ଗୀରେ ପ୍ରତ୍ୟହ ଅଧ୍ୟାୟେ କରି ଭାଗବତ ପଢ଼ାଯିବାର ବ୍ୟବସ୍ଥା ଥିଲେ ମଧ୍ୟ ଅଶୌଚ ପ୍ରଭୃତି ସମୟରେ, ଏଥିରେ ବ୍ୟତିକ୍ରମ ପରିଦୃଷ୍ଟ ହେବା ସ୍ୱାଭାବିକ । ବର୍ଷତମାମ ଭାଗବତ ପଢ଼ି ସାରିବା ପରେ ଯଦି କେତେକ ଅଧ୍ୟାୟ ଅବଶିଷ୍ଟ ଥାଏ, ତେବେ ତାହା ଆଷାଢ଼ ପୂର୍ଣ୍ଣିମା ଦିନ ହିଁ ସମାପ୍ତ ହୋଇଥାଏ । ଏହାକୁ 'ଭାଗବତ ବଢ଼ା' କୁହାଯାଏ । ଓଡ଼ିଶାରେ ଏହି 'ବଢ଼ିବା' ଶବ୍ଦ ସାଧାରଣତଃ ଶେଷ ହେବା ଅର୍ଥରେ ବ୍ୟବହୃତ ହୋଇଥାଏ । ଯଥା—ଧୂପ ବଢ଼ିବା, ପୂଜା ବଢ଼ିବା, ଥାଳି ବଢ଼ିବା ଇତ୍ୟାଦି । ବ୍ୟାସ ଜନ୍ମଦିବସ ଶ୍ରାବଣ ପୂର୍ଣ୍ଣିମା ଦିନ ଭାଗବତ ଗ୍ରନ୍ଥକୁ ପରିଷ୍କାର କରି ନୂଆ ଥିଆ ସମୂହକୁ ସଫା କରି ଗାଦି ରେ ସଂରକ୍ଷିତ କରି ରଖିବା ସହିତ ବର୍ଷାବଧି ପଠନାବଶେଷ ଭାଗବତକୁ ସମାପ୍ତ କରାଯାଇଥାଏ । ପୁନଶ୍ଚ ଭାଗବତର ପ୍ରଥମ ସ୍କନ୍ଧର ପ୍ରଥମ ଅଧ୍ୟାୟ ମଧ୍ୟ ସଙ୍ଗେ ସଙ୍ଗେ ପଠନ କରାଯାଇ ଏହି ପ୍ରକ୍ରିୟାର ଶୁଭାରମ୍ଭ କରାଯାଏ । ଏସମୟରେ ଭାଗବତ ଠାକୁରଙ୍କୁ ସଙ୍କୁଡ଼ି ଭୋଗ ଲାଗିଛି ସମସ୍ତେ ମହା ଆନନ୍ଦରେ ପ୍ରସାଦ ସେବନ କରିଥାନ୍ତି ।

## ଭାଗବତ ଜନ୍ମ

ବ୍ୟାସ ପୂର୍ଣ୍ଣିମା ବା ଗୁରୁପୂର୍ଣ୍ଣିମା ଦିନ ଭାଗବତ ପଢ଼ା ଆରମ୍ଭ ହୋଇଥିଲେ ମଧ୍ୟ ଭାଦ୍ର ପୂର୍ଣ୍ଣିମାରେ 'ଭାଗବତ ଜନ୍ମ' ଅନୁଷ୍ଠିତ ହୋଇଥାଏ । ବୋଧହୁଏ ଜଗନ୍ନାଥ ଦାସ ପ୍ରଥମ କରି ଏହି ଭାଦ୍ର ପୂର୍ଣ୍ଣିମା ଦିନ ଭାଗବତ ଅନୁବାଦ କାର୍ଯ୍ୟ ଆରମ୍ଭ କରିଥିବାରୁ ଏହି ଦିବସ ଭାଗବତ ଜନ୍ମ ନାମରେ ଆଖ୍ୟାୟିତ । ବର୍ଷସାରା ଭାଗବତ ଗୋସେଇଁଙ୍କ ନିକଟରେ ସୁଖୁଲି ଭୋଗ ହୋଇଥିବା ସ୍ଥଳେ କେବଳ ଏହି ଭାଗବତ ଜନ୍ମତିଥିରେ ଠାକୁରଙ୍କ ପାଖେ ସଙ୍କୁଡ଼ି ଭୋଗ ଲାଗି କରାଯାଇଥାଏ ।

## ଭାଗବତ ସପ୍ତା :

ଏହା ଆମ ସଂସ୍କୃତିରେ ଏକ ସର୍ବଜନାଦୃତ ଧର୍ମାନୁଷ୍ଠାନ ଅଟେ । 'ସପ୍ତା' ସପ୍ତାହ ଶବ୍ଦର ସଂକ୍ଷିପ୍ତ ରୂପ ତଥା ଗ୍ରାମୀଣ ପ୍ରୟୋଗ । ସାତଦିନ ମଧ୍ୟରେ ଭାଗବତର ଆମୂଳଚୂଳ ପାଠ ସମାପ୍ତ କରିବାକୁ ଭାଗବତ ସପ୍ତା କହନ୍ତି । ଏହି ସପ୍ତା ବସିବା ନିମିତ୍ତ କୌଣସି ତିଥି ବାର-ନକ୍ଷତ୍ର ନିର୍ଦ୍ଦିଷ୍ଟ କରାଯାଇ ନାହିଁ । ବ୍ୟକ୍ତିବିଶେଷ କିମ୍ବା ଗ୍ରାମବାସୀ ସମୂହଙ୍କ ସୁବିଧା ଅନୁସାରେ ଉକ୍ତ ଭାଗବତ ସପ୍ତା ଅନୁଷ୍ଠିତ ହୋଇଥାଏ । ଅବଶ୍ୟ ମାନସିକ ସପ୍ତା କଥା ସ୍ୱତନ୍ତ୍ର । ଯଦି କୌଣସି ବ୍ୟକ୍ତି ଅଭୀଷ୍ଟ ସିଦ୍ଧି ନିମିତ୍ତ ମାନସିକ କରିଥାଏ, ତେବେ ବର୍ଷର କୌଣସି ନିର୍ଦ୍ଦିଷ୍ଟ ସମୟ ଅବଧି ମଧ୍ୟରେ ପ୍ରତିବର୍ଷ ଭାଗବତ ସପ୍ତା ପାଳନ କରାଯାଇଥାଏ । ସୁସଜ୍ଜିତ ସପ୍ତା ମଣ୍ଡପରେ 'ସୋଲ' ନାମକ ଏକ ପ୍ରକାର ଉଦ୍ଭିଦ ଗୁଳ୍ମରୁ ପ୍ରସ୍ତୁତ ଶ୍ରୀଜଗନ୍ନାଥ ମୁଖା କିମ୍ବା ଚତୁର୍ଦ୍ଧା ମୂର୍ତ୍ତିଙ୍କ ପଞ୍ଚରଥିକୁ ଇଷ୍ଟଦେବ ରୂପେ ଉପସ୍ଥାପିତ କରି ଠାକୁରମାନଙ୍କୁ ରଙ୍ଗବସ୍ତ୍ର ପୁଷ୍ପଚନ୍ଦନାଦି ବିଭିନ୍ନ ମଣ୍ଡଣିମଣ୍ଡିତ କରାଯାଇ ସାତଦିନବ୍ୟାପୀ ଭାଗବତ ପାଠ ଓ ବିଶେଷ ପୂଜାର୍ଚ୍ଚନାଦି ଅନୁଷ୍ଠିତ ହୋଇଥାଏ । ଉଦ୍ଦିଷ୍ଟ ଅନୁଷ୍ଠାନର କର୍ତ୍ତା ଆବଶ୍ୟକ ସଂଖ୍ୟକ ବ୍ରାହ୍ମଣଙ୍କୁ ନୂତନ ବସ୍ତ୍ର ପ୍ରଦାନ କରି ଯଥାରୀତି ବରଣ କଲାପରେ ସଙ୍କଳ୍ପପୂର୍ବକ ସପ୍ତାନୁଷ୍ଠାନ ଉଦ୍‌ଘାଟିତ ହୋଇଥାଏ । ପ୍ରତ୍ୟହ ସାମାନ୍ୟ ହୋମ କରାଯାଇ ଯେ କୌଣସି ବ୍ୟକ୍ତି ଶୁଦ୍ଧପୂତ ହୋଇ ଭାଗବତ ପାଠ କରିଥାଏ । ତତ୍ୟବସରରେ ଉପସ୍ଥିତ ଅଗଣିତ ଶ୍ରୋତା ମୃଦଙ୍ଗ, ଖଞ୍ଜଣି ଇତ୍ୟାଦି ବାଦନପୂର୍ବକ ଏକ ସାଙ୍ଗୀତିକ ପରିବେଶ ସୃଷ୍ଟି କରିଥାନ୍ତି । ହରିବୋଲ-ହୁଳହୁଳି ଧ୍ୱନିରେ ସପ୍ତାମଣ୍ଡପ ମୁଖରିତ ହୋଇଉଠେ । ହାରମୋନିୟମ, ତବଲା, ଢୋଲ, କରତାଳର ଝଙ୍କାର ଓ ଶଙ୍ଖର ନିନାଦ ମଧ୍ୟରେ ଏହି ମନୋଜ୍ଞ ସପ୍ତାନୁଷ୍ଠାନ ଆହୁରି ରସବନ୍ତ ତଥା ପ୍ରାଣପ୍ରାଚୁର୍ଯ୍ୟରେ ଭରିଯାଏ । ଉପସ୍ଥିତ ଭାବ ବିହ୍ୱଳିତ ଶ୍ରୋତୃମଣ୍ଡଳୀ ପୁରାଣପଣ୍ଡାଙ୍କ ସହିତ 'କହରି ବାପ ଜଗନ୍ନାଥ' ଭଣିତା ପଦ ସମ୍ମିଳିତ ଭାବେ ଆବୃତ୍ତି କରି ସ୍ୱତଃ ଆତ୍ମହରା ହୋଇ ପଡ଼ନ୍ତି । ନାମ ସଂକୀର୍ତ୍ତନ ଓ ପ୍ରସାଦ ସେବନ ପରେ ସପ୍ତାହବ୍ୟାପୀ ସପ୍ତାମହୋତ୍ସବ ଉଦ୍‌ଯାପିତ ହୋଇଥାଏ । ଶ୍ରମଜୀବୀ ଓ କୃଷିଜୀବୀମାନଙ୍କର

ଅବସର ବାସନ ଦାନ ନିମିତ୍ତ ଉଦ୍ଦିଷ୍ଟ । ଉକ୍ତ ମହାସ୍ନାନ ପ୍ରକ୍ରିୟାରେ ସବିଶେଷ ପ୍ରଚଳିତ ହୋଇଥିଲେ ମଧ୍ୟ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଏହା ଅପେକ୍ଷାକୃତ ବହୁଳ ପ୍ରଚଳିତ ଅଟେ ।

## ଭାଗବତ ପାରାୟଣ

ପାରାୟଣ ଅର୍ଥ ପଠନ ସହିତ ଶ୍ରବଣ । ଅର୍ଥାତ୍ ଶ୍ରୋତା ବିହୀନ ଭାଗବତ ପାଠ ପାରାୟଣ ପଦବାଚ୍ୟ ନୁହେଁ । ଭାଗବତ ପାରାୟଣ ଅନୁଷ୍ଠାନରେ ଅନ୍ୟୁନ ଜଣେ ଶ୍ରୋତା ଉପସ୍ଥିତ ରହିବା ବାଞ୍ଛନୀୟ । ମାତ୍ର ଯଦି କୌଣସି ବିଶେଷ ପରିସ୍ଥିତିରେ ସମ୍ଭବ ନହୁଏ, ତେବେ ଭାଗବତର ଆଦ୍ୟନ୍ତ ପାଠ ସମୟରେ ଶ୍ରୋତାମାନେ ଉପସ୍ଥିତ ରହିବା ବିଧେୟ । ଏହା ଏକ ସଙ୍କଳ୍ପିତ ଅନୁଷ୍ଠାନ । ଭାଗବତ ଠାକୁରଙ୍କୁ ନୂତନ ବସ୍ତ୍ର ଭୂଷଣାଦିରେ ବିଭୂଷିତ କରି ପୁରାଣ ପଣ୍ଡାଙ୍କୁ ବରଣପୂର୍ବକ ସାମାନ୍ୟ ହୋମ କରାଯାଇ ଭାଗବତ ପାଠ ମାଧ୍ୟମରେ ପାରାୟଣୋତ୍ସବ ଅନୁଷ୍ଠିତ ହୋଇଥାଏ । ଅହୋରାତ୍ର ଭାଗବତ ପଠନ ଯୋଗୁଁ ଅନେକେ ଏହାକୁ 'ଦାଣ୍ଡି ଭାଗବତ' ବୋଲି କହିଥାନ୍ତି । କେତେକ ସ୍ଥଳରେ ଏହି ଉତ୍ସବ ଏକ ଦିନରେ ଉଦ୍‌ଯାପିତ ହୋଇଥାଏ ।

## ଅନନ୍ତମୁଖୀ ଭାଗବତ

ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ସମୟ ଅବଧି ମଧ୍ୟରେ ଭାଗବତ ସମ୍ପୂର୍ଣ୍ଣ ଅଧ୍ୟୟନ ସମ୍ପାଦିତ ହେବାକୁ 'ଅନନ୍ତମୁଖୀ ଭାଗବତ' କୁହାଯାଏ । ଏକ ଦିନରେ ଦ୍ୱାଦଶସ୍କନ୍ଧ ବିଶିଷ୍ଟ ଭାଗବତ ପଠନ ନିମିତ୍ତ ଅନ୍ୟୁନ ୨ଜଣ କିମ୍ବା ଆବଶ୍ୟକ ସ୍ଥଳେ ତତୋଧିକ ସଂଖ୍ୟକ ପାଠକଙ୍କୁ ନିଯୁକ୍ତ କରି ଅନେକଙ୍କ ମୁଖରେ ଏକକାଳୀନ ଭାଗବତର ବିଭିନ୍ନ ସ୍କନ୍ଧ ପଠିତ ହୋଇ ଥିବାରୁ ଏହାକୁ 'ଅନନ୍ତମୁଖୀ ଭାଗବତ ପାରାୟଣ ଉତ୍ସବ' କୁହାଯାଇଥାଏ । ଏଥିପାଇଁ ଏତେ ସଂଖ୍ୟକ ବ୍ରାହ୍ମଣଙ୍କୁ ବରଣ କରିବା ସବୁ ସମୟରେ ସମ୍ଭବ ହୁଏତ ହୋଇପାରେ ନାହିଁ । ଏପରି ସ୍ଥଳେ ଅନ୍ୟୁନ ଜଣେ ବ୍ରାହ୍ମଣଙ୍କୁ ନୂତନ ବସ୍ତ୍ର ପରିଧାନ ଦେଇ ଯଥାରୀତି ବରଣ କରି ତାଙ୍କ କର୍ତ୍ତୃକ ଉକ୍ତ ଉତ୍ସବର ଶୁଭାଧିବାସ କରାଯାଇଥାଏ । ସନ୍ଧ୍ୟା ପୂର୍ବରୁ ଭାଗବତ ପାଠ ପରିସମାପ୍ତିରେ ଯଥାଶକ୍ତି ହୋମ କରାଯାଇ ଉକ୍ତ ଅନୁଷ୍ଠାନ ଉଦ୍‌ଯାପିତ

ହୋଇଥାଏ । କେତେକ ସ୍ଥଳରେ ଉଦ୍ୟୋକ୍ତାମାନେ ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରି ଭାଗବତ ପ୍ରବଚନ ପ୍ରଦାନର ବ୍ୟବସ୍ଥା ମଧ୍ୟ କରିଥାନ୍ତି । ପରିଶେଷରେ ପ୍ରସାଦ ସେବନ କରାଯାଇ ଏହି ଅନୁଷ୍ଠାନର ପରିସମାପ୍ତି ଘଟେ ।

## ହରିହାଟ

ହରିହାଟ ଓଡ଼ିଶାର ଏକ ମନୋଜ୍ଞ ତଥା ଧାର୍ମିକ ଅନୁଷ୍ଠାନ । ଯଥାଶକ୍ତି ସ୍ନାନ ପରେ ଗାଁର ଭାଗବତ ଘରେ ଭାଗବତର କୌଣସି ଏକ ସ୍କନ୍ଧ ବିଶେଷତଃ ଦଶମ କିମ୍ବା ଏକାଦଶ ସ୍କନ୍ଧ ପଠନ ସମାପ୍ତି ପରେ ଭାଗବତ ପୂଜା କରି ଢୋଲ କରତାଳ ନିନାଦ ତଥା ହରିବୋଲ ହୁଳହୁଳି ଧ୍ୱନି ମଧ୍ୟରେ ଗ୍ରାମବାସୀମାନେ ସମସ୍ତ ଗ୍ରାମ ପରିକ୍ରମା କରିଥାନ୍ତି । ଏହି ପରିକ୍ରମା ସମୟରେ ଖୁସି ସଙ୍କେତ ସ୍ୱରୂପ ବାଉଁଶ ଝଇ (କାଥା, ଅଥବା (ଅରୁଆ ଗୁଳୁଳ) ବୁଣାଯିବାର ଦେଖାଯାଏ । ପରିଶେଷରେ ସମସ୍ତେ ଭାଗବତ ଘରେ ସମବେତ ହୋଇ ଭାଗବତ ଠାକୁରଙ୍କ ସଙ୍କୁଡ଼ି ଭୋଗ ଲାଗିପରେ ଆବାଳ ବୃଦ୍ଧବନିତା ସମସ୍ତେ ଏକାଠି ଭକ୍ତିପୂର୍ବକ ପ୍ରସାଦ ସେବନ କରି ଆନନ୍ଦରେ ହରିବୋଲ ଦେଇଥାନ୍ତି । ଧର୍ମୀୟ ସାଂସ୍କୃତିକ ଜାଗ୍ରତାନୁଷ୍ଠାନ ପାଳନ ପୃଷ୍ଠଭୂମିରେ ପଲ୍ଲୀବାସୀ ସରଳ ଓଡ଼ିଆମାନଙ୍କର ଧର୍ମପ୍ରାଣ ସଂହତି ତଥା ଦେଶରକ୍ଷାର ନିଷ୍ଠାପର ହୃଦୟର ପରିଚୟ ହିଁ ମିଳିଥାଏ ।

## ଭାଗବତର ସାମାଜିକତା

ଜଗନ୍ନାଥ ଦାସଙ୍କ ସୁଧାସ୍ରାବୀ ଲେଖନୀ ପ୍ରସୂତ 'ଭାଗବତ' ଓଡ଼ିଆମାନଙ୍କର ଜୀବନବେଦ ତଥା ଓଡ଼ିଆ ଘରର ଅମୂଲ୍ୟ ସମ୍ପଦ । ସମାଜ ଜୀବନ କଳୁଷିତ ହେଲେ ସାହିତ୍ୟିକ ତା'ର ସୃଷ୍ଟି ମାଧ୍ୟମରେ ସତର୍କ କରାଇ ଦେଇଥାଏ । ଓଡ଼ିଆ ସମାଜର ନୈତିକଦୁର୍ଗ ଯେତେବେଳେ ଭୁଲୁଣ୍ଠିତ ପ୍ରାୟ, ଠିକ୍ ସେହି ସମୟରେ ଭବିଷ୍ୟଦ୍ରଷ୍ଟା କବି ଜଗନ୍ନାଥ ଦାସ ଏହା ବାରିଧିରେ ବପୁନର ପୁନରାଗୁଞ୍ଜନ କରି ଓଡ଼ିଆ ସଂସ୍କୃତିର ସୁରକ୍ଷା ନିମିତ୍ତ ପ୍ରହରୀପଣ୍ଡା ସାଜିଛନ୍ତି । ସମାଜର ସୁଖଦୁଃଖକୁ ଅଙ୍ଗେ ନିଭେଇ ସ୍ୱୀୟ ଅନୁଭୂତିକୁ ଅପୂର୍ବ ଢଙ୍ଗରେ ସମାଜର ବିଭିନ୍ନ ଦିଗ ଓ ଚଳଣି ଉପରେ ସେ ବିଭିନ୍ନ ମହାର୍ଘ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି । ଅନେକ

ମୂଲ୍ୟବାନ ସତ୍ୟର ଉପସ୍ଥାପନ ମାଧ୍ୟମରେ ସମାଜକୁ ଉଦ୍‌ବୁଦ୍ଧ କରିବା, ସୁସ୍ଥ ନାଗରିକ ସୃଷ୍ଟି କରିବା ସର୍ବୋପରି ସମାଜ ସଚେତନତା ସୃଷ୍ଟି ଲାଗି ଓଡ଼ିଆ ଭାଗବତରେ ସୁଭାଷିତାବଳୀ ସଂଯୋଜନ କରିଛନ୍ତି । ଭାଗବତର ସୁଭାଷିତ ପଦାବଳୀ ଓ ସଦୁକ୍ତିର ମହତ୍ତ୍ୱ ସାମ୍ପ୍ରତିକ ସମାଜର ଜନଜୀବନ ନିମିତ୍ତ ଏକାନ୍ତ ଉପାଦେୟ ।

ଧର୍ମ ଚଞ୍ଚଳ ଅଶିକ୍ଷିତ ପଲ୍ଲୀବାସୀ ପ୍ରତ୍ୟେକ ସନ୍ଧ୍ୟାରେ ଭାଗବତ ଘରେ ସମବେତ ହୋଇ ଭାଗବତ ଶ୍ରବଣ କରି ସ୍ୱୀୟ ଚରିତ୍ର ମାର୍ଜିତ କରିଥାନ୍ତି । ଭାଗବତର ନୈତିକ ଉପାଖ୍ୟାନ ସାଧାରଣଙ୍କ ହୃଦୟରେ ଚରିତ୍ରର ରେଖାପାତ କରିଥାଏ । ସର୍ବୋପରି ପାପପୁଣ୍ୟବୋଧର ପ୍ରାଞ୍ଜଳ ବ୍ୟାଖ୍ୟା ଯୋଗୁଁ ଭାଗବତ ତତ୍କାଳୀନ ସମାଜରେ ବିଶେଷ ରୂପେ ପ୍ରଚାର ଓ ପ୍ରସାର (୬) ହୋଇପାରିଥିଲା । ଭାଗବତ ଓଡ଼ିଆ ସଂସ୍କୃତିର ଜୀବନକା ସଦୃଶ । ଏହା ସର୍ବଦା ଓଡ଼ିଆ ସଂସ୍କୃତି ତଥା ସଭ୍ୟତାର ମୁଖପତ୍ର ରୂପେ ବାର୍ତ୍ତା ପ୍ରଦାନ କରିଆସିଛି । ଭାଗବତର ସୂକ୍ତାବଳୀର ଉପଯୋଗିତା ସବୁକାଳ ପାଇଁ ପ୍ରଯୁଜ୍ୟ ।

ଉତ୍କଳୀୟମାନଙ୍କର ଚରିତ୍ର ଗଠନର ମୁଖ୍ୟ ଆଧାର ହେଉଛି, ଏହି ଭାଗବତ । ଏହାର ନୀତିବାଣୀ ଓଡ଼ିଆକୁ ଏକ ସଂସ୍କୃତିସମ୍ପନ୍ନ ଜାତିରେ ପରିଣତ କରିପାରିଛି । ଜାତି କପଟ ନୀତିମୟ ଜୀବନଯାପନ କରି ଆଧ୍ୟାତ୍ମିକ ଶକ୍ତିରେ ଶକ୍ତିମାନ ହୋଇ ଜଗତ ସମକ୍ଷରେ ଏକ ବଳିଷ୍ଠ ଆଦର୍ଶ ପ୍ରତିଷ୍ଠା କରିପାରିବ, ସେଥିପାଇଁ ଓଡ଼ିଆମାନେ ଭାଗବତରୁ ପ୍ରେରଣା ଲାଭ କରିଥାନ୍ତି । ଶ୍ରେ ତ୍ରମଣ୍ଟକୀ ଭାଗବତ ବର୍ଣ୍ଣିତ ନୀତିତତ୍ତ୍ୱ ହୃଦୟଙ୍ଗମ କରି ନୈତିକ ଜୀବନଯାପନ ସହିତ କଥାକଥାକେ ଭାଗବତର ସଦୁକ୍ତି ଉଦ୍ଧାର ମଧ୍ୟ କରିଥାନ୍ତି । "ନମଇଁ ନୃସିଂହ ଚରଣ"—ଭାଗବତର ଏହି ସାବଲୀଳ ପଦ ସହିତ ପ୍ରାସାଦବାସୀଠାରୁ ଆରମ୍ଭକରି କୁଟୀରବାସୀ ପର୍ଯ୍ୟନ୍ତ ପ୍ରତ୍ୟେକ ଓଡ଼ିଆ ସୁପରିଚିତ ।

ଆମ ରାଜ୍ୟର ପୁରୁଣା ଲୋକମାନେ ଭାଗବତର ଅମରବାଣୀ ମୁଖସ୍ଥ କରି ସମାଜର ସୁଖଦୁଃଖ ଓ ଭଲମନ୍ଦରେ ଉଦାହୃତ କରିଥାନ୍ତି ।

---

(୭୨) ଖଗେନ୍ଦ୍ରନାଥ ମଲ୍ଲିକ—ଓଡ଼ିଆ ସାହିତ୍ୟରେ ଜନସୂର୍ଯ୍ୟ, ପୃ ୭୦ ।

ଆମ ଓଡ଼ିଶାରେ ଏପରି କୌଣସି ଜଣେ ବ୍ୟକ୍ତି ନଥିବେ ଯେ କି ଭାଗବତରୁ ପଦେଅଧେ ମୁଖସ୍ଥ କରିନଥିବେ । କାରଣ ଏହା ହେଉଛି ଓଡ଼ିଆ ଜନସାଧାରଣଙ୍କର ଏକ ପ୍ରାମାଣିକ ଧର୍ମଗ୍ରନ୍ଥ । ଓଡ଼ିଆ ଜାତିର ଅବଚେତନରେ ଭାଗବତର ପଦାବଳୀ ଏପରି ସୁପ୍ରତିଷ୍ଠିତ ଯେ ଏହାର ପଦାବଳୀ ଉଦ୍ଧାର କରି ସବୁଯୁକ୍ତି ଓ ତର୍କର ଚରମ ସିଦ୍ଧାନ୍ତ ଗ୍ରହଣ କରାଯାଇଥାଏ (୬୩) । ଓଡ଼ିଆ ଜନଜୀବନର ବହୁ ପରିସ୍ଥିତିରେ ଯଥା— ନ୍ୟାୟନିଷ୍ପତ୍ତି, ବାଣିଜ୍ୟବ୍ୟବସାୟ, ପାରିବାରିକ, ସାମାଜିକ ଓ ବୈବାହିକ କଳିକଜିଆରେ ଲୋକେ ଭାଗବତୋକ୍ତି ଉଚ୍ଚାରଣ କରିଥାନ୍ତି । ଭାଗବତ ଯେପରି ସୁଖପାଠ୍ୟ, ସେହିପରି ଶିକ୍ଷଣୀୟ ମଧ୍ୟ ।

ଓଡ଼ିଆର କାର୍ଯ୍ୟଦକ୍ଷ, ସ୍ୱଭାବ, ଧର୍ମବିଶ୍ୱାସ, ସଂସ୍କାର ତର୍କ ଇତ୍ୟାଦି ଭାଗବତ ବାଣୀଦ୍ୱାରା ପରିଶୀଳିତ । ଭାଗବତ ବାସ୍ତବରେ ଏ ଜାତିକୁ ଏକ ଦାର୍ଶନିକ ଜାତିରେ ପରିଣତ କରିଦେଇଛି । "Indians are born Philosopher" ଉକ୍ତିଟି ଅତିରଞ୍ଜିତ ବୋଧ ହେଲେ ମଧ୍ୟ ଭାଗବତଧର୍ମୀ ଉତ୍କଳୀୟମାନଙ୍କ ପାଇଁ ଏହା ଏକାନ୍ତ ପ୍ରଯୋଜ୍ୟ ।

ଭାଗବତର ଅମରବାଣୀର ବୈଶିଷ୍ଟ୍ୟ ଅନନ୍ୟ ଓ ଅନବଦ୍ୟ । ଏହାର ସୂକ୍ତାବଳୀ ଆପ୍ତବାକ୍ୟର ଶାଶ୍ୱତୀୟତା ବହନ କରିଅଛି । କବି ଜଗନ୍ନାଥ ଦାସ ଭାଗବତ ବାଣୀ ମାଧ୍ୟମରେ ଓଡ଼ିଆ ଜାତିକୁ କେତେକ ତାତ୍ପର୍ଯ୍ୟକ ସଙ୍କେତ ପ୍ରଦାନ କରିଛନ୍ତି । ତନ୍ମଧ୍ୟରୁ ନିମ୍ନରେ କେତୋଟି ଆଲୋକପାତ କରାଗଲା । ଓଡ଼ିଆର ଜନ୍ମମୃତ୍ୟୁରେ ଏହାର ଦୈବବାଣୀ ସାଙ୍କେତିକ ଭାବେ ଆବୃତ୍ତ ହୋଇଥାଏ । ଯଥା—"ପ୍ରାଣୀର ଭଲ ମନ୍ଦ ବାଣୀ । ମରଣ କାଳେ ତାହା ଜାଣି ।" ପୁନଶ୍ଚ ଏହି ଉକ୍ତିରୁ ମନୁଷ୍ୟର ଅଶାନ୍ତ ଜୀବନ ସମ୍ବନ୍ଧରେ ସମ୍ୟକ ସୂଚନା ମିଳିଥାଏ । ବିଶେଷତଃ ପ୍ରାଣୀର ମଙ୍ଗଳ ବିଧାନରେ ସାଧୁଜୀବନର ଚରମ ସାର୍ଥକତା । "ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣୀ ଧରେ ପରହିତେ ।" ଅନ୍ୟର ହିତ ନିମିତ୍ତ ଉତ୍ସର୍ଗୀକୃତ ଜୀବନ ହିଁ ଧନ୍ୟ । ସତ୍କୋପଚାର ପରହିତ ଜୀବନ ନିରର୍ଥକ । ଏ ପ୍ରସଙ୍ଗରେ ଭାଗବତ ଚେତାବନୀ ଦେଇ ଘୋଷଣା କରିଛି—"ଧନ ଜୀବନ ଧିକ୍ ତା'ର । ନିର୍ମଳ ଯଶ ନାହିଁ ଯା'ର ।"

---

(୬୩) ସୁରେନ୍ଦ୍ରନାଥ ମହାନ୍ତି—ଓଡ଼ିଆ ସାହିତ୍ୟର କ୍ରମବିକାଶ, ପୃ ୫୬ ।

ସର୍ବୋପରି ଜଗନ୍ନାଥ ଦାସ ଆଦ୍ୟ ଶଙ୍କରାଚାର୍ଯ୍ୟଙ୍କ ମାୟାବାଦକୁ ସମର୍ଥନ କରି ଭାଗବତର ବିଭିନ୍ନ ସୂକ୍ତରେ ଜଗତକୁ ମିଥ୍ୟା ଓ ବ୍ରହ୍ମକୁ ସତ୍ୟ (୭୪) ବୋଲି ମତ ଦେଇଛନ୍ତି । ମର୍ତ୍ତ୍ୟରେ ମୃତ୍ୟୁର ଅପ୍ରତିହତ ପ୍ରଭାବ ସ୍ୱୀକାର କରି ଭାଗବତରେ କୁହାଯାଇଛି – "ମହୀ ମଣ୍ଡଳ ଦେହ ବନ୍ଧ । ଦେବତା ହେଲେ ହେଁ ମରଇ ।" କୌଣସି ନିର୍ଜୀବ ବସ୍ତୁ ବା ବ୍ୟକ୍ତିବିଶେଷ ଦେହରେ ଅସାବଧାନତାବଶତଃ ଗୋଡ ବାଜିଗଲେ ଓଡ଼ିଆମାନେ ସ୍ୱତଃସ୍ଫୂର୍ତ୍ତ ଜଗନ୍ନାଥ ଉଚ୍ଚାରଣ କରିବା ସହିତ ତାଙ୍କୁ ସ୍ପର୍ଶକରି ମଥାରେ ଲଗାଇଥାନ୍ତି । କାରଣ ପ୍ରତିଘଟରେ ତାଙ୍କର ସତ୍ତା ଓ ପ୍ରତି ଜୀବରେ ତାଙ୍କର ପ୍ରତିଷ୍ଠା । ଭାଗବତ 'ସକଳ ଘଟେ ନାରାୟଣ'ଙ୍କ ଅବସ୍ଥିତିକୁ ସମର୍ଥନ କରି ପ୍ରଶ୍ନ କରିଛି—"କାଷ୍ଠ ପାଷାଣ ତରୁ ତୃଣ । ବସନ୍ତି ଶରୀର ପ୍ରମାଣେ ।" ଭେଦଭାବ ଚିନ୍ତାମୁକ୍ତ ସମାଜ ଗଠନ ନିମିତ୍ତ ଭାଗବତ ଦିଗ୍‌ଦର୍ଶନ ଦେଇ କହିଛି-- "ସର୍ବ ହୋଇବେ ଏକାକାର । ନଥିବ ଭେଦର ବିଚାର ।" 'ବସୁଧୈବ କୁଟୁମ୍ବକମ୍'— ହୋଇଛି ଭାଗବତରେ ସାରବସ୍ତୁ ।

ସମସ୍ତେ ନିୟତି ହସ୍ତର କ୍ରୀଡନକ । ତା'ର କ୍ରୂର ନିୟନ୍ତ୍ରଣରୁ କେହି ମୁକ୍ତ ନୁହନ୍ତି । ଏହି ପ୍ରସଙ୍ଗରେ ଭାଗବତ କହେ—"କାଳର ବଶ ଏ ଜଗତ, ପ୍ରାଣୀଏ କର୍ମର ଆୟତ୍ତ ।" ମନୁଷ୍ୟ ଶରୀର ଭଗବାନଙ୍କ ବିଶ୍ୱରୂପର ଏକ ମିନି ପ୍ରତିକୃତି । ବିଧି ନିର୍ଦ୍ଦେଶିତ କର୍ମ ହିଁ କର୍ତ୍ତବ୍ୟ । ସେହେତୁ କର୍ମ ହିଁ ଭଗବାନ, ତେଣୁ ଭାଗବତ ବକ୍ତବ୍ୟ ହେଉଛି "କର୍ମ ତୋହର ନିଜ ଗୁରୁ ।" କଷ୍ଟାର୍ଜିତ ଧନ ଜୀବନର ସୁଖ ନିମିତ୍ତ ଅପବ୍ୟୟ କରିବା ଅନୁଚିତ । ଅର୍ଜ୍ଜିତ ଧନ ଧର୍ମ କାର୍ଯ୍ୟରେ ବିନିଯୁକ୍ତ ହେଲେ ଭଗବାନଙ୍କ ସାନ୍ନିଧ୍ୟ ହିଁ ମିଳିଥାଏ । "ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ । ଦେଖି ସନ୍ତୋଷ ଭଗବାନ ।" ପ୍ରୋକ୍ତ ପଙ୍‌କ୍ତିରେ ପ୍ରମାଣିତ ହୋଇଛି ଯେ ସୃଷ୍ଟିରେ ମନୁଷ୍ୟ କେବଳ ଭଗବତ୍ ଜ୍ଞାନର ଅଧିକାରୀ ହୋଇଥିବାରୁ ଭଗବାନ ତାହା ପ୍ରତି ସନ୍ତୋଷଭାବ ପ୍ରକାଶ କରିଛନ୍ତି ।

ପରମ ବୈଷ୍ଣବ, ପରମଜ୍ଞାନୀ, ପରମଯୋଗୀ, ଚରମ ତ୍ୟାଗୀ ଜଗନ୍ନାଥ ଦାସ ସ୍ୱୀୟ ଜୀବନ ସଂଘର୍ଷର ତୀବ୍ର ଅନୁଭୂତିରୁ ବଞ୍ଚିବାର ସାଧନ

(୭୪) ଖଗେନ୍ଦ୍ର ନାଥ ମଲ୍ଲିକ—ଓଡ଼ିଆ ସାହିତ୍ୟରେ ତିନି ସୂର୍ଯ୍ୟ, ପୃ ୭୫

ନିର୍ଣ୍ଣୟ କରି କହିଛନ୍ତି—"ସେବା କାର୍ପଣ୍ୟ ଦାନ ଫଳେ । କବା ଅସାଧ୍ୟ ନସ୍ତ୍ରା ଚଳେ ।" ତାଦୃଶ ଅନେକ ସୂକ୍ତାବଳୀ ଦ୍ୱାରା ଭାଗବତ ପରିପ୍ଳୁଷ୍ଟ । ତେଣୁ ପରମଶାସ୍ତ୍ର ଭାଗବତକୁ ନିତ୍ୟ ଅଭ୍ୟାସ କଲେ ଚତୁର୍ବର୍ଗ ଯେ ଅନାୟାସରେ ଅବଧାରଣା କରିହେବ, ଏହା ନିଃସନ୍ଦେହ ।

## ଓଡ଼ିଆ ଭାଗବତରେ ମୁକ୍ତିଚେତନା

ଧର୍ମଗ୍ରନ୍ଥ ଅଧ୍ୟୟନ ସଂସାର ତାରଣର ମୁଖ୍ୟ ଅବଲମ୍ବନ । କାରଣ ମୋକ୍ଷପ୍ରାପ୍ତି ବା ମୁକ୍ତିଚେତନା ହେଉଛି ବିଶ୍ୱର ସମସ୍ତ ଧର୍ମଗ୍ରନ୍ଥର ସାର ପ୍ରତିପାଦ୍ୟ । ଜ୍ଞାନବରିଷ୍ଠ ମହର୍ଷି ଶୁକଦେବ ଶ୍ରୀମଦ୍ ଭାଗବତକୁ ମୋକ୍ଷଶାସ୍ତ୍ର ନାମରେ ଅଭିହିତ କରିଛନ୍ତି । ବିଶେଷତଃ କଳିଯୁଗର ନଷ୍ଟବୁଦ୍ଧି ମନୁଷ୍ୟର ଅଜ୍ଞାନ ଅନ୍ଧକାର ଦୂରୀକରଣ ନିମିତ୍ତ ଏହା ସୂର୍ଯ୍ୟ ତେଜୋଦୀପ୍ତ । ପୁନଶ୍ଚ କଳିଯୁଗରେ ଏହା ଆଶୁ ମୁକ୍ତିପ୍ରଦାୟକ ମୋକ୍ଷ ଗ୍ରନ୍ଥ । ଜଗନ୍ନାଥ ଦାସଙ୍କ ମତରେ ଚତୁର୍ବର୍ଗ ଫଳପ୍ରାପ୍ତି ତଥା ଜୀବ ପରିତ୍ରାଣ ନିମିତ୍ତ ଭାଗବତବାଣୀ ହେଉଛି ଏକ ପବିତ୍ର ତରଣୀ ସଦୃଶ । କେବଳ ସେତିକି ନୁହେଁ, ଭାଗବତର ମନ୍ତ୍ରପୂତ ବାଣୀ ହେଉଛି ସନ୍ତାପହାରିଣୀ, ଭବରୋଗ ନିବାରଣୀ ତଥା ଶମନ ଦମନକାରିଣୀ । ଜଗଜ୍ଜନଙ୍କ ଉଦ୍ଧାର ନିମିତ୍ତ ଜଗନ୍ନାଥ ଦାସଙ୍କ ଭାଗବତ ହେଉଛି, ଏକ ଉଦାତ୍ତ ଆହ୍ୱାନ (୭୮) । ବାସ୍ତବରେ ଭାଗବତ ମୁକ୍ତିଚେତନାର ଅକ୍ଷୟ କବଚ । ଓଡ଼ିଆ ଭାଗବତରେ ଅଛି ମାଟିର ତୃଷ୍ଣା ଓ ଆକାଶର କରୁଣା । ପୁନଶ୍ଚ ସେଥିରେ ଭରି ରହିଛି ଭୂଲୋକର ବେଦନା ଓ ସ୍ୱର୍ଲୋକର ମଙ୍ଗଳ ସ୍ପର୍ଶ । ଜଗନ୍ନାଥ ଦାସ କୃତ ଭାଗବତ, ଏହି ଭାବଧାରାର ପୁଷ୍କଳ ପରିପ୍ରକାଶ ।

କର୍ମ ଯେହେତୁ ବ୍ୟାବହାରିକ ଜୀବନର ମୂଳସୂତ୍ର, ତେଣୁ କର୍ମ ବ୍ୟତିରେକେ ମୁକ୍ତି ଅସମ୍ଭବ । ସେହିହେତୁ ଭାଗବତରେ କର୍ମରେ ପ୍ରଯୁକ୍ତି କୌଶଳକୁହିଁ ବିଜ୍ଞାପିତ ହୋଇଅଛି । ଓଡ଼ିଆ ଜାତିର ଜୀବନବେଦ ଏହି ଭାଗବତର ପ୍ରତିଟି ପଦରେ କବି ସଞ୍ଜୀବନୀ ସୁଧା ଢାଳିଦେଇଛନ୍ତି । ଏହାର ଆଧ୍ୟାତ୍ମିକ ପ୍ରଭାବ ଓଡ଼ିଆମାନଙ୍କୁ ତୁଚ୍ଛ ସାଂସାରିକ ମୋହରୁ ନିବୃତ୍ତ କରାଇ ଶାଶ୍ୱତ ଜୀବନଯାପନରେ ହିଁ ବ୍ରତୀ କରାଇଥାଏ ।

---

(୭୮) "ପ୍ରବନ୍ଧେ ଭାଗବତ କର । ଜଗତ ଜନଙ୍କୁ ଉଦ୍ଧର ॥"
ଭାଗବତ ।

ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣରେ ଆତ୍ମ ସମର୍ପଣ, ନାମ ସ୍ମରଣ ବିଭୂ ଚିନ୍ତନ, କୈବଲ୍ୟ ସେବନ ତଥା ଭଗବତ ପ୍ରଦ୍ଶିତ ଆଦର୍ଶ ଅନୁସରଣ ପୂର୍ବକ ନିଷ୍ଠାମୟ ଜୀବନଯାପନଦ୍ୱାରା ଓଡ଼ିଆର ଏହି ଲକ୍ଷ୍ୟପ୍ରାପ୍ତି ସଂଘଟିତ ହୋଇଥାଏ । ଭାଗବତ ଗ୍ରନ୍ଥ ପଠନ ତଥା ଶ୍ରବଣରୁ ଭଗବାନଙ୍କ ସ୍ୱରୂପ ଦର୍ଶନର ଫଳପ୍ରାପ୍ତି ଘଟେ । ଫଳରେ ପାଠକ ଓ ଶ୍ରୋତା ଉଭୟେ ମୁକ୍ତିଲାଭ କରିଥାନ୍ତି (୬୭)[1] । ଏହାର ନିତ୍ୟପାଠ ସମସ୍ତଙ୍କ ମନରେ ଶୁଦ୍ଧଚେତନା ଓ ଶରୀରରେ ଅଖଣ୍ଡ ପବିତ୍ରତା ଭରିଦିଏ ।

"ଶ୍ରୋତା ବକତା ଯେ ଯନ୍ତ୍ରର । ଏ ତିନି ଜଣ ପାପ ହର ॥"

ଅର୍ଥାତ୍ ଭାଗବତ ରସାସ୍ୱାଦନ କରିବା ସମୟରେ ଶ୍ରୋତା, ଆବୃତ୍ତି କର୍ତ୍ତା ଓ ପ୍ରଶ୍ନକର୍ତ୍ତା, ତିନିଙ୍କର ସକଳ କ୍ଳେଶ ଅପସାରିତ ହୋଇଥାଏ । ଭଙ୍ଗ୍ୟ-ଜଗତରେ ସେମାନେ ଏପରି ଏକ ଅମୃତମୟ ସୋପାନରେ ଅବତୀର୍ଣ୍ଣ ହୁଅନ୍ତି, ଯେଉଁଠି ମୃତ୍ୟୁର ଯନ୍ତ୍ରଣା ନଥାଏ—ଥାଏ କେବଳ ଅମୃତର ସ୍ପର୍ଶ, ମୁକ୍ତିର ଆନନ୍ଦ ଓ ଆନନ୍ଦର ଅଶ୍ରୁ ।

ଜୀବନାବସାନ ପରେ ଏହା ଜୀବକୁ ମୋକ୍ଷର ସ୍ୱାଦ ଚଖାଇଥାଏ (୬୮) । ଏହି ମହାନ୍ ଗ୍ରନ୍ଥର ଅମରବାଣୀ ଓଡ଼ିଆମାନଙ୍କର ଧର୍ମପଥର ଏକମାତ୍ର ପାଥେୟ । ମୃତ୍ୟୁ ଅନ୍ବେଷମାଣ ମାନବର ମୁକ୍ତ ଗହ୍ୱରରେ ନିର୍ମଳ୍ୟ ଜଳଥାଇ କର୍ଣ୍ଣକୁହରରେ ଭାଗବତର ଅମୃତ ବାଣୀ ଅନୁରଣନ ଅବସରରେ ଓଡ଼ିଆର ପ୍ରାଣପକ୍ଷୀ ଏହି ଅଳିକ ପଞ୍ଜୁରୀ ପରିତ୍ୟାଗ କରି ଅମରପୁରୀକୁ ପ୍ରତ୍ୟାବର୍ତ୍ତନ କରିଥାଏ । ସ୍ୱର୍ଗଲାଭର ନିଶ୍ଚିତ ବିଶ୍ୱାସ ଓ ମୁକ୍ତିର ପ୍ରଚୁର ଆଶ୍ୱାସ ପ୍ରତ୍ୟାଶାରେ ଭାଗବତ ପାଠକୁ ଓଡ଼ିଆମାନେ ପରମ୍ପରା ରୂପେ ବରଣ କରିନେଇଛନ୍ତି । ଅନୁରୂପ ସାମାଜିକ ବିଧିଦ୍ୱାରା ଓଡ଼ିଆର ମରଣୋନ୍ମୁଖ ଆତ୍ମା ଭାଗବତ ଶ୍ରବଣରେ ଅମରତ୍ୱ ଲାଭ କରିବା ସହିତ ପୁତ୍ରକନ୍ୟାଙ୍କ ଜନ୍ମ ସାର୍ଥକ ହେବାର ଧାରଣା ଅବଧି ଓଡ଼ିଆର ଅନ୍ତର୍ମାନସ ଚେତନାରେ

---

(୬୭) "ଶ୍ରବଣମାତ୍ରେ ମୋକ୍ଷ ପାଇ । ତ୍ରିତାପମାନ କ୍ଷୟ ଯାଇ ।"
ଭାଗବତ ୧।୧ ।

(୬୮) ଗଜପତି ରଥ—କବି, ଜଗନ୍ନାଥ ଦାସ, ପୃ-୧୬ ।
"ଜୀବନର ଶେଷକାଳେ ମାନବତା ଶୁଣିମରେ ଶମନେ ଡର"

ଉଜ୍ଜୀବିତ ହୋଇଥିଲା । ସେଥିପାଇଁ ଓଡ଼ିଆ ଘରେ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସମ୍ପର୍କୀୟ ଜନେ ମୁମୂର୍ଷୁଙ୍କୁ ଅନ୍ତିମ ଶଯ୍ୟାରେ ପୁତ୍ର/କନ୍ୟାମାନେ ଭାଗବତ ଶୁଣାଇ ପିତୃଋଣରୁ ମୁକ୍ତି କାମନା କରିଥାନ୍ତି ।

## ଭାଗବତ ପାଠର ସାମାଜିକ ଉପଯୋଗିତା

ଶତାବ୍ଦୀ ଶତାବ୍ଦୀ ଧରି ଭାଗବତ ଓଡ଼ିଆର ସାଂସ୍କୃତିକ ତଥା ସାମାଜିକ ଜୀବନକୁ ପ୍ରଭାବିତ କରିଆସିଛି । ଓଡ଼ିଶାର ଜନସାଧାରଣଙ୍କ ଦୈନିକ ଜୀବନ ଧାରାରେ ଜଗନ୍ନାଥ ଦାସକୃତ ଭାଗବତର ପ୍ରଭାବ ସର୍ବାଧିକ (୭୮) । ଭାଗବତ ଓଡ଼ିଆ ଜନଜୀବନର କଳ୍ପତରୁ । ଓଡ଼ିଶାର ଲୋକ ସଂସ୍କୃତି ପରିପ୍ରେକ୍ଷୀରେ ଭାଗବତର ସମାଜିକ ଆବେଦନ ଅନନ୍ୟ ତଥ ଅସାଧାରଣ । ଭାଗବତ ଟୁଙ୍ଗୀରେ ପ୍ରତ୍ୟହ ଭାଗବତ ପାଠ ହେବା ସହିତ ଯେକୌଣସି ବ୍ୟକ୍ତି ବିଶେଷଙ୍କ ଗୃହରେ ସନ୍ଧ୍ୟାରେ ଭାଗବତ ପାଠ ହେବାରେ କୌଣସି ବୈଧାନିକ ପ୍ରତିବନ୍ଧକ ନାହିଁ । ଦିବାବସାନ ପରେ ପ୍ରତି ସନ୍ଧ୍ୟାରେ ଅଧିକାଂଶ ଓଡ଼ିଆ ଘରେ ଦେଢ଼ି ଭାଗବତ ଅଧିତ ହୋଇଥାଏ । ଏହା ଫଳରେ ଗୃହରେ ଏକ ଆଧ୍ୟାତ୍ମିକ ବାତାବରଣ ସୃଷ୍ଟି ହେବା ସହିତ ଗୃହ ବିପଦମୁକ୍ତ ରହେ ବୋଲି ଓଡ଼ିଆର ବିଶ୍ୱାସ । ଏବେ ବି ଓଡ଼ିଶାରେ ବହୁଲୋକ ଅଛନ୍ତି ଯେଉଁମାନେ କି ପ୍ରାତଃସ୍ନାନ ସଦୃଶ ପ୍ରତ୍ୟହ ସନ୍ଧ୍ୟାରେ ମଧ୍ୟ ନିୟମିତ ଭାଗବତ ପାଠ କରିଥାନ୍ତି ।

ଧର୍ମପ୍ରାଣ ଓଡ଼ିଆର ଜୀବନ ମରଣର ସାଥୀ ଏହି ଭାଗବତ । ଓଡ଼ିଆ ଘରେ ସନ୍ତାନ ଜନ୍ମ ହେଲେ ସୂତିକାଗୃହରେ ଦ୍ୱାଦଶ ଦିନ ପର୍ଯ୍ୟନ୍ତ ଏବଂ କେତେକ ସ୍ଥାନରେ ଶିଶୁ ଜନ୍ମର ଏକୋଇଶି ଦିନ ପର୍ଯ୍ୟନ୍ତ ନବଜାତକ ପାଖରେ ଭାଗବତ ପଠନ ବିଧି ଅବ୍ୟାହତ ରହେ । ମୃତ୍ୟୁ ଅପେକ୍ଷମାଣ ବ୍ୟକ୍ତିର ଶଯ୍ୟାପାର୍ଶ୍ୱରେ ଉପବେଶନପୂର୍ବକ ଭାଗବତ ପାଠ କରିବା ଓଡ଼ିଆ ପରିବାରରେ ଏକ ଅପରିହାର୍ଯ୍ୟ ବିଧି । ଓଡ଼ିଆ ଶିଶୁର ଜନ୍ମରେ ଭାଗବତ ପାଠ, ତାର ଦୈନନ୍ଦିନ କର୍ମମୟ ଜୀବନର ପ୍ରତ୍ୟେକ ସନ୍ଧ୍ୟାରେ ଭାଗବତ ପାଠ ଏବଂ ଶେଷନିଃଶ୍ୱାସ ପରିତ୍ୟାଗ

---

(୭୮) ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ—ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, ପୃ-୧୧୦ ।

ସମୟରେ ଅନୁଷ୍ଠିତ ଭାଗବତ ପଠନ୍, ଓଡ଼ିଆର ଜୀବନରେ କିପରି ଭାଗବତର ସୁଦୂରପ୍ରସାରୀ ପ୍ରଭାବ ରହିଛି; ତାହା ପରିମେୟ ।

କେବଳ ସେତିକି ନୁହେଁ ବିପଦ, ଆପଦରେ ସନ୍ତାପପ୍ରାପ୍ତ ଓଡ଼ିଆ-ମାନେ ଭାଗବତ ଧ୍ୟାନକରି ପ୍ରଶାନ୍ତି ଅନୁଭବ କରିଥାନ୍ତି । ପ୍ରତ୍ୟହ ଭାଗବତ ପାଠ ଫଳରେ ଗ୍ରାମରୁ କାଳଭୟ ଦୂର ହୋଇଥାଏ ବୋଲି ଓଡ଼ିଆର ଦୃଢ଼ ବିଶ୍ୱାସ । ଗ୍ରାମରେ ହଇଜା, ବସନ୍ତ, ମହାମାରି ପ୍ରଭୃତି ବ୍ୟାପିଲେ ସାମୟିକ ଭାବେ ଅଷ୍ଟପ୍ରହରୀ, ଦଶ୍ରାଭାଗବତ ଇତ୍ୟାଦି ସଙ୍କଳ୍ପିତ ଅନୁଷ୍ଠାନ ମାଧ୍ୟମରେ ଭାଗବତ ପାଠ କରାଯାଇଥାଏ । ଏତଦ୍‌ବ୍ୟତୀତ ଯେକୌଣସି ସାମାଜିକ ଅନୁଷ୍ଠାନର ଉଦ୍‌ଘାଟନ ଉତ୍ସବରେ ଭାଗବତ ପାଠ କରିବା, ଏକ ଅପରିହାର୍ଯ୍ୟ ବିଧି । ଭାଗବତ ପାଠର ବହୁଳତା ସମାଜ ପକ୍ଷେ କଲ୍ୟାଣକର । ଓଡ଼ିଆ ସମାଜରେ ନିର୍ବନ୍ଧ, ବିବାହ, ବ୍ରତ, ଚାନ୍ଦ୍ରାୟଣ ସଭା ପ୍ରଭୃତି ଅନୁଷ୍ଠାନରେ ଅଧ୍ୟାୟେ ଭାଗବତ ପାଠ କରାଯାଇ ସମୟରେ ଆନୁସଙ୍ଗିକ ବିଧି ସମ୍ପାଦିତ ହୋଇଥାଏ । ସର୍ବୋପରି ଝିଅ ଶାଶୁ ଘରକୁ ଗଲା ସମୟରେ ଶାଶୁ-ଶ୍ୱଶୁରଙ୍କ ପଠନ ନିମିତ୍ତ ତାଙ୍କ ପେଡ଼ିରେ ଖଣ୍ଡେ ଭାଗବତ ନେଇଗଲା ବିଧି ସମାଜରେ ପ୍ରଚଳିତ । ପୁନଶ୍ଚ ବିଧବା ସ୍ତ୍ରୀମାନେ କାର୍ତ୍ତିକ ମାସରେ ହବିଷ୍ୟ ପାଳନ ଅବସରରେ ସମବେତ ଭାବେ ଭାଗବତ ଶ୍ରବଣକରି ଆଧ୍ୟାତ୍ମିକ ତଥା ମାନସିକ ସନ୍ତୋଷ ଲାଭ କରିଥାନ୍ତି । ବାସ୍ତବରେ ଭାଗବତ ପାଠ ଯେ ଓଡ଼ିଆର ଜୀବନଧାରାକୁ ସାମଗ୍ରିକ ଭାବେ ପ୍ରଭାବିତ କରିଛି; ଏହା ଅବିସମ୍ବାଦିତ ସତ୍ୟ ।

**ଉପସଂହାର :**

ଶ୍ରୀମଦ୍ ଭାଗବତ ଏକାଧାରରେ ବେଦ, ବେଦାନ୍ତ, ମନ୍ତ୍ର, ତନ୍ତ୍ର, ସଂହିତା, ଉପନିଷଦ ତଥା ପୁରାଣର ନିର୍ଯ୍ୟାସ ବହନ କରିଥିବାରୁ ମହାପୁରୁଷ ଜଗନ୍ନାଥ ଦାସ ମୁଖ୍ୟତଃ ଏହାର ମର୍ମାନୁବାଦ କରି ବିଗତ ୫୦୦ ବର୍ଷ ଧରି ଓଡ଼ିଶାର ବ୍ୟକ୍ତିଗତ, ପାରିବାରିକ, ସାମାଜିକ, ଆଧ୍ୟାତ୍ମିକ ଜୀବନ ସର୍ବୋପରି ଜାତୀୟ ଜୀବନକୁ ପରିପୁଷ୍ଟ କରି ଓଡ଼ିଆ ଜାତିର ପ୍ରାଣରେ ପ୍ରେମ, ମୈତ୍ରୀ, ଭ୍ରାତୃତ୍ୱ, ସଂହତି ଓ ଐକ୍ୟ ପ୍ରତିଷ୍ଠା କରି ଆସିଛନ୍ତି (୭୯) । ଜଗନ୍ନାଥ ଦାସକୃତ ଭାଗବତ କେବଳ ଓଡ଼ିଆ ପ୍ରାଣର

(୭୯) ଡଃ ଗଙ୍ଗାଧର ବଳ — ଶ୍ରୀମଦ୍ ଭାଗବତ ଏକ ଅଧ୍ୟୟନ, କୋଣାର୍କ—୭୮ ତମ ସଂଖ୍ୟା, ପୃ-୧୩ ।

ଅମୂଲ୍ୟ ସମ୍ପଦ ନୁହେଁ, ସମଗ୍ର ମାନବଜାତି ପାଇଁ ଏହାର ଅଭିବ୍ୟକ୍ତି ଅପରିହାର୍ଯ୍ୟ ବୋଧ ହୋଇଥାଏ । ଏହି ପ୍ରସଙ୍ଗରେ ଗାନ୍ଧୀବାଦୀ ନେତା ବିନୋବା ଭାବେ ଓଡ଼ିଶା ଭ୍ରମଣ ଅବସରରେ ଭାଗବତ ପଠନ ତଥା ଅନୁଶୀଳନ କରି ମନ୍ତବ୍ୟ ପ୍ରକାଶ କରିଥିଲେ ଯେ "ଯଦି ଓଡ଼ିଆ ଭାଗବତ ହିନ୍ଦୀ-ଭାଷାରେ ଅନୁଦିତ ହୁଅନ୍ତା, ତେବେ ଏହା ସବୁ ଭାରତୀୟ ସ୍ତରରେ ଏକ ଅମୂଲ୍ୟ ସମ୍ପତ୍ତି ହୋଇଯାନ୍ତା ।"

ଏକଦା ଭାଗବତକୁ ଉପଜୀବ୍ୟ କରି ଓଡ଼ିଶାର ପୁରୁପଲ୍ଲୀରେ ପ୍ରତିଷ୍ଠିତ ଭାଗବତ ଘରର ସନ୍ଧ୍ୟାରେ ଆଶା ଆନନ୍ଦ ବିଶ୍ୱାସର ପୋଲଙ୍ଗ ଦୀପଟିଏ ଜଳି ଉଠୁଥିଲା । ପରିବର୍ତ୍ତିତ ସମୟ ପରିପ୍ରେକ୍ଷୀରେ ସେଠାରେ ଦୀପ ଆଉ ଜଳୁନାହିଁ, ପୋଲଙ୍ଗ ତେଲ ସ୍ୱପ୍ନ ହେଲାଣି । ତତ୍କାଳୀନରେ ଭାଗବତ ଟୁଙ୍ଗୀରୁ ଗ୍ରାମ ପଞ୍ଚାୟତ ଜନ୍ମ ନେଇଥିଲା । ମାତ୍ର ସାମ୍ପ୍ରତିକ ସ୍ୱାୟତ୍ତଶାସନ ବ୍ୟବସ୍ଥାରେ ପୂର୍ବୋକ୍ତ ଗ୍ରାମ ପଞ୍ଚାୟତର ସଂଜ୍ଞା ଓ କାର୍ଯ୍ୟ ପରିସରରେ ସ୍ପଷ୍ଟ ପରିବର୍ତ୍ତନ ପରିଲକ୍ଷିତ ହେଉଅଛି । ଅପର ପକ୍ଷରେ ତଦ୍ୱାରା ଭାଗବତ ଘରର ଗୁଣାତ୍ମକ ଉଦ୍ଦେଶ୍ୟ ଆଉରି ସଂସାଧିତ ହେଉନାହିଁ । ବର୍ତ୍ତମାନ ବିଚାରାଳୟମାନଙ୍କରେ ଆସାମୀ ସତ୍ୟବୟାନ ନିମିତ୍ତ ଗୀତା-ଭାଗବତ ସ୍ପର୍ଶକରି ଶପଥ ଗ୍ରହଣ କରୁଥିଲେ ମଧ୍ୟ ନିଷ୍ପତ୍ତିକୁ ନିଜ ସପକ୍ଷରେ ନେବାପାଇଁ ସେମାନେ ଦ୍ୱିଧାହୀନ ଭାବେ ମିଥ୍ୟାର ଆଶ୍ରୟ ନେଉଛନ୍ତି । ଫଳରେ ଧନବାନ, ବଳବାନଙ୍କୁ ବିଚାରରେ ନିର୍ଦ୍ଦୋଷୀ ବୋଲି ଘୋଷଣା କରାଯାଉଛି । କେବଳ ଭାଗବତ ଚେତନାର ଅଭାବ ଯୋଗୁଁ ସମାଜ ଏତାଦୃଶ ସ୍ଖଳନର ସମ୍ମୁଖୀନ ହେଉଅଛି ।

ଅଧୁନାତନ ପଲ୍ଲୀବହୁଳ ଓଡ଼ିଶାରେ ତଥାକଥିତ ଭାଗବତ ଟୁଙ୍ଗୀ ଲୁପ୍ତପ୍ରାୟ । ଏହାର ବିକଳ୍ପ ସାଧନ ପରେ ଓଡ଼ିଆର ନୈତିକ ମାନଦଣ୍ଡ କ୍ରମଶଃ ଦୁର୍ବଳ ହୋଇଯାଉଛି । ଆଜି ଭାଗବତ ଜନଜୀବନକୁ ନିୟନ୍ତ୍ରଣ କରିବା ତ ଦୂରର କଥା, ଐହିକ ଜୀବନର ଅଳୀକ ସୁଖ ସମ୍ଭୋଗରେ ନିମଜ୍ଜିତ ରହି କୌଣସି ବ୍ୟକ୍ତି ଆଜି ଭାଗବତର ପ୍ରଦତ୍ତ ସଦୁକ୍ତି ପ୍ରତି ସଚେତନ ନୁହନ୍ତି । ଆଜିର ନବ୍ୟ ଶିକ୍ଷିତ ପରମୁଖାପେକ୍ଷୀ ବିଜାତି ସଭ୍ୟତାଗ୍ରସ୍ତ ଓଡ଼ିଆ, ଭାଗବତ ଘରର ମହତ୍ତ୍ୱ ଭୁଲିଯାଇଥିବାରୁ କେବଳ

ଭାଗବତ ସଂସ୍କୃତି ଅନ୍ତଃସାରଶୂନ୍ୟ ହୋଇନାହିଁ, ତତ୍ତ୍ୱ ସହିତ ଓଡ଼ିଆର ଭାଗ୍ୟ ଓ ଭବିତବ୍ୟ ବିଜଡ଼ିତ ମଧ୍ୟ ହୋଇଛି । ଆଧୁନିକତାର ଶିକାର ହୋଇ ଯେଉଁ କେତେଗୋଟି ଅବଶିଷ୍ଟମାଣ ଭାଗବତ ଘର ନାଁକୁ ମାତ୍ର ତିଷ୍ଠି ରହିଛି; ସେଠାରେ ଆଉ ଭାଗବତ ପାଠ ହେଉନାହିଁ । ଔପଚାରି-କତାର ହାତ ଦେଇ କେବଳ ଭାଗବତ ପୋଥି ଉପରେ ଫୁଲପାଣି ଛୁଆଁଇବା ଫଳରେ ସେଗୁଡ଼ିକ ବଲ୍ମୀକମାନଙ୍କର ସୁଷମ ଖାଦ୍ୟରେ ପରିଣତ ହେଉଅଛି ।

ଭାଗବତ ସଂସ୍କୃତିର ଅବକ୍ଷୟ ଫଳରେ ଭାଗବତ ଘରର ସାମୁହିକ କଳେବର ସମ୍ପୂର୍ଣ୍ଣ ବଦଳି ଯାଇଛି । ପୂର୍ବର ନଡ଼ାଛପର ଭାଗବତ ଘର ଏବେ ଅଗ୍ନିନିରୋଧକ ଗୃହରେ ପରିଣତ ହୋଇଅଛି ଏବଂ ସେଠାରେ ବେତାରଯନ୍ତ୍ର, ଦୂରଦର୍ଶନ, ସମ୍ବାଦପତ୍ର ଓ ବିଭିନ୍ନ କ୍ରୀଡ଼ା ଉପକରଣର ଅବାଧ ଅନୁପ୍ରବେଶ ଫଳରେ ବାସ୍ତବ ଭାଗବତ ଟୁଙ୍ଗୀର ଅପମୃତ୍ୟୁ ସଙ୍ଘଟିତ ହୋଇ ତା' ବଦଳରେ ଏକ ଅନ୍ତଃସାରଶୂନ୍ୟ ଅନୁଷ୍ଠାନ ମୁଣ୍ଡଟେକିଛି । ଯେଉଁଠି ବା ଭାଗବତ ଗାଦି ଅଛି, ସେଠାରେ ଏବେ ଭାଗବତ ପଢ଼ିବା ସମୟରେ ପୁରାତନ ଓ ନୂତନର ଏକ ମନସ୍ପର୍ଶୀ ସମନ୍ୱୟ ଦେଖିବାକୁ ମିଳୁଅଛି । ଅର୍ଥାତ୍ ସେଠାରେ ଘିପଟିଏ ଜାମକୁମାନ ଜଳୁଛି, କିନ୍ତୁ ଉଜ୍ଜ୍ୱଳ ବିଦ୍ୟୁତ୍ ଆଲୋକ ସଙ୍ଘାତରେ ଅନେକ କୀଟ ପତଙ୍ଗ ଗୃହ ମଧ୍ୟକୁ ଆକୃଷ୍ଟ ହୋଇ ଆସୁଛନ୍ତି । ପୂର୍ବେ ଗୋଲିଙ୍ଗତେଲ ଦୀପରେ ଜଳିବା ଫଳରେ ଗୃହ ପରିସର ଯେପରି ପ୍ରଦୂଷଣ ମୁକ୍ତ ରହୁଥିଲା, ସେହି ମହତ ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ବ୍ୟାହତ ହେଉଅଛି । ଅବଶ୍ୟ ବେତାର ଯନ୍ତ୍ର ଓ ଦୂରଦର୍ଶନରେ ସାମୟିକ ଭାବେ ଭାଗବତ ପାଠ କାର୍ଯ୍ୟକ୍ରମ ପ୍ରସାରିତ ହେଉଅଛି । ହେଲେ ସେଥିରେ ଭାଗବତ ଟୁଙ୍ଗୀରେ ଆବୃତ୍ତି ଭାଗବତ ପାଠର ସ୍ୱାଭାବିକତା ଆସିବ କେଉଁଠୁ ? ମାତୃସ୍ତନ୍ୟ ଓ ଗୁଣ୍ଡ ଦୁଗ୍ଧରୁ ପ୍ରସ୍ତୁତ ପାନୀୟ ମଧ୍ୟରେ ପ୍ରଭେଦ ଯେତିକି, ଆଲୋଚ୍ୟ ଭାଗବତ ପାଠର ତତୋଧିକ ପାର୍ଥକ୍ୟ ହିଁ ପରିଲକ୍ଷିତ ହୋଇଥାଏ ।

ଦୂରଦର୍ଶନ ଓ ବେତାର ଯନ୍ତ୍ରରେ ବ୍ୟବସ୍ଥିତ ବିଭିନ୍ନ ମନୋରଞ୍ଜନ କାର୍ଯ୍ୟକ୍ରମ ଯୋଗୁଁ ଜନସାଧାରଣ ଭାଗବତ ପାଠ ପ୍ରତି ବିଗତସ୍ପୃହ ହେବା

ସ୍ୱାଭାବିକ । କାରଣ ଭାଗବତରେ ନିହିତ ଦୁର୍ବୋଧସମ ଉପାଦେୟଗୁଡ଼ିକୁ ଉଦ୍ଧାର କରି ଆଧୁନିକମାନବ ଅନ୍ୟାନ୍ୟ କାର୍ଯ୍ୟମାନଙ୍କ ମଧ୍ୟର ସ୍ୱାର୍ଥପ୍ରତି ଆସକ୍ତ ହୋଇପଡ଼େ । ସମାଜର ସ୍ଥିତାବସ୍ଥା କ୍ରମଶଃ ଭୁଷୁଡ଼ି ପଡ଼ୁଥିବା ଅବସରରେ ଗ୍ରାମ୍ୟ ଜୀବନକୁ କଳୁଷମୁକ୍ତ କରି ସମାଜକୁ ଶୁଦ୍ଧ କରିବା ଦିଗରେ ଭାଗବତ ଧାରର ପୁନରୁଦ୍ଧାର ହିଁ ନିଶ୍ଚିତ ଭାବେ ସହାୟକ ହେବ, ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ । ପୁନଶ୍ଚ ଭାଗବତର ଏକ ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ ନହେବା ଏକାନ୍ତ ପରିତାପର ବିଷୟ । ଏହି ପରିପ୍ରେକ୍ଷୀରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଔଦାସୀନ୍ୟ ଆଦୌ ପ୍ରଶଂସନୀୟ ନୁହେ ।



# ଭାଗବତ ଘର

ଶ୍ରୀ ସୁଦର୍ଶନ ଚନ୍ଦ୍ର ମହାନ୍ତି

ଜ୍ଞାନ, ବୈରାଗ୍ୟ, ନିଷ୍କାମ କର୍ମଯୋଗ, ଭକ୍ତି ଇତ୍ୟାଦି ନାନା ଆଧ୍ୟାତ୍ମବାଦର ପ୍ରଷ୍ଟିକ ଭାଗବତ ଗ୍ରନ୍ଥ । ମୂଳ ଭାଗବତ ସଂସ୍କୃତ ଭାଷାରେ ବ୍ୟାସଦେବଙ୍କ ଦ୍ୱାରା ରଚିତ ହୋଇଥିଲା । ଏଥିରେ ଅଠର ହଜାର ଶ୍ଳୋକ ଥିବାର ଜଣାଯାଏ । ସଂସ୍କୃତ ଭାଷାରେ ଏହି ଶ୍ଳୋକଗୁଡ଼ିକ ମଧ୍ୟରୁ ଛଅ ହଜାର ପଦର ବ୍ୟାଖ୍ୟା କରିଥିଲେ ଶ୍ରୀଧର ସ୍ୱାମୀ ।

ଓଡ଼ିଆ ଭାଗବତକାର ଭକ୍ତକବି ଜଗନ୍ନାଥ ଦାସ ମୂଳ ସଂସ୍କୃତ ଭାଗବତର ଅନୁବାଦ କରିଥିଲେ ମଧ୍ୟ । ଶ୍ରୀଧର ସ୍ୱାମୀଙ୍କ ଟୀକା ତାଙ୍କୁ ଅନୁପ୍ରାଣିତ ଓ ପ୍ରଭାବିତ କରିଥିଲା । ଓଡ଼ିଆ ଭାଗବତ ଜଗନ୍ନାଥ ଦାସଙ୍କର ଆକ୍ଷରିକ ଅନୁବାଦ ନୁହେଁ । ଏଥିରେ ତାଙ୍କର ଅନେକ ନିଜସ୍ୱ ମତ ଦୃଷ୍ଟିଗୋଚର ହୁଏ । କେତେକ ଶ୍ଳୋକର ଆକ୍ଷରିକ ଅନୁବାଦ କରିବା ସଙ୍ଗେ ସଙ୍ଗେ ଅନେକ କ୍ଷେତ୍ରରେ ଆଖ୍ୟାନଗୁଡ଼ିକର ସାରାଂଶ ବ୍ୟାଖ୍ୟା କରି ନିଜ ଭାଷାରେ ପ୍ରକାଶ କରିଛନ୍ତି । ଏହା ଛଡ଼ା ସେ ବୈଷ୍ଣବ ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ ଟୀକାର ବିଭିନ୍ନ ଉପାଦେୟ ଅଂଶକୁ ଲଳିତ ପଦ ଯୋଜନା ଛନ୍ଦରେ ଓଡ଼ିଆ ଭାଗବତରେ ସ୍ଥାନ ଦେଇଛନ୍ତି । ଜଗନ୍ନାଥ ଦାସଙ୍କ ପ୍ରଣିତ ଓଡ଼ିଆ ଭାଗବତର ପଦ ସଂଖ୍ୟା ୬୧୦୬୭ । ୧୩ଶ ସ୍କନ୍ଧ ପର୍ଯ୍ୟନ୍ତ ଓଡ଼ିଆ ଭାଗବତ ରଚିତ । କିନ୍ତୁ ଅତିବଡ଼ ଜଗନ୍ନାଥଙ୍କ ଦ୍ୱାରା ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ରଚିତ ହୋଇଥିବାର ପ୍ରମାଣ ମିଳେ । ପରବର୍ତ୍ତୀ କବି ମହାଦେବ ଦାସଙ୍କ ଦ୍ୱାରା ୧୨ଶ ସ୍କନ୍ଧ ରଚିତ ହୋଇଛି । ଏହି କଥା ନିଜେ ମହାଦେବ ଦାସ ୧ ଶ ସ୍କନ୍ଧରେ ଉଲ୍ଲେଖ କରିଛନ୍ତି ।

ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ଏକାଦଶ ସ୍କନ୍ଧରେ କୃଷ୍ଣଙ୍କର ଇହଲୀଳା ସାଙ୍ଗ ପର୍ଯ୍ୟନ୍ତ ରଚନା କରି ଜଗନ୍ନାଥ ଦାସଙ୍କର ଦେହାନ୍ତ ହୋଇଥିଲା । ବ୍ରହ୍ମଜ୍ଞାନ ମୂଳକ ୧୩ଶ ସ୍କନ୍ଧଟି ଦ୍ୱାରକା ଦାସଙ୍କ ଦ୍ୱାରା ରଚିତ ।

ଭାଗବତ ଗ୍ରନ୍ଥ ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ଗ୍ରନ୍ଥ । ଅତୀତରେ ଏପରି ପ୍ରାୟ କୌଣସି ଓଡ଼ିଆ ଘର ନଥିଲା ଯେଉଁଠି ଭାଗବତ ଆଦର ନଥିଲା । ଭାଗବତକୁ "ଗାଦି" ସ୍ୱଭାବରେ ପୂଜା କରାଯାଉଥିଲା । ଓଡ଼ିଆଙ୍କର ବିଶ୍ୱାସ ଯେ ମୃତ୍ୟୁବେଳେ ଭାଗବତରୁ ଗୋଟିଏ ଅଧ୍ୟାୟ କାନରେ ପଡ଼ିଲେ ଜୀବ ମୋକ୍ଷ ଲଭକରେ ।

ଆମ ଓଡ଼ିଶା ରାଜ୍ୟର ପ୍ରତ୍ୟେକ ଗାଁରେ ଥାଏ ଭାଗବତ ଘର । ଗ୍ରାମବାସୀମାନେ ପ୍ରତିଦିନ ସନ୍ଧ୍ୟାରେ ସେଠାରେ ଏକାଠି ହୁଅନ୍ତି । ଭାଗବତ ପାଠ କରାଯାଏ । ଧର୍ମ ଆଲୋଚନା କରାଯାଏ । ଏହାଦ୍ୱାରା ଭାଗବତ ଘର ଏକ ନୈଶ ବିଦ୍ୟାଳୟର କାର୍ଯ୍ୟ କରେ । ପ୍ରୌଢ଼ ଶିକ୍ଷାର ପ୍ରସାର କରେ । ଲୋକମାନଙ୍କର ନୈତିକ ବଳ ସୃଷ୍ଟି କରି ସତ୍ ପଥରେ ପରିଚାଳିତ କରେ । ଭାଗବତର ନୀତିପୂର୍ଣ୍ଣ ପଦଗୁଡ଼ିକ, କଥା କଥାରେ ଲୋକମାନଙ୍କ ମୁଖରୁ ଉଚ୍ଚାରିତ ହୁଏ । ଭାଗବତ ପଦଗୁଡ଼ିକର ପ୍ରଭାବ ଓଡ଼ିଆ ସାମାଜିକ ଜୀବନକୁ ନିୟନ୍ତ୍ରିତ କରେ ।

"ଯାହାକୁ ରଖିବେ ଅନନ୍ତ । କି କରି ପାରେ ବଳବନ୍ତ ॥
ମନୁଷ୍ୟ ମଧ୍ୟେ ସାଧୁ ପ୍ରାଣୀ । ମରଣ କାଳେ ତାହା ଜାଣି ॥
ମଇଁ ଭାବେ ଯାର ମନ । ତାହାକୁ ରଖେ ଭଗବାନ ।
ଦଣ୍ଡିବା ଶକ୍ତି ଯାର ଥାଇ । ସେ ଯେବେ କ୍ଷମା ଆଚରଇ ॥
ସାଧୁଙ୍କ ଶ୍ରେଷ୍ଠ ସେହୁ ନର । ସୁଖ ଦୁଃଖରୁ ସେ ବାହାର ॥"

ଜାତୀୟ ସଂହତି ସ୍ଥାପନ କରିବାରେ ଏହି 'ଭାଗବତ' ଲୋକମାନଙ୍କ ମନରେ ଚେତନା ସୃଷ୍ଟି କରି ଆସିଛି । ଭାଗବତ ସ୍ନେହ ଓ ପ୍ରୀତିରେ ସମସ୍ତଙ୍କୁ ବାନ୍ଧି ଦିଏ, ଲୋକ ହିଂସା ଭାବ ତ୍ୟାଗକରି ଅହିଂସା ମାର୍ଗରେ ପରିଚାଳିତ ହୁଅନ୍ତି ।

"ଯେ ପ୍ରାଣୀ ପରେ ହିଂସା କରେ । ଦେବତା ପୂଜା ସେ ନ ତରେ ॥
ଯେ କରେ ଦାନ ଉପକାର । ସେ ଧର୍ମ ଜ୍ଞାନୀଙ୍କର ସାର ॥

ଦୁଃଖୀ ଦେଖି ପରିତ୍ରାଣ କରେ । ସଙ୍କଟୁ ପ୍ରାଣୀଙ୍କୁ ଉଦ୍ଧରେ ॥
ତା ଜନ୍ମ ଧନ୍ୟ ଏ ସଂସାରେ । ଯେ ରହେ ପର ଉପକାରେ ॥"

ନିଜକୁ ଅତି ବଡ଼ ମଣନ କରିବା ଏବଂ ଏହି କଥା ସବୁବେଳେ ଅନ୍ୟ ନିକଟରେ ପ୍ରକାଶ କରିବା ଏକ ଔଦ୍ଧତ୍ୟର ପ୍ରମାଣ । ଅତି ଗର୍ବ କଲେ ପ୍ରାଣୀର ଅମଙ୍ଗଳ ହୁଏ । ଏଣୁ ସବୁବେଳେ ବିନମ୍ର ଭାବ ପ୍ରଦର୍ଶନ କରିବା ଭଲ । ଏହା ଜ୍ଞାନୀମାନଙ୍କର ଲକ୍ଷଣ । ଏହି ଶିକ୍ଷା ଦେବା ପାଇଁ ଭାଗବତ କହେ—

"ଆତ୍ମ ପ୍ରଶଂସା ଯେ କରନ୍ତି । ସେ ପ୍ରାଣୀ ନରକେ ପଡ଼ନ୍ତି ॥"

ଏଥିପାଇଁ

ଅମୃତ ବିନୟ ବଚନ । କହିବ ତୋଷିବ ପ୍ରାଣୀ ମନ ॥"

କୌଣସି କ୍ଷେତ୍ରରେ ହତୋତ୍ସାହିତ ନ ହୋଇ କାମ କରିବାକୁ ଏହି ଭାଗବତ ଶିକ୍ଷା ଦେଇଛି । କେଉଁ ଉପାୟରେ ଅସମ୍ଭବ ସମ୍ଭବ ହୋଇ ପାରିବ ଏହି କଥା ମଧ୍ୟ ଭାଗବତ ସୂଚନା ଦିଏ ।

"ଧନ କାର୍ପଣ୍ୟ ସେବା ଫଳେ । କିବା ଅସାଧ୍ୟ ମହୀତଳେ ॥"

ମର୍ତ୍ତ୍ୟମଣ୍ଡଳରେ ସମସ୍ତେ ବାସନା ବଳେ ଲୀଳା ସାଙ୍ଗ କରିବେ । ଏଣୁ କୌଣସି ପଦାର୍ଥରେ ଆଶା ନ କରି କାମ କରିବା ଉଚିତ । ସତ୍‌ସଙ୍ଗ କରିବା ପାଇଁ ଭାଗବତ ଶିକ୍ଷା ଦେଉଛି । ଭାଗବତ କହେ ଏହି ଭଙ୍ଗୁର ସଂସାରରେ ଆମେ ସମସ୍ତେ ସତ୍ୟ, ନ୍ୟାୟ ଓ ନମ୍ର ପଥ ଗ୍ରହଣ କରିବା ଦରକାର ।

"ମର୍ତ୍ତ୍ୟେ ମନୁଷ୍ୟ ଦେହ ବହି । ଦେବତା ହେଲେହେଁ ମରଇ ॥
ଆପଣା ହସ୍ତେ ଜିହ୍ୱା ଛେଦି । କେ ତାର ଅଛି ପ୍ରତିବାଦୀ ॥
ଏଣୁ ଦୁର୍ଜନ ସଙ୍ଗ ଦୋଷ । କରେ ସଜ୍ଜନ ଜ୍ଞାନ ଧ୍ୱଂସ ॥

ଭାଗବତ ଘରେ ଉଚ୍ଚ ନୀଚ, ଶିକ୍ଷିତ ଅଶିକ୍ଷିତ, ସ୍ତ୍ରୀ ପୁରୁଷ, ଯୁବକ ବୃଦ୍ଧର ବାଛ ବିଚାର ନଥାଏ । ସମସ୍ତେ ଏକାଠି ହୋଇ ବସି ଭାଗବତ ଶୁଣନ୍ତି । ଜଣେ ବସି ଭାଗବତ ପଢ଼େ ସମସ୍ତେ ଶୁଣନ୍ତି । କେହି କେହି ଭାଗବତ ପଂକ୍ତିଗୁଡ଼ିକର ବ୍ୟାଖ୍ୟା କରନ୍ତି । ମଝିରେ ମଝିରେ ଭାଗବତ ଘରେ ଭାଗବତ ସପ୍ତାହ ବସେ, ହରିବାଟ ହୁଏ । ଏହା ଦ୍ୱାରା ଲୋକ-

ମାନଙ୍କର ଧର୍ମ ପ୍ରତି ଆଶକ୍ତି ବଢ଼େ । ତ୍ୟାଗ କରିବାକୁ ଲୋକେ ଉଦ୍ବୁଦ୍ଧ ହୁଅନ୍ତି । କୌଣସି ଅର୍ଥଚୌର୍ଯ୍ୟ ଓ ଅନ୍ୟାୟ କରିବାକୁ ପ୍ରବୃତ୍ତି ଆସିଲେ ଭାଗବତର ପଂକ୍ତିଗୁଡ଼ିକ ମନେ ପଡ଼ି ଲୋକେ ସେଥିରୁ ନିବୃତ୍ତ ହୁଅନ୍ତି ।

କେବଳ ଯେ ଭାଗବତ ଘରେ ବସି ଗ୍ରାମବାସୀମାନେ ମାତ୍ର ଶିକ୍ଷା କରନ୍ତି ସେ କଥା ନୁହେଁ । ଏହି ଭାଗବତ ଘର ଥିଲା ଗ୍ରାମବାସୀଙ୍କ ସୁଖ ଦୁଃଖ ହାନିଲାଭର ସାଥୀ । ଗ୍ରାମର ବିବାଦ ହେଲେ, ନିଷ୍ପତ୍ତି ହୁଏ ଭାଗବତ ଘରେ । ଭାଇ ଭାଗ ଠାରୁ ଆରମ୍ଭ କରି ଧର୍ମ ଚର୍ଚ୍ଚା, ଶିକ୍ଷା, ଅବସର ବିନୋଦନ ପର୍ଯ୍ୟନ୍ତ ସବୁଥିର ମୂଳ କେନ୍ଦ୍ର ଭାଗବତ ଘର । ଏହି ସବୁ କାରଣରୁ ଗ୍ରାମବାସୀମାନେ ଭାଗବତ ଘରକୁ କିଛି କିଛି ଦାନ କରୁଥିଲେ । ପଣ୍ଡିତ ଲୋକମାନଙ୍କୁ ଆମନ୍ତ୍ରଣ କରି ଭାଗବତର ଗୂଢ଼ ରହସ୍ୟକୁ ବୁଝୁ ଥିଲେ । ଏହାକୁ ଭାଗବତ ସଭା ମଧ୍ୟ କୁହାଯାଏ । ଭାଗବତ ସଭାରେ ବିଭିନ୍ନ ଆଲୋଚନା ହୁଏ । ଭାଗବତର ନାନା ଆଲୋଚନାରୁ ଗ୍ରାମବାସୀ ମାନେ ଭବିଷ୍ୟତ ବିଷୟରେ ସଚେତନ ହୁଅନ୍ତି । ଭାଗବତରେ ଭବିଷ୍ୟତ ପ୍ରସଙ୍ଗରେ ନାନା ବାର୍ତ୍ତା ବର୍ଣ୍ଣିତ ହୋଇଛି । ଦୁଷ୍ଟଙ୍କୁ ଦମନ କରି, ଧର୍ମ ପାଳନ ପାଇଁ, ଯୁଗେ ଯୁଗେ ଭଗବାନ ଜନ୍ମ ଗ୍ରହଣ କରନ୍ତି ।

"ଏ ହେତୁ ଧର୍ମ ରକ୍ଷା ଅର୍ଥେ । ଶରୀର ବହୁ ନାନା ମତେ ॥
ଗଗନେ ଯେସନେ ନୀରଦ ପନ୍ତି । ଉଭରି ପୁଣି ଲୀନ ହୋନ୍ତି ॥
ଏମନ୍ତେ ତୋ ମାୟା ବିଭୂତି । କେ ଜାଣି ପାରିବ ଶ୍ରୀପତି" ॥

ଓଡ଼ିଶାର ଗାଁ ଗହଳ ଭିତରେ ଦରିଦ୍ର ଗ୍ରାମବାସୀ ଏହି ଭାଗବତରୁ ପାଉଥାଏ ଅଶେଷ ଆଶା, ଆଶ୍ୱାସନା । ଦିନେନା ଦିନେ ଧର୍ମର ଜୟ ହେବ ଅଧର୍ମର ବିଲୟ ଘଟିବ, ଏହି ଆଶାରେ ସେ ନାନା ନିର୍ଯ୍ୟାତନା ସହି ମଧ୍ୟ ବିନପରେ ପରେ ଦିନ କଟାଇ ଦେଉଥିଲା । ଅହଙ୍କାର ହୀନ, ସରଳ ନିରାଡ଼ମ୍ବର ଜୀବନ ଯାପନ କରି ସବୁବେଳେ ଧୈର୍ଯ୍ୟ ସହକାରେ କାର୍ଯ୍ୟ କରିବାକୁ ସେ ଶିକ୍ଷା କରିଥିଲା ଏହି ଭାଗବତରୁ ।

କେବଳ ଯେ ଓଡ଼ିଆ ଭାଗବତ ଓଡ଼ିଶାରେ ପରିଚିତ ଓ ଲୋକପ୍ରିୟ ତାହା ନୁହେଁ । ଏହା ନାନା ଭାଷାରେ ଭାଷାନ୍ତର ହୋଇ ଅନ୍ୟାନ୍ୟ

ପ୍ରଦେଶରେ ମଧ୍ୟ ବେଶ୍ ଲୋକପ୍ରିୟ ହୋଇ ପାରନ୍ତି । ସିଂହଭୂମି, ଫୁଲଝର, ଷଡ଼ାଜାପାଟଣା ଇତ୍ୟାଦି ଅଣଓଡ଼ିଆ ଅଞ୍ଚଳରେ ଏବେ ମଧ୍ୟ ଏହି ଗ୍ରନ୍ଥର ଆଦର କିଛି କମ ନୁହେଁ । ବଙ୍ଗଳା ଅକ୍ଷରରେ ଓଡ଼ିଆ ଭାଗବତ ଗ୍ରନ୍ଥ ହୋଇଥିବାରୁ ମେଦିନୀପୁରରେ ବସବାସ କରୁଥିବା ଓଡ଼ିଆ ଭାଇମାନେ ଗାଇ ପାରୁଛନ୍ତି ।

"ବମ୍ମେର ପୋତନା", ତେଲୁଗୁ ଭାଷାରେ ଏହି ଭାଗବତକୁ ଅନୁବାଦ କରିଥିଲେ । ଗୁଜୁରାଟୀ ସାହିତ୍ୟରେ ଭଟ୍ଟେଶ୍ୱର ଭାଗବତର ଅନୁବାଦକ ଥିଲେ । ଆସାମର ପ୍ରଧାନ ବୈଷ୍ଣବ ଶଙ୍କର ଦେବ ଭାଗବତ ମୂଷିଣକୁ ଆସାମୀ ଭାଷାରେ ଅନୁବାଦ କରିଥିଲେ । କିନ୍ତୁ ଓଡ଼ିଆ ଭାଷାରେ ଭାଗବତକୁ ଏକାକୀ ଯେପରି ଜଗନ୍ନାଥ ଦାସ ଅନୁବାଦ କରିଥିଲେ, ଆସାମୀ ଭାଷାରେ ସେ ପରି ହୋଇ ନାହିଁ । ଆସାମୀ ଭାଷାରେ ଅନୁବାଦ କରିବା ପାଇଁ ଅନ୍ୟ ଏକ କବି "ଅନନ୍ତ କନ୍ଦଳି ଶଙ୍କର ଦେବ"ଙ୍କ ଅବଦାନ କିଛି କମ ନୁହେଁ । ଆସାମୀ ଭାଷାରେ ଭାଗବତର ଗଦ୍ୟ-ଅନୁବାଦ କରିଥିଲେ କବି "ଭଟ୍ଟଦେବ" । ଖ୍ରୀ ୧୬ଶ ଶତାବ୍ଦୀରେ ଆସାମର ବୈଷ୍ଣବକବି ଶଙ୍କରଦେବ ଓଡ଼ିଶା ଆସିଥିଲେ । ଭକ୍ତକବି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରେ ପ୍ରଭାବିତ ହୋଇ ସେ ଯେ କେବଳ ଭାଗବତକୁ ଆସାମୀ ଭାଷାରେ ଅନୁବାଦ କରିଥିଲେ, ସେ କଥା ନୁହେଁ । "ଭାଗବତ ଘର"ର ଆଦର୍ଶରେ ଅନୁପ୍ରାଣିତ ହୋଇ ଆସାମର ପୁର ପଲ୍ଲୀରେ "ନାମଘର" ବା ଭାଗବତ ଘର ପ୍ରତିଷ୍ଠା କରିଥିଲେ । ନାନା ସ୍ଥାନରେ ମଠ, ମନ୍ଦିର, ଇତ୍ୟାଦି ଦୃଷ୍ଟିଗୋଚର ହୁଏ କିନ୍ତୁ ଓଡ଼ିଆର ଭାଗବତ ଘର ଅନ୍ୟ କେଉଁଠି ଦେଖାଯାଏ ନାହିଁ । ଓଡ଼ିଶାର ଭାଗବତ ଘର ନିଜସ୍ୱ, ଓଡ଼ିଆ ସଂସ୍କୃତିର ଏକ ପ୍ରଧାନ ବୈଶିଷ୍ଟ୍ୟ ।



# ପଞ୍ଚସଖାଙ୍କ ଧର୍ମଚେତନା ଓ ଜଗନ୍ନାଥ ଦାସ

ଡଃ ବୀଣାପାଣି ସିଂହ

ପଞ୍ଚସଖା ସମ୍ପ୍ରଦାୟ ମଧ୍ୟଯୁଗରେ ଏକ ବିପୁଳାୟତନ ସାହିତ୍ୟ ସୃଷ୍ଟି କରିଥିଲେ । ଷୋଡଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପଞ୍ଚସଖାଙ୍କ ଧର୍ମଚେତନା ଓ ଅଧ୍ୟାତ୍ମଭାବନା ନିରବଚ୍ଛିନ୍ନ ପ୍ରବାହିତ ହୋଇଥିଲା ।

ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ ବା ଶିଶୁ ଅନନ୍ତ ପଞ୍ଚସଖା ନାମରେ ପରିଚିତ । ଏମାନେ ସମସ୍ତେ ଚୈତନ୍ୟଙ୍କ ସମସାମୟିକ ତଥା ସଖା ଥିଲେ । ପଞ୍ଚସଖାଙ୍କର ବାହ୍ୟମନ୍ତ୍ର ବା ସଂକୀର୍ତ୍ତନ ମନ୍ତ୍ର, ରାଧା ବା କୃଷ୍ଣ-ବ୍ୟଞ୍ଜକ ଥିଲେ ହେଁ ଗୁହ୍ୟମନ୍ତ୍ର ବା ଜପମନ୍ତ୍ର ଥିଲା ଶୂନ୍ୟ ବ୍ୟଞ୍ଜକ । ପଞ୍ଚସଖାମାନେ ଶୂନ୍ୟବାଦୀ, ଜ୍ଞାନ ଓ ଯୋଗ ସେମାନଙ୍କର ସାଧନାର ମାର୍ଗ ।

"ବ୍ରହ୍ମ" ହିଁ ପଞ୍ଚସଖାଙ୍କର ସାଧ୍ୟ ଓ ଆରାଧ୍ୟ । ଜଗନ୍ନାଥ ବା ମହାବିଷ୍ଣୁ ହେଉଛନ୍ତି ବ୍ରହ୍ମଙ୍କର ସଙ୍କେତ । ସେ ଅବତାରୀ, ଶ୍ରୀକୃଷ୍ଣ ତାଙ୍କର ମାତ୍ର ଏକ-କଳା ବିଶିଷ୍ଟ ଅବତାର । ଜଗନ୍ନାଥଙ୍କ ସର୍ବମୟ ଓ ସର୍ବବ୍ୟାପୀ ବ୍ରହ୍ମତ୍ୱ ଘୋଷଣା କରି ବଳରାମ ଦାସ "ବେଦାନ୍ତ ସାର ଗୁପ୍ତ ଗୀତା"ରେ ଲେଖିଛନ୍ତି—

"ସର୍ବଦା ମହାବ୍ଧିରେ ସ୍ଥିତ
ଏଥୁ ସକଳ ଜାତ ହୋନ୍ତି ।
ସମସ୍ତ ଅବତାର ମାନ
ଜାତ ହୋଇଣ ପଶେ ପୁଣ ।
ବେଦାନ୍ତ ସାର ବ୍ରହ୍ମ ଏହି
ବେଦହିଁ ବର୍ଣ୍ଣି ନ ପାରଇ ॥"

ପଞ୍ଚସଖାଙ୍କ କବିମାନେ ନିରାକାର ବ୍ରହ୍ମଙ୍କ ଜଗନ୍ନାଥଙ୍କ ଠାରୁ ଅଭିନ୍ନ ବୋଲି ପ୍ରତିପାଦନ କରିଅଛନ୍ତି । ନିତ୍ୟଗୋଲକ ବିହାରୀ ନିର୍ଗୁଣାରଙ୍କୁ ପାଇବା ପାଇଁ ଜ୍ଞାନ ଓ ଭକ୍ତି ଉଭୟର ଆଶ୍ରୟ ନେଇଛନ୍ତି । ଶରୀର ସାଧନାକୁ ହଠଯୋଗ ଓ ରାଜଯୋଗ ଉପରେ ପ୍ରତିଷ୍ଠିତ କରିଛନ୍ତି ।

ପଞ୍ଚସଖା ପ୍ରବର୍ତ୍ତିତ ଉତ୍କଳୀୟ ବୈଷ୍ଣବ ଧର୍ମ ଓ ଚୈତନ୍ୟ ପ୍ରବର୍ତ୍ତିତ ଗୌଡ଼ୀୟ ବୈଷ୍ଣବ ଧର୍ମ ମଧ୍ୟରେ ଏକ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ପଞ୍ଚସଖା ପ୍ରବର୍ତ୍ତିତ ଉତ୍କଳୀୟ ବୈଷ୍ଣବ ଧର୍ମରେ ମୋକ୍ଷ ବା ନିର୍ବାଣ ସାଧନାର ଚରମ ଲକ୍ଷ୍ୟ ରୂପେ ବିବେଚିତ । ଐହିକ ବରଲାଭ ଅପେକ୍ଷା ମୁକ୍ତି ବା ମୋକ୍ଷ ଏଥିରେ ଚରମ ଓ ପରମ କାମ୍ୟ ରୂପେ ବିବେଚିତ । କିନ୍ତୁ ଗୌଡ଼ୀୟ ବୈଷ୍ଣବ ଧର୍ମରେ ନିତ୍ୟ ବୃନ୍ଦାବନରେ ରସିକଶେଖର ଶ୍ରୀକୃଷ୍ଣଙ୍କ ଲୀଳାସଙ୍ଗୀନିତ୍ତ ମୋକ୍ଷ ଅପେକ୍ଷା ଏକ ବୃହତ୍ତର ଲକ୍ଷ୍ୟ ରୂପେ ଗୃହୀତ ହୋଇଛି । ମୋକ୍ଷ ସାଧନାରେ ମନୁଷ୍ୟ ମାନବିକତାର ମହିମାରେ ଭାସ୍ୱର; ମାତ୍ର ଗୌଡ଼ୀୟ ପ୍ରେମଭକ୍ତି ସାଧନାରେ ମନୁଷ୍ୟ ପରମେଶ୍ୱର ଦୈନ୍ୟରେ କାରୁଣ୍ୟମୟ । ବ୍ରହ୍ମଙ୍କ ଐଶ୍ୱର୍ଯ୍ୟ, ଉତ୍କଳୀୟ ବୈଷ୍ଣବମାନଙ୍କୁ ଅଭିଭୂତ କରେ; ମାତ୍ର ଭଗବତ ମାଧୁର୍ଯ୍ୟରେ ଗୌଡ଼ୀୟମାନଙ୍କର ଆଧ୍ୟାତ୍ମ ଅଭୀପ୍ସା ତୃପ୍ତ ହୋଇଥାଏ । ଗୌଡ଼ୀୟ ବୈଷ୍ଣବ ତତ୍ତ୍ୱରେ ଜୀବ ଲୀଳାର ମଧୁଚକ୍ରରେ ଆବର୍ତ୍ତଶୀଳ ଏକ ବଦ୍ଧପ୍ରାଣୀ, ମାତ୍ର ଉତ୍କଳୀୟ ପଞ୍ଚସଖା ତତ୍ତ୍ୱରେ, ମାଧ୍ୟାକର୍ଷଣର ଘୂର୍ଣ୍ଣାବର୍ତ୍ତ ଛେଦନକରି, ନିର୍ବାଣର ମହାଶୂନ୍ୟତାରେ ଜୀବର ମୋକ୍ଷ ପ୍ରାପ୍ତି ଘଟିଥାଏ ।

ସୃଷ୍ଟିତତ୍ତ୍ୱ ବା ସୃଷ୍ଟି ରହସ୍ୟ ପଞ୍ଚସଖା ମତବାଦରେ ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ସେମାନଙ୍କ ଦର୍ଶନରେ ଅଲେଖ ବା ଶୂନ୍ୟ

ସୃଷ୍ଟିର ଏକ ଓ ଅଦ୍ୱୟ ଉତ୍ସସ୍ଥଳ ରୂପେ ବିବେଚିତ ହୁଅନ୍ତି । ଅଣାକାର, ଅନାଦି ବ୍ରହ୍ମ ଓ ନିର୍ଗୁଣ ପୁରୁଷ ପ୍ରଭୃତି ବିଭିନ୍ନ ନାମରେ ନାମିତ ହୋଇଥିଲେ ହେଁ ମୂଳତଃ ସେ ଏକ, ଅଭିନ୍ନ, ସେ ନିର୍ଗୁଣ, ସକଳ ଗୁଣାତୀତ । ଅଣାକାର ସୃଷ୍ଟି ପରିତ୍ରାଣ ଇଚ୍ଛାରେ ପ୍ରଗଟ ହେଲେ, ନିରାକାର ବିଷ୍ଣୁ ବା ଈଶ୍ୱରରେ ପରିଣତ ହୁଅନ୍ତି । ଏହି ନିରାକାର ବିଷ୍ଣୁ ପୁଣି ମହାବିଷ୍ଣୁ । ତାଙ୍କଠାରୁ ଉଦ୍ଭୂତ ଅବତାର ବିଷ୍ଣୁ ଯାହାଙ୍କର ଅନ୍ୟନାମ "ନାରାୟଣ" । ବିଶ୍ୱର ପରିତ୍ରାଣ ଉଦ୍ଦେଶ୍ୟରେ ମହାବିଷ୍ଣୁ କାଳେ କାଳେ ଏହିପରି ଅବତାର ଗ୍ରହଣ କରିଥାଆନ୍ତି । ଏହାର ନେପଥ୍ୟରେ ମହାଯାନ ବୌଦ୍ଧଧର୍ମର ଅବତାରବାଦ ଓ ଧ୍ୟାନୀ ବୁଦ୍ଧମାନଙ୍କର ପରିକଳ୍ପନା ନିହିତ । ବତିଶି ଅକ୍ଷର ନିରାକାର ମନ୍ତ୍ରରେ ଅଣାକାର ବିଷ୍ଣୁ ଆରାଧିତ ହୋଇ ଥାଆନ୍ତି ।

"ଦ୍ୱାବିଂଶ ଅକ୍ଷର ହୃଦେ ସ୍ଥାପିଲି
ନାଭି ପରେ ବସି ଧ୍ୟାନ ମୁଁ କଲି ।"

(ଶୂନ୍ୟ ସଂହିତା : ଅଚ୍ୟୁତାନନ୍ଦ)

ପଞ୍ଚସଖା ଯୁଗର ପ୍ରଧାନ ପଞ୍ଚସନ୍ଥ କବିଙ୍କର ନିରବଚ୍ଛିନ୍ନ ସାଧନା ଭକ୍ତିଭାବ ତଥା ଧର୍ମଚେତନା ଫଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେହି ଯୁଗ ଜାଜ୍ଜ୍ୱଲ୍ୟମାନ ହୋଇ ରହିଛି ।

"ଜଗନ୍ନାଥ ଦାସ" ଏହି ପଞ୍ଚସଖା ଯୁଗର ଏକ ଅମଳିନ ପ୍ରତିଭା । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତରେ—"ଓଡ଼ିଆ ଜାତି ପକ୍ଷେ ଜଗନ୍ନାଥ ଦାସ ଜଣେ ମହାପୁରୁଷ, ଜାତିର ଜଣେ ନିର୍ମାତା ।" ଏହି ମହାପୁରୁଷଙ୍କର ଜନ୍ମ ହୁଏ ପୁରୀ ଜିଲ୍ଲାର କପିଳେଶ୍ୱର ପୁର ଶାସନରେ ୧୪୧୨ ଶକାବ୍ଦ ବା ଖ୍ରୀ: ଅ: ୧୪୯୦ ଭାଦ୍ରବ ମାସ ଶୁକ୍ଳପକ୍ଷ ଅଷ୍ଟମୀ, ଅନୁରାଧା ନକ୍ଷତ୍ର ବୃହସ୍ପତିବାର ଦିନ ମଧ୍ୟାହ୍ନରେ । ସେଦିନ ଯୋଗକୁ ରାଧାଷ୍ଟମୀ । ସେଥିଲାଗି ଜଗନ୍ନାଥଙ୍କୁ କେହି କେହି ଶ୍ରୀରାଧାଙ୍କ ଅଂଶାବତାର ବୋଲି କହିଥାଆନ୍ତି । ପିତା ଭଗବାନ ଦାଶ, ମାତା ଭଗବର୍ତ୍ତୀ ପଦ୍ମାବତୀ ଦେବୀ । ଭଗବାନ ଦାଶ ଶ୍ରୀମନ୍ଦିରର ପୁରାଣ ପଣ୍ଡା ରୂପେ ନିତ୍ୟଦିନ ପୁରାଣ ଆବୃତ୍ତି କରୁଥିଲେ । ନବାଗତ ଶିଶୁଟିର ମହାପୁରୁଷ ଲକ୍ଷଣ ଓ ଶୁଦ୍ଧ-

ସୁବର୍ଣ୍ଣକାନ୍ତି ସମବେତ ଦର୍ଶକଙ୍କୁ ମୁଗ୍ଧ କରିଥିଲା । ଜଗତଗୁରୁନାଥ ଜଗନ୍ନାଥଙ୍କ ଅନୁଗ୍ରହରୁ ସନ୍ତାନ ଲାଭ କରିଥିବାରୁ ଭଗବାନ ଦାସ ପୁତ୍ରର ନାମ କରଣ କଲେ 'ଜଗନ୍ନାଥ' ।

ପୂର୍ବଜନ୍ମଗତ ଶକ୍ତି ବଳରେ ଜଗନ୍ନାଥଙ୍କର ବାଲ୍ୟକାଳରୁ ଷଡ଼ ବର୍ଣ୍ଣର ଉନ୍ମେଷ ମିଳିଥିଲା । ଯଜୁର୍ବେଦ, ସାମ୍‌ବେଦର ସଂହିତାମାନ ତାଙ୍କର କଣ୍ଠସ୍ଥ ଥିଲା । ଦ୍ୱାଦଶ ବର୍ଷ ବୟସରେ ସେ ଅମରକୋଷ, ବ୍ୟାକରଣ, କାବ୍ୟନାଟକାଦି ଅଧ୍ୟୟନ କରିଥିଲେ । ତୁଳସୀ ଦୁଇପତ୍ରରୁ ବାସିଲାପରି ବାଲ୍ୟକାଳରୁ ତାଙ୍କର ଯଶ ଚତୁର୍ଦ୍ଦିଗରେ ବ୍ୟାପିଗଲା, ପଣ୍ଡିତ ସମାଜରେ ସେ ଆଦରଣୀୟ ହୋଇ ଉଠିଲେ । ସେ ନିତିଦିନ ଶ୍ରୀଜଗନ୍ନାଥଙ୍କ ଦର୍ଶନାର୍ଥେ ଶ୍ରୀମନ୍ଦିରକୁ ଯାଉଥିଲେ ଓ ଶ୍ରୀମନ୍ଦିରର ଦକ୍ଷିଣ ଦିଗରେ 'ବଟଗଣେଶ'ଙ୍କ ନିକଟରେ ଦୈନିକ ଭାଗବତ ପାଠ କରୁଥିଲେ । ତାଙ୍କର ଭାଗବତର ସରଳ, ସୁନ୍ଦର ବ୍ୟାଖ୍ୟା ସମବେତ ଜନତାଙ୍କୁ ବିସ୍ମିତ, ଚକିତ କରିଥିଲା ।

ସେତେବେଳେ ଜଗନ୍ନାଥ ଦାସ ଊନବିଂଶତି ବୟସରେ ପଦାର୍ପଣ କରିଥାଆନ୍ତି । ବଡ଼ ଦେଉଳର ବଟବୃକ୍ଷ ମୂଳରେ ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଧ ବ୍ରହ୍ମସ୍ତୁତି ପାଠ କରୁଥିବା ସମୟରେ ଶ୍ରୀ ଚୈତନ୍ୟଙ୍କ ସହ ତାଙ୍କର ସାକ୍ଷାତ ହୁଏ । ଜଗନ୍ନାଥଙ୍କ ଭାଗବତର ସରଳବ୍ୟାଖ୍ୟା ଶୁଣି ଶ୍ରୀ ଚୈତନ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇ ପ୍ରେମ ବିଭୋଳରେ ତାଙ୍କୁ ଆଲିଙ୍ଗନ କଲେ । ଏହି ଆଲିଙ୍ଗନାବସ୍ଥା ଅଢ଼ାଇଦିନ ପର୍ଯ୍ୟନ୍ତ ରହିଥିଲା ବୋଲି ଦିବାକର ଦାସ ଉଲ୍ଲେଖ କରିଛନ୍ତି ।

"ପ୍ରେମ ଭରେଣ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ।<br>
ଅଢ଼ାଇ ଦିବସ ପର୍ଯ୍ୟନ୍ତେ । ଦୁହେଁ ରହିଲେ ପ୍ରେମଚିତ୍ତେ ॥

(ଜଗନ୍ନାଥ ଚରିତାମୃତ- ୨ୟ ଅଧ୍ୟାୟ)

ଶ୍ରୀ ଚୈତନ୍ୟ କାଶୀମିଶ୍ରଙ୍କ ଗୃହରେ ଅବସ୍ଥାନ କରୁଥାଆନ୍ତି । ଜଗନ୍ନାଥ ଦାସ ଦୁଇ ହସ୍ତରେ ଦୁଇଟି ମହାପ୍ରସାଦ କୁଡ଼ୁଆ ଧରି ସେଠାରେ ପହଞ୍ଚିଲେ । ତାଙ୍କୁ ଦେଖି ଚୈତନ୍ୟ ଅତି ଆନନ୍ଦରେ କହିଲେ—

"ପୂର୍ଣ୍ଣ ଭକ୍ତିମୟ ଦାସ ଆପଣେ—ଆସିବା ହେଉ ।" ଜଗନ୍ନାଥ ଦାସ ତତ୍‌କ୍ଷଣାତ କହିଲେ—"ଆଜ୍ଞା ମୁଁ ଅନୁପଯୁକ୍ତ ମୋତେ ସ୍ପର୍ଶ କରନ୍ତୁ ନାହିଁ । ଦୟା କରି ମୋତେ ଦୀକ୍ଷା ପ୍ରଦାନ କରନ୍ତୁ ।" ଶ୍ରୀ ଚୈତନ୍ୟଙ୍କ ଆଦେଶକ୍ରମେ ନିତ୍ୟାନନ୍ଦ ଦାସ ଜଗନ୍ନାଥଙ୍କୁ "ହରେ ରାମ ହରେ ରାମ ରାମ ରାମ ହରେ ହରେ"—ଏହି ଦ୍ୱାତ୍ରିଂଶାକ୍ଷର ପ୍ରେମମୟ ଷୋଡ଼ଶ ହରିନାମ ମହାମନ୍ତ୍ର ଉପଦେଶ ଦେଲେ ।

ଜଗନ୍ନାଥ ଦାସ ନିଜକୁ ରାଧା ଓ ଚୈତନ୍ୟଙ୍କୁ କୃଷ୍ଣ ବୋଲି ଜ୍ଞାନ କରି ଶ୍ରୀ ଚୈତନ୍ୟଙ୍କର ସମସ୍ତ କାର୍ଯ୍ୟ କରୁଥିଲେ । ଏଥିରେ ସନ୍ତୁଷ୍ଟ ହୋଇ ଶ୍ରୀଚୈତନ୍ୟ ଥରେ ଜଗନ୍ନାଥଙ୍କୁ ପୂର୍ବସିଦ୍ଧ ଅଙ୍ଗପ୍ରାପ୍ତି ବିଷୟରେ ପ୍ରଶ୍ନ କଲେ । ନିତ୍ୟ ବୈକୁଣ୍ଠବାସୀ ନିତ୍ୟକୃଷ୍ଣ, ନିତ୍ୟରାଧା ଏକାନ୍ତଭାବ ବେଳେ ପରସ୍ପରକୁ ଚାହିଁ ଦୁହେଁ ହସିବାରୁ କୃଷ୍ଣଙ୍କ ହାସରୁ ଚୈତନ୍ୟ ଓ ରାଧାଙ୍କ ହାସରୁ ଜଗନ୍ନାଥ ଦାସ ଜନ୍ମ ହୋଇଥିବା ଏବଂ ନିତ୍ୟ କୃଷ୍ଣଙ୍କ ଆଦେଶରେ ମର୍ତ୍ତ୍ୟଧାମରେ ଦୁହେଁ ଅବତୀର୍ଣ୍ଣ ହେବା ପ୍ରସଙ୍ଗ ଦାସେ ବର୍ଣ୍ଣନା କଲେ । ଚୈତନ୍ୟଙ୍କର ସ୍ୱପୂର୍ବ ସିଦ୍ଧାଙ୍ଗ ଗତି ନିଜେ ଧ୍ୟାନରେ ଜାଣିବାରୁ ସେ ଦାସଙ୍କ ଉତ୍ତରର ସତ୍ୟତା ଉପଲବ୍ଧି କଲେ ଏବଂ ଦାସଙ୍କୁ ବହୁ ପ୍ରଶଂସା କଲେ । ଚୈତନ୍ୟ ଦେବ ସ୍ୱଅଙ୍ଗରୁ ପାଛୋଡ଼ି କଷାବସନ କାଢ଼ି ଦାସଙ୍କ ମସ୍ତକରେ ବାନ୍ଧିଦେଲେ ଏବଂ "ଅତିବଡ଼" ବୋଲି ସମ୍ବୋଧନ କଲେ । ଶ୍ରୀ ଚୈତନ୍ୟ କହିଲେ—"ଆଜି ମୋ ଆଗରେ ଦୁର୍ଲ୍ଲଭ ଚରିତ କହିଲ । ଯେଉଁ କଥା ଯୋଗୀନ୍ଦ୍ରମାନଙ୍କୁ ଅଗମ୍ୟ ତାହା ତୁମ୍ଭେ କହିଲ । ପୂର୍ବ ସିଦ୍ଧାଙ୍ଗ ପ୍ରସଙ୍ଗ ସତ୍ୟ । ତୁମ୍ଭର ଏହା ସ୍ମରଣ ହେବା ସ୍ୱାଭାବିକ । ଏହା ଅତିବଡ଼ କଥା । "ଅତିବଡ଼ କଥା କହିଲ, ତେଣୁ ଅତିବଡ଼ ହୋଇଲ ।" ସେହିଦିନଠାରୁ ଶ୍ରୀଚୈତନ୍ୟ ଦାସଙ୍କୁ ଶ୍ରଦ୍ଧାରେ 'ଅତିବଡ଼' ବୋଲି ଡାକନ୍ତି । ଚୈତନ୍ୟଙ୍କ ଠାରୁ ଶୁଣି ଅନ୍ୟମାନେ ମଧ୍ୟ ଦାସଙ୍କୁ ଅତିବଡ଼ ବୋଲି ଡାକିବାକୁ ଆରମ୍ଭ କଲେ ଓ ତାଙ୍କ ପ୍ରତି ଲୋକମାନଙ୍କର ଭକ୍ତି, ସମ୍ମାନ, ଶ୍ରଦ୍ଧା କ୍ରମେ ବୃଦ୍ଧି ପାଇବାକୁ ଲାଗିଲା ।

ପ୍ରଭୁ ଜଗନ୍ନାଥଙ୍କର ପରମଭକ୍ତ ଜଗନ୍ନାଥ ଦାସ ଅନେକ ଅଲୌକିକ ଶକ୍ତିର ଅଧିକାରୀ ହୋଇଥିଲେ । ରାଜା ପ୍ରତାପରୁଦ୍ର ଅନେକ

କଠୋର ପରୀକ୍ଷା କରିବା ପରେ ତାଙ୍କର ଅଲୌକିକତାକୁ ମାନି ନେଇଥିଲେ ।

ଥରେ ମହାରାଜା ପ୍ରତାପରୁଦ୍ର ଶ୍ରୀ ଜଗନ୍ନାଥଙ୍କ ଠାରେ କିପରି ବ୍ରଜଭାବ ଉପଲବ୍ଧି କରିପାରିବେ ବୋଲି ଶ୍ରୀଚୈତନ୍ୟ ଦେବଙ୍କୁ ପଚାରିଲେ । ଶ୍ରୀଚୈତନ୍ୟଙ୍କ ଅନୁମତିକ୍ରମେ ଜଗନ୍ନାଥ ଦାସ ମହାପ୍ରଭୁଙ୍କ ଠାରେ ରାଧାକୃଷ୍ଣ ଯୁଗଳମୂର୍ତ୍ତିର ଦର୍ଶନ ବିଷୟ ବୁଝାଇ ଦେଲେ । ରାଜା ପ୍ରତାପରୁଦ୍ର ଦେବ ଶୁଣିଲେ ଯେ ପ୍ରତିଦିନ ରାତ୍ରରେ ଦୁଇଜଣ ସ୍ତ୍ରୀ ଜଗନ୍ନାଥ ଦାସଙ୍କର ସେବା ପୂଜା ପାଇଁ ମଠକୁ ଆସୁଛନ୍ତି । ଅତିବଡ଼ିଙ୍କର ଚରିତ୍ରରେ କଳଙ୍କ ଆଶଙ୍କା କରି ରାଜା ଏହାର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ଥରେ ରାତିରେ ଲୁଚି ରହି ସତକୁ ସତ କନ୍ୟା ଦୁହିଁଙ୍କୁ ଦେଖି ବିସ୍ମିତ ହେଲେ ଓ ସେମାନଙ୍କୁ ଧରିବାକୁ ଆଦେଶ ଦେଲେ । କିନ୍ତୁ ରାଜା ଆଦେଶ ଦେବା ମାତ୍ରେ କନ୍ୟା ଦୁଇଟି ବିଜୁଳି ବେଗରେ ଉଭେଇ ଗଲେ । ଜଗନ୍ନାଥ ଦାସ ଏକଥା ଜାଣି ରାଜାଙ୍କୁ କହିଲେ—"ମହାରାଜା, ଏମାନେ ମୋର ଦୁଇସଖୀ ମେଧା; ସୁମେଧା । ରାଣୀଅନ୍ତଃପୁରରେ ଯେପରି ସ୍ତ୍ରୀ ପରିଚାରିକାମାନେ ମହାଦେଈଙ୍କର ସେବା କରନ୍ତି, ସେହିପରି ଏ ଦୁହେଁ ମୋର ସେବା କରନ୍ତି ।" ଏହା ଶୁଣି ରାଜା ସ୍ତମ୍ଭୀଭୂତ ହୋଇ ଜଗନ୍ନାଥ ଦାସଙ୍କୁ କ୍ଷମାଭିକ୍ଷା କଲେ ।

ଆଉ ଥରକର କଥା—କାଶୀରାମ ନାମକ ଜଣେ ବୋଇତ ବ୍ୟବସାୟୀ ଠାକୁରଙ୍କ ସେବାପାଇଁ ଗନ୍ଧରାଜ ଚନ୍ଦନ ଟେଳାଟିଏ ରାଜାଙ୍କୁ ଭେଟି ଦେଲେ । ପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗି କରିବା ପାଇଁ ରାଜା ସୁଗନ୍ଧି ଚନ୍ଦନ ଜଗନ୍ନାଥ ଦାସଙ୍କ ହାତରେ ଦେଲେ । ଜଗନ୍ନାଥ ଦାସ ଚନ୍ଦନ ଟେଳା ମଠକୁ ନେଇଯାଇ ଘୋର କାନ୍ଥରେ ଲେପି ଦେଲେ । ରାଜା ଏ କଥା ଜାଣି ବିରକ୍ତ ହେଲେ ଏବଂ ଜଗନ୍ନାଥ ଦାସଙ୍କୁ ଏ ବିଷୟରେ ପଚାରିବାରୁ ସେ କହିଲେ ଯେ ଚନ୍ଦନତକ ସେ ଠାକୁରଙ୍କ ଶ୍ରୀଅଙ୍ଗରେ ଲାଗି କରି ଦେଇଛନ୍ତି । ସତକୁ ସତ ରାଜା ଦେଖିଲେ ଯେଉଁ ଚନ୍ଦନ ଅତିବଡ଼ି ସେଦିନ କାନ୍ଥରେ ଲେପି ଦେଇଥିଲେ ତାହା ମହାପ୍ରଭୁଙ୍କ ଶ୍ରୀ ଅଙ୍ଗରେ ଲାଗିଛି । ଧନ୍ୟ ମହାପ୍ରଭୁ······ଧନ୍ୟ ତାଙ୍କର ଭକ୍ତ ।

ପ୍ରତାପରୁଦ୍ରଙ୍କ ରାଣୀ ପଦ୍ମାବତୀଙ୍କୁ ଦୀକ୍ଷା ଦେବାପାଇଁ ରାଜା ଶ୍ରୀଗୁରୁ ନିର୍ବାଚନ ବିଷୟରେ ଚୈତନ୍ୟଙ୍କଠାରୁ ଜାଣିଲେ ଯେ ଜଗନ୍ନାଥ

ଦାସଙ୍କ ପ୍ରକୃଷ୍ଟ ଗୁରୁ । ଚୈତନ୍ୟଙ୍କ ଅନୁରୋଧକ୍ରମେ ଜଗନ୍ନାଥ ଦାସ ନାରୀ ଭାବାପନ୍ନ ହେଲେ ଏବଂ ତାଙ୍କଠାରେ ନାରୀ ସୁଲଭ ଚିହ୍ନମାନ ପ୍ରକାଶ ପାଇଲା; ରାଣୀ ତାଙ୍କ ଠାରୁ ଦୀକ୍ଷା ଗ୍ରହଣ କଲେ ।

ଶ୍ରୀମନ୍ଦିରରେ ଜଗନ୍ନାଥ ଦାସ ବଟମୂଳରେ ପୁରାଣ ପାଠ କରୁଥାଆନ୍ତି । ତାଙ୍କୁ ଦର୍ଶନ କରି ପ୍ରତାପରୁଦ୍ରଙ୍କର ଭାବାବେଶ ହେଲା । ସେ ଅନୁଭବ କଲେ ସେ ଅତିବଡ଼ ଅଷ୍ଟଭୁଜ ହୋଇଛନ୍ତି । ତାଙ୍କର ଚାରୋଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ—ଦୁଇଟି ହସ୍ତରେ ଧନୁଶର ଓ ଅନ୍ୟ ଦୁଇଟି ହସ୍ତରେ ବଂଶୀ ଶୋଭା ପାଉଛି । ରାଜା ମାନସିକ ସ୍ତରରେ ଜଗନ୍ନାଥ ଦାସଙ୍କର ନିକଟରୁ ନିକଟବର୍ତ୍ତୀ ହେଲେ ।

ଦିନେ ଶତଶିଷ୍ୟ ପରିବେଷ୍ଟିତ ବ୍ରହ୍ମାନନ୍ଦ ନାମକ ଜଣେ ମାୟାବାଦୀ ସନ୍ନ୍ୟାସୀ ପତାକା ଓ ତ୍ରିକୋଣାକାର ଛତ୍ର ଧାରଣ କରି ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । ରାଜାଙ୍କୁ କହିଲେ "ପଣ୍ଡିତମାନଙ୍କୁ ଡକାଅ, ମୋତେ ବ୍ରହ୍ମ ଭିକ୍ଷା ଦିଅନ୍ତୁ । ବ୍ରହ୍ମ ତତ୍ତ୍ୱର ସମସ୍ୟାରେ ମୋତେ ପରାଜୟ କଲେ ମୁଁ ଭିକ୍ଷା ଗ୍ରହଣ କରିବି ନଚେତ୍ ମୁଁ ଏଠାରୁ ଗୋଟିଏ ଚତୁଷ୍କୋଣ ଛତ୍ର ଦେଇ ବିଦାୟ ନେବି ।" ସନ୍ନ୍ୟାସୀଙ୍କ ସହିତ ଯୁକ୍ତି କରିବା ପାଇଁ କୌଣସି ପଣ୍ଡିତ ସାହସ କଲେ ନାହିଁ । ରାଜା ଶେଷକୁ ଅତିବଡ଼ ଜଗନ୍ନାଥଙ୍କୁ ଡକାଇ ତର୍କରେ ଭାଗ ନେବାକୁ ଅନୁରୋଧ କଲେ । ଜଗନ୍ନାଥ ଦାସ ଯୁକ୍ତିରେ ଅଦ୍ୱୈତବାଦ ଖଣ୍ଡନ କରି ଶ୍ରୀଚୈତନ୍ୟ ପ୍ରଚାରିତ ଅଚିନ୍ତ୍ୟ ଭେଦାଭେଦବାଦ ପ୍ରତିପାଦନ କଲେ । ସନ୍ନ୍ୟାସୀ ବ୍ରହ୍ମାନନ୍ଦଙ୍କ ଗର୍ବ ଖର୍ବ ହେଲା । ସେ ତ୍ରିକୋଣାକାର ଛତ୍ର ଓ ପତାକା ପରିତ୍ୟାଗ କଲେ ।

ଜଗନ୍ନାଥ ଦାସଙ୍କ ମଠ ସମୁଦ୍ର ତଟରେ ଅବସ୍ଥିତ ସାତଲହଡ଼ି ମଠ ନାମରେ ପରିଚିତ । ଅହରହ ସମୁଦ୍ର ଗର୍ଜନରୁ ଟିକେ ଅବ୍ୟାହତି ପାଇବା ପାଇଁ ସ୍ୱାମୀଜୀ ମହାପ୍ରଭୁଙ୍କ ଚରଣରେ ନିବେଦନ କଲେ । ଭକ୍ତର ଡାକ ଭଗବାନ କାନେ କାନେ ଶୁଣିଥାଆନ୍ତି—ଜଗନ୍ନାଥ ଦାସଙ୍କ ପ୍ରାର୍ଥନା ଶୁଣି ମହାପ୍ରଭୁ ଜଗନ୍ନାଥ ସମୁଦ୍ରକୁ ସପ୍ତସ୍ତର ପଛକୁ ଘୁଞ୍ଚାଇ ନେଲେ । ସେହିଦିନଠାରୁ ମଠଟି 'ସାତ ଲହଡ଼ି ମଠ' ନାମରେ ଖ୍ୟାତ ।

ଷାଠିଏ ବର୍ଷ ବୟସରେ ଜଗନ୍ନାଥ ଦାସଙ୍କର ତିରୋଧାନ ହେଲା । ମାଘ ମାସ ଶୁକ୍ଳ ସପ୍ତମୀ ଦିନ ପ୍ରାତ୍ୟହିକ କର୍ମସାରି ଭଜନ ପାଇଁ ସେ

ସମୁଦ୍ର ତଟରେ ବସିଲେ । ନିଜର ପାଦୁକା ଦୁଇଟି ଶିଷ୍ୟ ହରିଦାସଙ୍କୁ ଦେଲେ । ମହାପ୍ରଭୁ ଜଗନ୍ନାଥଙ୍କୁ ଧ୍ୟାନ କରି ନୀଳଚକ୍ରକୁ ଚାହିଁ ରହିଲେ ଏବଂ ସେହିପରି ଅବସ୍ଥାରେ ତାଙ୍କ ଆତ୍ମା ସ୍ଥୂଳ ଶରୀର ତ୍ୟାଗ କରି ଶ୍ରୀଜଗନ୍ନାଥଙ୍କ ଦିବ୍ୟାଙ୍ଗରେ ଲୀନ ହୋଇଗଲା ।

ଜଗନ୍ନାଥ ଦାସ ସଂସ୍କୃତରେ କୃଷ୍ଣଭକ୍ତି କଳ୍ପଲତା, କୃଷ୍ଣଭକ୍ତି କଳ୍ପଲତା ଫଳଂ, ନିତ୍ୟ ଗୁପ୍ତମାଳା, ଉପାସନା ଶତକଂ, ପ୍ରେମସୁଧାମ୍ବୁଧିଃ, ନିତ୍ୟାଚାର, ଶ୍ରୀରାଧା ରସମଞ୍ଜରୀ, ନୀଳାଦ୍ରି ଶତକଂ, ଜଗନ୍ନାଥ ଚରିତାମ୍ବୋଧି ସରଣୀ ଓ ଓଡ଼ିଆରେ ଭାଗବତ, ଦାରୁବ୍ରହ୍ମ ଗୀତା, ତୁଳାଭିଣା, ମୃଗୁଣୀ ସ୍ତୁତି, ପାଷଣ୍ଡ ଦଳନ, ଗଜସ୍ତୁତି, ଦହିଖେଳ, ଅର୍ଥକୋଇଲି, ଗୁପ୍ତ ଭାଗବତ, ମହାଭାରତ ରଚନା କରିଥିଲେ । ଭାଗବତ ରଚନା ପାଇଁ ଜଗନ୍ନାଥ ଦାସ ଓଡ଼ିଆ ଜାତି ସମକ୍ଷରେ ଚିର ଭାସ୍ୱର ହୋଇ ରହିଛନ୍ତି । ଭାଷାର ସରଳତା, ଭାବର ମାଧୁରୀ, ମିତ ବାକ୍ୟର ବହୁଳତା ତଥା ନବାକ୍ଷରୀ ବୃତ୍ତ ଭାଗବତକୁ ସର୍ବଜନପ୍ରିୟ କରିପାରିଛି । ଜଗନ୍ନାଥ ଦାସ ଆଜି ନାହାନ୍ତି ସତ କିନ୍ତୁ 'ଭାଗବତ' ମାଧ୍ୟମରେ ସେ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଭକ୍ତିଭାବ ଧାରା ସୃଷ୍ଟି କରି ବଞ୍ଚି ରହିଛନ୍ତି ଓ ରହିବେ ମଧ୍ୟ ।



# ଜଗନ୍ନାଥ ଚରିତାମୃତ
# ଏକ ଅଧ୍ୟୟନ

( ୧ )

ଦିବାକର ଦାସଙ୍କ ଗ୍ରନ୍ଥ-ପରିକଳ୍ପନା ଓ ରୂପାୟନ କୌଶଳର ଯଥାର୍ଥତା ଓ ସ୍ୱରୂପ ଅବବୋଧ ପାଇଁ ଜଗନ୍ନାଥ ଚରିତାମୃତର ନିମ୍ନଲିଖିତ ଫର୍ଦ୍ଧ ଅଂଶଟିକୁ ଆମେ ଏଠାରେ ଉଦ୍ଧାର କରି ଦେଉଅଛୁଁ !

ଶ୍ରୀ ନିତ୍ୟାନନ୍ଦ ଉବାଚ

ଏତଜ୍ଜଗନ୍ନାଥମୂର୍ତ୍ତୌ କଥଂ ଭକ୍ତିଃ ସମାଶ୍ରିତା ।
ତନ୍ମାର୍ଗଂ କଥୟ ସ୍ୱାମିନ୍ ଶ୍ରୋତୁମିଚ୍ଛନ୍ତି ବୈଷ୍ଣବାଃ ॥

"ଏ ଯେଉଁ ଜଗନ୍ନାଥ ମୂର୍ତ୍ତି । କି ଭାବେ ହୁଏ ଏଥି ଭକ୍ତି ॥
ପ୍ରସନ୍ନ ହୋଇ କହ ପ୍ରଭୁ । ଶୁଣନ୍ତୁ ବଇଷ୍ଣବ ସବୁ ॥
ତା ଶୁଣି ପ୍ରଭୁ ଚଇତନ୍ୟ । ହୋଇଲେ ଆନନ୍ଦିତ ମନ ॥
ସେ ପ୍ରେମ ରସାତ୍ମକ ବାଣୀ । ଗଦ୍‌ଗଦ କଣ୍ଠରେ ବଖାଣି ॥"

ଶ୍ରୀ ଚୈତନ୍ୟ ଉବାଚ

ଈଶ୍ୱରଂ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ।
ଅନାଦିରାଦିର୍ଗୋବିନ୍ଦଃ ସର୍ବକାରଣ କାରଣମ୍ ॥

( ବ୍ରହ୍ମସଂହିତା ୫।୧ )

"ଶ୍ରୀକୃଷ୍ଣ ଏହୁ ଜଗନ୍ନାଥ । ଈଶ୍ୱର ପରମ ପଦାର୍ଥ ॥
ସତ୍ ଚିତ୍ ଆନନ୍ଦ ଭାବ । ଅନାଦି ସର୍ବ ଆଦିଦେବ ॥
ସର୍ବ କାରଣର କାରଣ । ଯାହାଙ୍କ ପାଦାର ଏ ଭୁବନ ॥
ଭୁକ୍ତି ମୁକ୍ତି ଭକ୍ତିଦାୟକ । କୋଟି ବ୍ରହ୍ମାଣ୍ଡ ପ୍ରବର୍ତ୍ତକ ॥"

ଚିନ୍ତାମଣି ପ୍ରକର ସଦ୍ମସୁକଳ୍ପ ବୃକ୍ଷ-
ଲକ୍ଷାବୃତେଷୁ ସୁରଭୀରଭି ପାଳୟନ୍ତମ୍ ।
ଲକ୍ଷ୍ମୀ ସହସ୍ର ଶତ ସମ୍ଭ୍ରମସେବ୍ୟମାନଂ ॥
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ॥ (୫।୮)

"ଚିନ୍ତାମଣି ନିର୍ମିତ ଗୃହ । ଅତୁଳନୀୟ ଶୋଭାମୟ ॥
ଆବୃତ ଲକ୍ଷ କଳ୍ପଦ୍ରୁମେ । ଅତି ପବିତ୍ର ଦିବ୍ୟ ଧାମେ ॥
ଲକ୍ଷ ଧେନୁ ପାଳନକାରୀ । ବିରାଜନ୍ତି ନରହରି ॥
ଶତ ସହସ୍ର ଲକ୍ଷ୍ମୀ ଯାର । ସେବା କରନ୍ତି ନିରନ୍ତର ॥
ଗୋବିନ୍ଦ ନାମ ପ୍ରକଟଇ । ସେ ଆଦି ପୁଂସକୁ ନମଇଁ ॥

ଯସ୍ୟୈକ ନିଃଶ୍ୱସିତ କାଳମଥାବଲମ୍ବ୍ୟ
ଜୀବନ୍ତି ଲୋମବିଲଜା ଜଗଦଣ୍ଡନାଥାଃ ।
ବିଷ୍ଣୁର୍ମହାନ୍ ସ ଇହ ଯସ୍ୟ କଳାବିଶେଷୋ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । (୫।୫୭)

"ଯାହାଙ୍କ ନିଃଶ୍ୱାସ ସୃଜନ । ଯାବତ ହୁଏ ପରିମାଣ ॥
ତାବତ କାଳଟି ଆୟୁଷ । ଭୋଗନ୍ତି ବ୍ରହ୍ମା ବିଷ୍ଣୁ ଈଶ ॥
ଯା ରୋମ ମୂର୍ତ୍ତି ଅବତାର । ହୋଇ ବି ଭୁବନ ଈଶ୍ୱର ॥
ଏ ବିଷ୍ଣୁ ଯାର କଳା ମାତ୍ର । ଚାରି ବର୍ଣ୍ଣିଲେ କେବାପାର ॥
ସେ ଆଦି ପୁରୁଷ ଗୋବିନ୍ଦ । ନିତ୍ୟେ ମୁଁ ନମେ ତାଙ୍କ ପଦ ॥"

ସୋଽୟଂ କପଟଦାର୍ବାତ୍ମା ନୀଳକନ୍ଦର ମଧ୍ୟଗଃ ।
ସ୍ୱପ୍ରକାଶୋ ମହାତେଜା ଭକ୍ତାହ୍ରତ୍ ଶ୍ରୂଶୃତ ସ୍ଥିତାଃ ॥

"କପଟ ଦାରୁ ରୂପେ ସେହି । ନୀଳକନ୍ଦର ମଧ୍ୟେ ରହି ॥
ମହାତେଜା ସେ ସ୍ୱପ୍ରକାଶ । ବୈଷ୍ଣବେ ଶୁଣ ତା ରହସ୍ୟ ॥

ସହସ୍ର ପତ୍ରଂ କମଳଂ ଗୋକୁଳାଖ୍ୟଂ ମହତ୍ ପଦମ୍ ।
ତତ୍କର୍ଣ୍ଣିକାୟାଂ ତଦ୍ଧାମ ତଦନନ୍ତାଂଶ ସମ୍ଭବମ୍ । (୫।୨)

କର୍ଣ୍ଣିକାୟାଂ ମହଦ୍ ଯନ୍ତ୍ରଂ ଷଟ୍‌କୋଣଂ ବଜ୍ରକୀଳକମ୍ ।
ଷଡଙ୍ଗ-ଷଟ୍ ପଦୀ-ସ୍ଥାନଂ ପ୍ରକୃତ୍ୟା ପୁରୁଷେଣ ଚ ॥ (୫।୩)

"ସହସ୍ର ଦଳ ଯେ କମଳ । ମହତ ପଦ ଶ୍ରୀଗୋକୁଳ ॥
କର୍ଣ୍ଣିକା ମଧ୍ୟେ ମହାଧାମ । ଅନନ୍ତ ଯା ଅଂଶୁ ଜନମ ॥
କର୍ଣ୍ଣିକା ପରେ ମହା ଯନ୍ତ୍ର । ଷଟ୍‌କୋଣି ଷଡବୀଜ ମନ୍ତ୍ର ॥
ବଜ୍ରକୀଳକ ଶୋଭାବନ । ଷଡଙ୍ଗ ଷଟ୍‌ପଦ ସ୍ଥାନ ॥
ତହିଁ ମଧ୍ୟରେ ସୁରଞ୍ଜିତ । ପ୍ରକୃତି ପୁରୁଷ ଶୋଭିତ ॥
ଏହି ଶ୍ରୀ ଜଗନ୍ନାଥ ମୁଖ- । ପଦ୍ମରେ ଗୁପ୍ତତତ୍ତ୍ୱ ଦେଖ ॥

ଚତୁରସ୍ରଂ ତତ୍‌ପରିତଃ ଶ୍ୱେତଦ୍ୱୀପାଖ୍ୟମଦ୍ଭୁତମ୍
ଚତୁରସ୍ରଂ ଚତୁର୍ମୂର୍ତ୍ତେଶ୍ଚତୁର୍ଧାମ ଚତୁଷ୍କୃତମ୍ । (୫।୬)
ଚତୁର୍ଭିଃ ପୁରୁଷାର୍ଥୈଶ୍ଚ ଚତୁର୍ଭିର୍ହେତୁଭିର୍ବୃତମ୍ । (୫।୬)

"ତହୁଁ ପଦ୍ମ ଚତୁର କୋଣ । ଚତୁର ମୂର୍ତ୍ତି ଚତୁଃ ସ୍ଥାନ ॥
ଧର୍ମାର୍ଥ କାମ ମୋକ୍ଷ ଧର । ଦ୍ୱାରକା ଆଦି ଧାମ ଘର ॥
ଯେ ବାସୁଦେବ ସଙ୍କର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ॥
ଋକ୍ ଯଜୁ ସାମ ଅଥର୍ବଣ । କର୍ମଜ୍ଞାନ ମୋକ୍ଷ ସାଧନ ॥
ଏ ଜଗନ୍ନାଥ ଭଦ୍ରାବଳ । ସୁଦରଶନ ରୂପେ ଠୂଳ ॥
ଏ ଭାବେ ଚତୁର୍ଦ୍ଧା ମୂରତି । ଜଗତେ ଯେ ଯେମନ୍ତ ଚିନ୍ତି ॥
ଚତୁର ହେତୁ ଯାହା କହି । ଶୁଣ ତା ତୁମ୍ଭେ ମନ ଦେଇ ॥
ଏ ବ୍ରହ୍ମାଣ୍ଡ ଯେ ଗୋଲକ । ବାଇଶି ପାବଚ୍ଛ ଏ ଦେଖ ॥
ମହାନନ୍ଦ୍ୟ ଜଗମୋହନ । ପରମ ନିତ୍ୟ ସିଂହାସନ ॥

ପ୍ରେମାନନ୍ଦ-ମହାନନ୍ଦ-ରସେନାବସ୍ଥିତଂ ହି ଯତ୍
ଜ୍ୟୋତିରୂପେଣ ମନୁନା କାମବୀଜେନ ସଙ୍ଗତମ୍ ॥ (୫।୮)

"ପ୍ରେମ ଆନନ୍ଦ-ମହାନନ୍ଦ । ରସକୁ କରିଣ ଆସ୍ୱାଦ ॥
ଜ୍ୟୋତି ରୂପ ଯେ ମନ୍ତ୍ରବର । କାମବୀଜଟି ତତ୍ତ୍ୱସାର ॥
ତା ସହ ହୋଇଣ ସଙ୍ଗତ । ଯେ ହୋଇଛନ୍ତି ଅବସ୍ଥିତ ॥"

ମନୁରୂପୈଶ୍ଚ ଦଶଭିର୍ଦିକ୍‌ପାଳୈଃ ପରିତୋବୃତମ୍ ॥ (୫।୮)
ଶ୍ୟାମୈର୍ଗୌରୈଶ୍ଚ ରକ୍ତୈଶ୍ଚ ଶୁକ୍ଳୈଶ୍ଚ ପାର୍ଷଦର୍ଷଭୈଃ

ଯୋଗିନଃ ଶକ୍ତିଭିସ୍ତୁ ଭବନ୍ତି ଚାଙ୍ଗଃ ସମନ୍ତତଃ । (୫।୭)
ଏବଂ ଜ୍ୟୋତିର୍ମୟୋ ଦେବଃ ସଦାନନ୍ଦଃ ପରାତ୍ପରଃ ॥ (୫।୧୦)

ବ୍ରହ୍ମ ରୂପରେ ଦଶ କୋଟି । ଦଶ ଢାଗରେ ଚନ୍ଦ୍ର ଜ୍ୟୋତି ॥
ଯୋଗୀଙ୍କର ଆଦ୍ୟ ମନ୍ତ୍ରାର । ସର୍ବତ୍ରର ବଳୟ ଆକାର ॥
ଶୁଦ୍ଧ ନିର୍ମଳ ଭକ୍ତ ଧନ । ବର୍ଣ୍ଣ ପ୍ରକାଶ ଚିହ୍ନ ମନ ॥
ଶକ୍ତି ମଣ୍ଡଳରେ ଆବୃତ । ଜ୍ୟୋତି ରୂପରେ ଜଗନ୍ନାଥ ॥
ସଦାନନ୍ଦ ପରମ ତତ୍ତ୍ୱ । ଏ ହେତୁ ବୋଲନ୍ତି ଈଶ୍ୱର ॥"

ଆତ୍ମାରାମସ୍ୟ ତସ୍ୟାସ୍ତି ପ୍ରକୃତ୍ୟା ନ ସମାଗମଃ ॥ (୫।୧୦)
ମାୟୟା ରମମାଣସ୍ୟ ନ ବନ୍ଧସ୍ତସ୍ୟା ତଦା ॥ (୫।୧୧)

"ସେହି ଅଟଇ ଆତ୍ମାରାମ । ନାହିଁ ତା ପ୍ରକୃତି ସଙ୍ଗମ ।
ମାୟାରେ ରମଣ କରଇ । ତହିଁ ବନ୍ଧନ ନ ହୁଅଇ ॥
ସଦା ରସ ଭାବମୂର୍ତ୍ତି । ପ୍ରେମ ଭକ୍ତିରେ ଲଭ୍ୟ ହୋନ୍ତି ॥"

(ଜଗନ୍ନାଥ ଚରିତାମୃତ, ୬ଷ୍ଠ ଅଧ୍ୟାୟ, ପୃ-୭୯-୮୨)

ପୁଣ୍ୟ ବଡ଼ ଓଡ଼ିଆ ମଠଙ୍କଦ୍ୱାରା ପ୍ରକାଶିତ ଶ୍ରୀଜଗନ୍ନାଥ ଚରିତାମୃତ (୧୯୬୩)ର ପୃ-୭୯-୮୨ରୁ ଯେଉଁ ଦୀର୍ଘ ଅଂଶକୁ ଆମେ ଏଠାରେ ଉପସ୍ଥାପନା କରିଛୁଁ, ସେଥିରେ ଥିବା ଶ୍ଳୋକଗୁଡ଼ିକ ମଧ୍ୟରୁ କେବଳ ଦୁଇଟିକୁ ବାଦ୍‌ଦେଲେ ଅବଶିଷ୍ଟ ଶ୍ଳୋକଗୁଡ଼ିକ ବ୍ରହ୍ମ ସଂହିତାର ପଞ୍ଚମ ଅଧ୍ୟାୟରୁ ଆହୃତ । ଆଲୋଚ୍ୟ ପ୍ରକାଶିତ ପୁସ୍ତକରେ ଅବତରଣର ମୂଳ ଉତ୍ସ ସୂଚିତ ହୋଇ ନ ଥିଲେ ହେଁ ଆଲୋଚନାର ସୁବିଧା ଦୃଷ୍ଟିରୁ ଆମେ ସେ ସବୁ ବନ୍ଧନୀ ଭିତରେ ଏବଂ ଉଦ୍ଧୃତିରେ ଉଲ୍ଲେଖ କରିଛୁଁ । ଏହାକୁ ତନ୍ନତନ୍ନ କରି ପରୀକ୍ଷଣ କଲେ ଆମେ ନିମ୍ନଲିଖିତ କେତୋଟି ସିଦ୍ଧାନ୍ତରେ ଉପନୀତ ହୋଇପାରିବୁଁ । ଯଥା:—

୧. ଶ୍ରୀ ନିତ୍ୟାନନ୍ଦଙ୍କ ପ୍ରଶ୍ନ ଓ ଶ୍ରୀଚୈତନ୍ୟଙ୍କ ଉତ୍ତର ମାଧ୍ୟମରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ତତ୍ତ୍ୱ ପ୍ରଖ୍ୟାପନ ହେଉଛି ଉଦ୍ଧୃତାଂଶର ସାରମର୍ମ । ଏହିପରି ଆଧ୍ୟାତ୍ମିକ ତତ୍ତ୍ୱ ପ୍ରଖ୍ୟାପନ ଶୈଳୀ ଏଠାରେ ଶ୍ରୀଚୈତନ୍ୟଚରିତାମୃତରେ ମଧ୍ୟ ଅନୁସୃତ ହୋଇଅଛି ।

୨. ଏପରି ଶୈଳୀର ଲକ୍ଷ୍ୟ ହେଉଛି ଯେ ଏଥିରେ ଶ୍ରୀଜଗନ୍ନାଥଙ୍କ ଭାବମୂର୍ତ୍ତିର ଯେଉଁ ବ୍ୟାଖ୍ୟା ଦିଆଯାଇଛି ତାହା ଯଥାର୍ଥରେ ଶ୍ରୀ ଚୈତନ୍ୟଙ୍କ

ନିଜସ୍ୱ ଅଭିମତ । ସେଥିପାଇଁ ଜଗନ୍ନାଥ ଚରିତାମୃତର ଷଷ୍ଠ ଅଧ୍ୟାୟ ଶେଷଭାଗରେ କୁହାଯାଇଅଛି, "ଶ୍ରୀମହାପ୍ରଭୁ ଶ୍ରୀଚୈତନ୍ୟ । ଏ ଭାବେ ଶ୍ରୀମୁଖବଚନ । ବୈଷ୍ଣବମାନେ ଯେତେ ଥିଲେ । ଶୁଣି ସନ୍ତୋଷ ସର୍ବେ ହେଲେ ॥" ଏଥିରୁ ଏହାହିଁ ସୁସ୍ପଷ୍ଟ ଯେ ଜଗନ୍ନାଥ ଚରିତାମୃତ ଯେଉଁ ଧର୍ମ ଆଭିମୁଖ୍ୟ ପ୍ରଚାର କରିଛି, ଦିବାକର ଦାସଙ୍କ ମତରେ, ତାହାହିଁ ଶ୍ରୀ ଚୈତନ୍ୟଙ୍କ ପ୍ରଚାରିତ ଆଧ୍ୟାତ୍ମିକ ଦର୍ଶନ ।

ଶ୍ରୀଚୈତନ୍ୟ ଦକ୍ଷିଣ ଭାରତରୁ ଯେଉଁ ବ୍ରହ୍ମସଂହିତା ପୁସ୍ତକ ଆଣିଥିଲେ ତାହା ଉପରେ ଚୈତନ୍ୟ ଚରିତାମୃତ କହେ—

"ସିଦ୍ଧାନ୍ତ ଶାସ୍ତ୍ର ନାହିଁ ବ୍ରହ୍ମସଂହିତା ସମାନ ।
ଗୋବିନ୍ଦ ମହିମା ଜ୍ଞାନେର ପରମ କାରଣ ।
ଅଳ୍ପ ଅକ୍ଷରେ କହେ ସିଦ୍ଧାନ୍ତ ଅପାର ।
ସକଳ ବୈଷ୍ଣବ ଶାସ୍ତ୍ର ମଧ୍ୟେ ଅତିସାର ॥ (ମଧ୍ୟ-୯ । ୨୩୯-୪୦)

ଏଇ ବ୍ରହ୍ମସଂହିତାର ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ ହୋଇଛି ଚୈତନ୍ୟ ଚରିତାମୃତ ପ୍ରତିପାଦିତ ଗୌଡ଼ୀୟ ପ୍ରେମ ଦର୍ଶନ । ଦିବାକର ଦାସଙ୍କ ଉଦ୍ଧୃତ ଅନୁଧ୍ୟାନ କଲେ କୃଷ୍ଣଦାସ କବିରାଜଙ୍କ ଆଧ୍ୟାତ୍ମିକ ବ୍ୟାଖ୍ୟା ସର୍ବାଂଶରେ ସତ୍ୟ ବୋଲି ମନରେ ସନ୍ଦେହ ଜାତ ହୁଏ ।

୩. ବ୍ରହ୍ମସଂହିତାରେ କେଉଁଠି ଜଗନ୍ନାଥ ଶବ୍ଦର ବ୍ୟବହାର ନାହିଁ, କି ଏ ପୁସ୍ତକର କେଉଁ ଶ୍ଳୋକ ପୁରୁଷୋତ୍ତମ କ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥଙ୍କ ସହିତ ପ୍ରତ୍ୟକ୍ଷ, ଏପରିକି ପରୋକ୍ଷଭାବେ ମଧ୍ୟ ସମ୍ବନ୍ଧାନ୍ୱିତ ନୁହେଁ । କିନ୍ତୁ ଆମର ଆଲୋଚ୍ୟ ଉଦ୍ଧୃତାଂଶର ଶ୍ଳୋକଗୁଡ଼ିକୁ ଶ୍ରୀ ଚୈତନ୍ୟଙ୍କ ମୁଖରେ ଦିବାକର ଦାସ ଜଗନ୍ନାଥଦର୍ଶନ ପ୍ରଖ୍ୟାପକଭାବେ ଯେପରି ଉପସ୍ଥାପନ କରିଅଛନ୍ତି ତାହାର ସତ୍ୟତା, ପ୍ରାସଙ୍ଗିକତା, ଏପରିକି ବସ୍ତୁସଂଯୋଗ୍ୟତା ପ୍ରତିଷ୍ଠା ପାଇଁ ଦୁଇଟି ନୂତନ ଶ୍ଳୋକ ସେ ଏଥିରେ ଯୋଡ଼ି ଦେଇଛନ୍ତି । ବିଷୟର ଅବତାରଣା ବେଳେ ଶ୍ରୀନିତ୍ୟାନନ୍ଦଙ୍କ ମୁଖରେ ପ୍ରଥମ ଶ୍ଳୋକ ଓ ପରବର୍ତ୍ତୀ ସ୍ଥଳରେ "ସୋଽପ୍ୟଂ କପଟ ଦାବାତ୍ମା" ଇତ୍ୟାଦି ଦ୍ୱିତୀୟ ଶ୍ଳୋକ—ଏଇ ଦୁଇଟି ଶ୍ଳୋକ ମାଧ୍ୟମରେ ବ୍ରହ୍ମସଂହିତାରୁ ଆହୃତ ଶ୍ଳୋକଗୁଡ଼ିକରୁ ସେ ସମ୍ପୂର୍ଣ୍ଣ ଏକ ଅଭିନବ ଅର୍ଥ

ବାହାରେ କର ସମୁଦାୟ ତତ୍ତ୍ୱଧୃତିକୁ ବିଶ୍ୱାସଯୋଗ୍ୟ କରିବାରେ ସମର୍ଥ ହୋଇଛନ୍ତି ।

୪. ମୂଳ ଶ୍ଲୋକଗୁଡ଼ିକୁ ହରାକର ଦାସ କେଉଁଠି କପରି ଶ୍ରୀଜଗନ୍ନାଥଙ୍କଠାରେ ପ୍ରୟୋଗ କରି ବ୍ୟାଖ୍ୟା କରିଛନ୍ତି ତାହାର ପରିଚୟ ବର୍ତ୍ତମାନ ଉପସ୍ଥାପନା କରୁଅଛୁ ।

ପ୍ରଥମ ଶ୍ଲୋକ 'ଈଶ୍ୱରଃ ପରମଃ କୃଷ୍ଣଃ'ର ଅନୁବାଦ ହେଉଛି 'ଶ୍ରୀକୃଷ୍ଣ ଏବଂ ଜଗନ୍ନାଥ' । ଏଇ ପରମ କୃଷ୍ଣ ହେଉଛନ୍ତି ଆଦିପୁରୁଷ ଗୋବିନ୍ଦ ଯେ ଶତଲକ୍ଷ୍ମୀପରିସେବିତ ହୋଇ ଚିନ୍ତାମଣି-ନିର୍ମିତ ଗୃହରେ ବାସ କରନ୍ତି ଓ ଲକ୍ଷ୍ୟଧେନୁ ପାଳନ କରନ୍ତି (୫।୨୮) । କୃଷ୍ଣ ହେଉଛନ୍ତି ଏଇ ଆଦି ପୁରୁଷ ଗୋବିନ୍ଦଙ୍କର ଏକ କଳା ମାତ୍ର (୫।୫୨) । ଏଠାରେ କୃଷ୍ଣଙ୍କୁ ଜଗନ୍ନାଥଙ୍କ ସହିତ ଅଭିନ୍ନ କରିଦେଇ ଜଗନ୍ନାଥଙ୍କଠାରେ ଆଦିପୁରୁଷ ଗୋବିନ୍ଦ ଅର୍ଥ ଆରୋପ କରାଯାଇଅଛି ମାତ୍ର ।

ବ୍ରହ୍ମସଂହିତାର ପୂର୍ବୋକ୍ତ ତିନୋଟି ଶ୍ଲୋକରେ ଯେଉଁ ଆଦି ପୁରୁଷ ଗୋବିନ୍ଦଙ୍କ କଥା କୁହାଯାଇଛି ସେ ହେଉଛନ୍ତି ପୁରୁଷୋତ୍ତମକ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ (କୃଷ୍ଣ)ଙ୍କଠାରୁ ଅଭିନ୍ନ—ଏଇ ବ୍ୟାଖ୍ୟାର ଅନୁମୋଦନ ପାଇଁ ପରବର୍ତ୍ତୀ ଗୋଟିଏ ନୂତନ ଶ୍ଲୋକରେ କୁହାଯାଇଛି 'ସୋଽୟଂ କପଟଦାବାତ୍ମା ନୀଳକନ୍ଦର ମଧ୍ୟଗଃ ।' ବ୍ରହ୍ମସଂହିତାର ଶ୍ଲୋକରେ ଯାହା ଥିଲା ଅସ୍ପଷ୍ଟ, ଏଇ ଗୋଟିଏ ଶ୍ଲୋକଦ୍ୱାରା ତାହା ସ୍ପଷ୍ଟ ଓ ବିଶଦ ହୋଇ ଯାଇଥିବାର ଦେଖିବାକୁ ମିଳେ ।

ଏହା ପରେ ବ୍ରହ୍ମସଂହିତାରୁ ଯେଉଁ ଶ୍ଲୋକସବୁ ଉଦ୍ଧାର କରାଯାଇଛି ସେ ସବୁ ଶ୍ରୀଜଗନ୍ନାଥ ଓ ତତ୍ପୀଠ ସହିତ ଅଧିକ ସ୍ପଷ୍ଟ ଭାବରେ ସମ୍ପୃକ୍ତ ହୋଇ ଯାଇଛନ୍ତି । ଏହାର ଦ୍ୱିତୀୟ ଓ ତୃତୀୟ ଶ୍ଲୋକରେ ଅଛି ଯେ ସହସ୍ର ଦଳ କମଳ ହେଉଛି ଗୋକୁଳ ଓ ତା'ର କର୍ଣ୍ଣିକା ମଧ୍ୟରେ ଅଛି ମହାଧାମ; ତାହାପରେ ଅଛି ମହାଯନ୍ତ୍ରର ଷଟକୋଣ, ଷଟ ବୀଜମନ୍ତ୍ର ଓ ବଜ୍ରକୀଳକ; ଏଇ ସ୍ଥାନ 'ପ୍ରକୃତ୍ୟା ପୁରୁଷେଣ' ଅର୍ଥାତ୍ ପ୍ରକୃତି-ପୁରୁଷର ଅଭେଦମୂର୍ତ୍ତି ଗୋବିନ୍ଦଙ୍କ ଦ୍ୱାରା ପରିଶୋଭିତ । ଏଠାରେ ଆଦିପୁରୁଷ ଗୋବିନ୍ଦଙ୍କର ପ୍ରକୃତି-ପୁରୁଷ ରୂପଟି ଅତି ଚମତ୍କାର ଭାବେ ଶ୍ରୀଜଗନ୍ନାଥଙ୍କ

ଠାରେ ସଂଯୁକ୍ତ ହୋଇ ଯାଇଛି; କାରଣ ଜଗତ୍ (ପ୍ରକୃତି)+ନାଥ (ପୁରୁଷ)ର ସଂଯୋଗରେ ହିଁ ଜଗନ୍ନାଥ ଶବ୍ଦ ଗଠିତ, ସେଥିରୁ ଶ୍ରୀଜଗନ୍ନାଥଙ୍କ ପ୍ରକୃତି ପୁରୁଷର ଅଭେଦ ରୂପଟି ସ୍ୱତଃ ବ୍ୟଞ୍ଜିତ ହୋଇଉଠୁଛି । ଷଷ୍ଠ ଓ ସପ୍ତମ ଶ୍ଳୋକରେ ବର୍ଣ୍ଣିତ ଅଛି ଯେ ଚତୁର୍ବ୍ୟୂହର କୋଣରେ ଅଛନ୍ତି ଚାରିଟି ଦେବତା (ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧଙ୍କର ଅନୁରୂପ ଜଗନ୍ନାଥ, ସୁଭଦ୍ରା, ବଳରାମ ଓ ସୁଦର୍ଶନ) ଓ ଏମାନଙ୍କୁ ଲାଭ କରିବାର ହେତୁ ହେଉଛି ଚାରୋଟି, ଯଥା: ଚକ୍ରଦାଣ୍ଡ, ବାଇଶିପାବଚ୍ଛ, ଜଗମୋହନ ଓ ପରମନିତ୍ୟ ସିଂହାସନ । ଏହି ପ୍ରସଙ୍ଗରେ ଦିବାକର ଦାସ ଲେଖିଛନ୍ତି, "ଏ ଭାବେ ଚତୁର୍ଦ୍ଧା । ମୂରତି । ଜଗତେ ଯେ ଯେମନ୍ତ ଚିନ୍ତି ।" ଏହି ଉକ୍ତି ଏକାନ୍ତ-ଯୁକ୍ତିଯୁକ୍ତ । କାରଣ, ବ୍ରହ୍ମସଂହିତାର 'ଚତୁର୍ମୂର୍ତ୍ତିଃ'ଙ୍କର ରୂପକୁ ସେ ଏଠାରେ ଜଗନ୍ନାଥ-ବଳଭଦ୍ର ସୁଭଦ୍ରା-ସୁଦର୍ଶନ ରୂପରେ ହିଁ ଚିନ୍ତା କରି ସମୁଦାୟ ଚିତ୍ତବୃତ୍ତିକୁ ଜଗନ୍ନାଥ-ଦର୍ଶନ-ଅଭିମୁଖୀ କରି ଦେଇଛନ୍ତି ।

ପରବର୍ତ୍ତୀ ଶ୍ଳୋକଗୁଡ଼ିକରେ ଦୁଇଟି ପ୍ରଧାନ ବିଷୟ ଲକ୍ଷ୍ୟ କରାଯାଇପାରେ । ଯଥା :—(କ) ଶଙ୍ଖ ଯନ୍ତ୍ରର ଆବୃତ ଦେବତା ହେଉଛନ୍ତି 'ଜ୍ୟୋତିର୍ମୟୋ ଦେବଃ' (ଜ୍ୟୋତି ରୂପରେ ଜଗନ୍ନାଥ) ଓ (ଖ) 'ତସ୍ୟାସ୍ତି ପ୍ରକୃତ୍ୟା ନ ସମାଗମଃ' (ନାହିଁ ତା ପ୍ରକୃତି ସଂଗମ) । ଏଥିରୁ ପ୍ରଥମଟି ହେଉଛି ଯୋଗ-ସାଧନ ମାର୍ଗରେ ନିରାକାର ଶ୍ରୀଜଗନ୍ନାଥଙ୍କ ଜ୍ୟୋତିରୂପ ଦର୍ଶନର ସଂକେତ ଓ ଦ୍ୱିତୀୟଟି ହେଉଛି ପରକୀୟା । ପ୍ରୀତି-ବିବର୍ଜିତ ସ୍ୱକୀୟା ପ୍ରେମ ସାଧନର ପ୍ରତୀକ । "ସର୍ବଦା ରସଭାବ ମୂର୍ତ୍ତି । ପ୍ରେମଭକ୍ତିରେ ଲଭ୍ୟ ହୋନ୍ତି ।"—ମୂଳ ଶ୍ଳୋକଗୁଡ଼ିକର ଆକ୍ଷରିକ ଅର୍ଥ ଗ୍ରହଣ କଲେ ଏହି ଉକ୍ତିଟି ଦିବାକର ଦାସଙ୍କ ସ୍ୱକୀୟ ଉକ୍ତି ବୋଲି ସ୍ପଷ୍ଟ ଅନୁଭୂତ ହୁଏ । ଶ୍ରୀଜଗନ୍ନାଥ ହେଉଛନ୍ତି 'ଆତ୍ମାରାମ'—ପ୍ରକୃତିସଂଗମ ଅପେକ୍ଷା ଆତ୍ମ-ରତି ହିଁ ତାଙ୍କର ବିଶିଷ୍ଟ ପ୍ରକୃତି । 'ରସଭାବମୂର୍ତ୍ତି' ଏହି ଶ୍ରୀଜଗନ୍ନାଥଙ୍କ ନିଜ ଭିତରେ ହିଁ ସ୍ୱ-ପ୍ରକୃତି ସଙ୍ଗେ ଲୀଳା କରନ୍ତି—ପରକୀୟା ପ୍ରୀତିର ପ୍ରଶ୍ନ ଏ ସ୍ଥଳରେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସ୍ୱକୀୟା-ପ୍ରୀତି ସାଧନ ଓଡ଼ିଶୀ ବୈଷ୍ଣବ ଦର୍ଶନର ଏକ ବିଶିଷ୍ଟ ଆଧାର ସ୍ତମ୍ଭ ବୋଲି ଯାହା ଆଜି ସମାଲୋଚକମାନଙ୍କ ଦ୍ୱାରା ସ୍ୱୀକୃତ, ତାହା ଦିବାକର ଦାସଙ୍କ ଏହି

ଜଗନ୍ନାଥ-ସ୍ୱରୂପର ବ୍ୟାଖ୍ୟା ଭିତରେ ସ୍ପଷ୍ଟ ରୂପାୟିତ ହୋଇଥିବାର ଉପଲବ୍ଧି ହୁଏ ।

ଆଦିପୁରୁଷ ଗୋବିନ୍ଦ ହିଁ ଶ୍ରୀଜଗନ୍ନାଥ, ଏଇ ଆଦିପୁରୁଷଙ୍କ ନିତ୍ୟଧାମ ଗୋଲୋକ ହିଁ ପୁରୁଷୋତ୍ତମ କ୍ଷେତ୍ର ଓ ଏଇ ଦେବତାଙ୍କୁ ଲାଭ କରିବାର ପନ୍ଥା ହେଉଛି ପ୍ରେମ-ଭକ୍ତି ଓ ସ୍ୱକୀୟା ପ୍ରୀତି—ଶ୍ରୀଚୈତନ୍ୟଙ୍କ ମୁଖରେ ପ୍ରଖ୍ୟାପିତ ଏଇ ମତବାଦ ଗୌଡ଼ୀୟବୈଷ୍ଣବ ପରମ୍ପରାର ସମ୍ପୂର୍ଣ୍ଣ ବିରୋଧୀ ଓ ସ୍ୱତନ୍ତ୍ର । କାରଣ, ମାଧ୍ୱ ଗୌଡ଼େଶ୍ୱର ସମ୍ପ୍ରଦାୟର ଉପାସନା ସମ୍ବନ୍ଧରେ ଏକ ପ୍ରସିଦ୍ଧ ଶ୍ଳୋକ ହେଉଛି—

ଆରାଧ୍ୟ ଭଗବାନ୍ ବ୍ରଜେଶତନୟସ୍ତଦ୍ଧାମ ବୃନ୍ଦାବନ
ରମ୍ୟା କାଚିଦୁପାସନା ବ୍ରଜବଧୂବର୍ଗେଣ ଯା କଳ୍ପିତା ।
ଶାସ୍ତ୍ରଂ ଭାଗବତଂ ପ୍ରମାଣମମଳଂ ପ୍ରେମା ପୁମର୍ଥୋ ମହାନ୍
ଶ୍ରୀଚୈତନ୍ୟମହାପ୍ରଭୋର୍ମତମିଦଂ ତତ୍ରାଦରୋ ନଃ ପରଃ ।

ଏହାର ଅର୍ଥ ହେଉଛି, "ବ୍ରଜେନ୍ଦ୍ର ନନ୍ଦନ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ଆରାଧ୍ୟ ଦେବତା ଓ ତାହାଙ୍କର ଧାମ ହେଉଛି ବୃନ୍ଦାବନ । ବ୍ରଜବଧୂ ବା ଗୋପୀମାନଙ୍କ ଦ୍ୱାରା କଳ୍ପିତ ରମଣୀୟ ଉପାସନା ହିଁ ସାଧକମାନଙ୍କ ପକ୍ଷରେ ପ୍ରାମାଣିକ ଉପାସନା, ଶ୍ରୀମଦ୍ ଭାଗବତ ହିଁ ଦୋଷହୀନ ପ୍ରମାଣ-ଶାସ୍ତ୍ର, ପ୍ରେମ ହିଁ ପରମ ପୁରୁଷାର୍ଥ—ଏହା ହିଁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ମତ, ଏହା ହିଁ ଗ୍ରହଣୀୟ କିନ୍ତୁ ଅନ୍ୟ କୌଣସି ମତ ଗ୍ରାହ୍ୟ ନୁହେଁ ।"

ପ୍ରମାଣ ଓ ଶାସ୍ତ୍ର-ଭାଗବତକୁ ବାଦ୍ ଦେଇଦେଲେ ଅନ୍ୟ ସମସ୍ତ ବିଷୟ ଅର୍ଥାତ୍ ସାଧ୍ୟ ଦେବତା, ପୀଠ, ଉପାସନା-ପ୍ରଣାଳୀ ବିଷୟରେ ଦିବାକର ଦାସ ପୂର୍ବୋକ୍ତ ଶ୍ଳୋକର ସମ୍ପୂର୍ଣ୍ଣ ବିପରୀତ କଥା କହିଥିବାର ଦେଖିବାକୁ ମିଳେ । ତଥାପି ଦିବାକର ଦାସ ଲେଖିଛନ୍ତି, "ଶ୍ରୀ ମହାପ୍ରଭୁ ଶ୍ରୀଚୈତନ୍ୟ । ଏ ଭାବେ ଶ୍ରୀମୁଖ ବଚନ ।। ବୈଷ୍ଣବମାନେ ଯେତେ ଥିଲେ । ଶୁଣି ସନ୍ତୋଷ ସର୍ବେ ହେଲେ ।।" କିନ୍ତୁ ପୂର୍ବୋକ୍ତ ଶ୍ଳୋକରେ ଅଛି, "ଶ୍ରୀଚୈତନ୍ୟମହାପ୍ରଭୋର୍ମତ ମିଦଂ ।" ଶ୍ରୀଚୈତନ୍ୟଙ୍କ ଅସଲ ମତ ନାମରେ ଏପରି ବିପରୀତମୁଖୀ ଦୁଇଟି ସ୍ୱତନ୍ତ୍ର ଅଭିମତ ସମ୍ଭବ ହେଲା କିପରି ? ଏହାର ଯଥାର୍ଥ କାରଣ ସାଂପ୍ରଦାୟିକ ଲେଖକମାନଙ୍କ ମାନସିକ

ଆଭିମୁଖ୍ୟଠାରେ ନିରୀକ୍ଷଣ କରାଯାଇପାରେ । ଏମାନେ ନିଜ ନିଜ ବିଶ୍ବାସ ଦୃଷ୍ଟିରୁ ଯାହା ଯଥାର୍ଥ ବୋଲି ଅବଧାରଣା କରନ୍ତି ତାହାକୁ ସେମାନେ ଶ୍ରୀଚୈତନ୍ୟଙ୍କ ନାମରେ କେବଳ ଚଳେଇ ନେବାକୁ ଚେଷ୍ଟା କରିଛନ୍ତି । ଶ୍ରୀଚୈତନ୍ୟ ଚରିତାମୃତର ଗୋଟିଏ ଅଂଶ ଦେଖନ୍ତୁ—

"ସ୍ବୟଂ ଭଗବାନ୍ କୃଷ୍ଣ, କୃଷ୍ଣ ସର୍ବାଶ୍ରୟ
ପରମ ଈଶ୍ବର କୃଷ୍ଣ ସର୍ବଶାସ୍ତ୍ରେ କୟ ।
ଈଶ୍ବରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ
ଅନାଦିରାଦିର୍ଗୋବିନ୍ଦଃ ସର୍ବ କାରଣ କାରଣମ୍ ।
ଏ ସବ ସିଦ୍ଧାନ୍ତ ତୁମି ଜାନ ଭାଲମତେ
ତବୁ ପୂର୍ବପକ୍ଷ କର ଆମା ଚାଳାଇତେ ।
ସେଇ କୃଷ୍ଣ ଅବତାରୀ ବ୍ରଜେନ୍ଦ୍ର କୁମାର
ଆପନେ ଚୈତନ୍ୟ ରୂପେ କୈଲ ଅବତାର ।

(ଆଦି ୨।୧୦୬-୧୦୯)

ସେଇ ଆଦିପୁରୁଷ ଗୋବିନ୍ଦ ହିଁ ପରମେଶ୍ବର ଶ୍ରୀକୃଷ୍ଣ ଓ ସେ ହିଁ ବ୍ରଜେନ୍ଦ୍ର କୁମାର ଶ୍ରୀକୃଷ୍ଣ । କିନ୍ତୁ ଅବତାରୀ କୃଷ୍ଣ ନିଜେ ଚୈତନ୍ୟ ରୂପରେ ଅବତାର ଗ୍ରହଣ କରିଛନ୍ତି—ଏପରି ଭାବଧାରାଟି କବିରାଜ ଗୋସ୍ବାମୀ 'ଈଶ୍ବରଃ ପରମଃ କୃଷ୍ଣଃ'ରୁ ପାଇଲେ କେଉଁଠୁ ? କୃଷ୍ଣ ଯେବେ ଜଣଙ୍କ ବିଶ୍ବାସରେ ଶ୍ରୀଚୈତନ୍ୟ ହୋଇପାରନ୍ତି, ସେ ଦିବାକର ଦାସଙ୍କ ପରି ଅନ୍ୟ ଜଣଙ୍କ ଆଖିରେ ଶ୍ରୀଜଗନ୍ନାଥ ହେବାରେ କ୍ଷତି କେଉଁଠି ଅଛି । ସମ୍ପ୍ରଦାୟର ଭିନ୍ନତା ହେତୁ ବିଶ୍ବାସ-ଧାରାରେ ଭିନ୍ନତା ହେବା ଏକାନ୍ତ ସ୍ବାଭାବିକ । ସେଥିପାଇଁ ପାରମ୍ପରିକ ବେଦ-ଉପନିଷଦ-ପୁରାଣର ଭିନ୍ନଭିନ୍ନ ଭାଷ୍ୟ ବିଶ୍ବାସର ମୂଳଭିତ୍ତି ଉପରେ ବିଭିନ୍ନ ସାମ୍ପ୍ରଦାୟିକ ମତବାଦ ବିକାଶଲାଭ କରିଥିବାର ଦେଖିବାକୁ ମିଳେ । ଏଥିରୁ କେଉଁଟି ଶ୍ରେଷ୍ଠ ଓ କେଉଁଟି ଅସ୍ପୃଶ୍ୟ; ସେ ବିଚାର କୌଣସି ନିରପେକ୍ଷ ସମାଲୋଚକଙ୍କଠାରୁ ଆଶା କରାଯାଇ ନ ପାରେ ।

ଦିବାକର ଦାସ ଓ କବିରାଜ ଗୋସ୍ବାମୀଙ୍କ ମତ-ପାର୍ଥକ୍ୟର ପ୍ରକୃତ କାରଣ ଉପରେ ଆମର ବିଶ୍ଳେଷଣ ପ୍ରବନ୍ଧର ପର ଭାଗରେ ଆପଣମାନେ ଦେଖିବାକୁ ପାଇବେ ।

( ୨ )

ଜଗନ୍ନାଥ-ଚରିତାମୃତର ଶେଷାଂଶରେ ଅଛି—

"ଅଷ୍ଟାଦଶ ବରଷଠାରେ । ଶ୍ରୀକୃଷ୍ଣଚୈତନ୍ୟ ଭେଟହେଲେ ॥
ଷଡ଼ ବରିଷ ନିରନ୍ତର । ସେବିଲେ ଚୈତନ୍ୟ ପଯ୍ୟର ॥
ଏ ଅନ୍ତେ ଛତିଶ ବରଷ । ପ୍ରେମ ସାଧିଲେ ଅହର୍ନିଶ ॥
ଷାଠିଏ ବର୍ଷ ସମସ୍ତରେ । ପ୍ରେମ ସ୍ଥାପି ସ୍ଥାନେ ଗମିଲେ ॥

ଏହି ପୁସ୍ତକର ଆଦ୍ୟ ଭାଗରେ ଅଛି—

ବୈଷ୍ଣବବୃନ୍ଦ ସଙ୍ଗେ ଘେନି । ବିଶେଷ ଭ୍ରମିଲେ ମେଦିନୀ ॥
ବହୁତ କ୍ଷେତ୍ର ତୀର୍ଥ କଲେ । ଗୟା କାଶୀ ଆଦି ଭ୍ରମିଲେ ॥
ନ ପାଇ ପ୍ରେମ ଭକ୍ତି ରସ । ପୁରୁଷୋତ୍ତମରେ ପ୍ରବେଶ ॥"

ପୂର୍ବୋକ୍ତ ଦୁଇଟି ଉକ୍ତି ଏକତ୍ର ନେଇ ବିଚାର କଲେ ଆମେ ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇପାରିବୁଁ । ଶ୍ରୀ ଚୈତନ୍ୟ ଶେଷ ତୀର୍ଥଯାତ୍ରା ଶେଷକରି ୧୦୩୬ ଶକର ରଥଯାତ୍ରା ପରେ ପୁଣି ପ୍ରତ୍ୟାଗମନ କରିଥିଲେ । ତେଣୁ ୧୫୧୫ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ଜଗନ୍ନାଥ ଦାସ ଶ୍ରୀଚୈତନ୍ୟଙ୍କୁ ପ୍ରଥମେ ସାକ୍ଷାତ୍ କରିଥିବାର ସମ୍ଭାବନା ଅଧିକ । ଯେତେବେଳେ ତାଙ୍କ ବୟସ ୧୮ ବର୍ଷ ହୋଇଥିଲେ ତାଙ୍କର ଜନ୍ମ ସମୟ ହେବ ୧୪୯୭-୯୮ ସାଲ । ଶ୍ରୀଚୈତନ୍ୟଙ୍କର ଅବଶିଷ୍ଟ ଅଠର ବର୍ଷ ଉଦାସୀକାଳ ମଧ୍ୟରେ ପ୍ରଥମ ଛଅ ବର୍ଷ ଅର୍ଥାତ୍ ୧୫୨୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜଗନ୍ନାଥ ଦାସ ନିରନ୍ତର ତାଙ୍କ ପୟର ସେବା କରିବା ସମ୍ଭବପର; କାରଣ ଏହି ସମୟ ମଧ୍ୟରେ ଶ୍ରୀଚୈତନ୍ୟ ପ୍ରାୟ ସାଧାରଣ ମାନସିକ ଅବସ୍ଥାରେ ରହୁଥିବାରୁ ସମସ୍ତେ ତାଙ୍କର ଦର୍ଶନ ପାଇପାରୁଥିଲେ । କିନ୍ତୁ ଶେଷ ବାର ବର୍ଷ ଅର୍ଥାତ୍ ୧୫୨୧-୩୩ ସାଲ ଭିତରେ ଶ୍ରୀ ଚୈତନ୍ୟ ଅଧିକାଂଶ ସମୟ ଭାବାବସ୍ଥ ହୋଇ ରହୁଥିବାରୁ କେବଳ କେତେ ଜଣ ଅନ୍ତରଙ୍ଗ ଭକ୍ତଙ୍କ ବ୍ୟତୀତ ଅନ୍ୟମାନେ ତାହାଙ୍କ ସଂସ୍ପର୍ଶରେ ଆସିପାରୁ ନଥିଲେ । ତେଣୁ 'ଷଡ଼ବରଷ ନିରନ୍ତର । ସେବିଲେ ଚୈତନ୍ୟ ପୟର ॥" ଉକ୍ତିଟି ଯଥାର୍ଥ ତଥ୍ୟ ଉପରେ ପ୍ରତିଷ୍ଠିତ । ଜଗନ୍ନାଥ ଦାସ ୧୫୨୧ ସାଲ ପରେ ୩୬ ବର୍ଷ ଜୀବିତ ଥିଲେ ତାହାଙ୍କ ତିରୋଭାବ ସମୟ ୧୫୫୭ ସାଲ ବୋଲି ଅବଧାରଣ କରାଯାଇପାରେ ।

ଆଲୋଚ୍ୟ ତ୍ରିଶ ବର୍ଷ ମଧ୍ୟରେ ଜଗନ୍ନାଥ ଦାସଙ୍କ ଜୀବନର ପ୍ରଧାନତମ ଘଟଣା ହେଉଛି ତାଙ୍କର 'ଅତିବଡ଼ୀ' ଉପାଧି ଲାଭ । ଜଗନ୍ନାଥ ଚରିତାମୃତର ତୃତୀୟ ଅଧ୍ୟାୟରେ ଏହି ଉପାଧିଲାଭର ଯେଉଁ ଚିତ୍ର ଦିଆଯାଇଅଛି ସେଥିରେ ଓଡ଼ିଶୀ ଗୌଡ଼ୀୟବୈଷ୍ଣବମାନଙ୍କ ବିବାଦର ଏକ ସୁସ୍ପଷ୍ଟ ଚିତ୍ର ଆମେ ଦେଖିବାକୁ ପାଉଥାଉଁ ।

ଏହି ବୈଷ୍ଣବ ବିବାଦକୁ ଏକ ସତ୍ୟ ଘଟଣା ବୋଲି ସ୍ୱୀକାର କରି ନେଇ ଓଡ଼ିଆ ସମାଲୋଚକମାନେ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବ ମତବାଦର ତାରତମ୍ୟ ପ୍ରତିଷ୍ଠା କରିବେଲେ ବଙ୍ଗୀୟ ସମାଲୋଚକମାନେ ଏପରି ଏକ ବିବାଦକୁ ଅସ୍ୱୀକାର କରି 'ଅତିବଡ଼ୀ' ସମ୍ପ୍ରଦାୟ ତଥା ଜଗନ୍ନାଥ ଦାସଙ୍କ ଭାବମୂର୍ତ୍ତିକୁ ବିକୃତ ଓ ବିକଳାଙ୍ଗ ରୂପରେ ଉପସ୍ଥାପନ କରି ଅଛନ୍ତି । ଜଗନ୍ନାଥ ଦାସଙ୍କୁ ଶ୍ରୀଚୈତନ୍ୟଙ୍କର 'ଅତିବଡ଼ୀ' ଉପାଧି ପ୍ରଦାନ, ଏହାପରେ ଈର୍ଷାପରାୟଣ ବଙ୍ଗୀୟ ବୈଷ୍ଣବମାନଙ୍କର ଶ୍ରୀକ୍ଷେତ୍ର ପରିତ୍ୟାଗ ଦିବାକର ଦାସ ବର୍ଣ୍ଣିତ ଏହି ଘଟଣାକୁ କେଉଁ ତଥ୍ୟ ବଳରେ ବଙ୍ଗୀୟ ଆଲୋଚକମାନେ ସ୍ୱୀକାର କରିନାହାନ୍ତି ତାହାର ପରିଚୟ ଲାଭ ନିମନ୍ତେ ଆମେ ନିମ୍ନରେ ଦୁଇଜଣ ଆଲୋଚକଙ୍କ ଲେଖାକୁ ଉପସ୍ଥାପନ କରି ଦେଉଛୁ । ଯଥା :—

୧. ୧୯୩୬ ସାଲରେ ଲିଖିତ ଡକ୍ଟର ବିମାନ ବିହାରୀ ମଜୁମଦାରଙ୍କ ଶ୍ରୀଚୈତନ୍ୟ ଚରିତେର ଉପାଦାନ (୧୯୫୯ ଦ୍ୱିତୀୟ ସଂସ୍କରଣ) ପୁସ୍ତକର ପୃ. ୫୦୨-୪ରେ ଅଛି "ଜଗନ୍ନାଥ ଦାସେର ସଂପ୍ରଦାୟକେ 'ଅତିବଡ଼ୀ' ସଂପ୍ରଦାୟ ବଲେ । 'ଅତିବଡ଼' ଶବ୍ଦଟି ତାହାରା ଉତ୍କଳେରା ଅତ୍ୟନ୍ତ ମହତ୍ ଅର୍ଥେ ବ୍ୟବହାର କରେନ । କିନ୍ତୁ ପୁରୀର ଓଡ଼ିଆ ମଠେର ମହାନ୍ତ ଆମାକେ ବଲେନ ଯେ ଜଗନ୍ନାଥ ଦାସ ସ୍ତ୍ରୀ ବେଶ ଗ୍ରହଣ କରିଯା, ପ୍ରତାପରୁଦ୍ରେର ଅସୂର୍ଯ୍ୟଂସ୍ପର୍ଶ୍ୟା ରାଣୀଦିଗକେ ଶିକ୍ଷା ଦେନ, ଏଇ କପଟ ବେଶ ଗ୍ରହଣ କରିବାର ଜନ୍ୟ ଶ୍ରୀଚୈତନ୍ୟ ତାହାକେ ତ୍ୟାଗ କରେନ । ଝାଁଝାଁ ପିଟା ମଠେର ମହନ୍ତ ବଲେନ ପ୍ରତାପରୁଦ୍ରେର ଅନ୍ତଃପୁରେ ଜଗନ୍ନାଥ ଦାସ ସ୍ତ୍ରୀ ବେଶ ଗ୍ରହଣ କରିଯା ଭାଗବତ ପାଠ କରିତେନ । ରାଜାର ଲୋକେରା ତାହାକେ ସନ୍ଦେହ କରିଯା ପରୀକ୍ଷା କରିତେ

ଆସିଲେ ତିନି ସ୍ତ୍ରୀରୂପ ପ୍ରକଟ କରେନ । ବୈଷ୍ଣବଗଣେର ନାରୀଭାବେ ଭଜନ ଗୂହ୍ୟ କଥା । ଜଗନ୍ନାଥ ଦାସ ସେଇ ନାରୀ ଭାବେର ରହସ୍ୟ ପ୍ରକାଶ କରିୟା ଦେଓୟାୟ ଶ୍ରୀଚୈତନ୍ୟ ତାଁହାକେ 'ଅତିବଡ଼' ଆଖ୍ୟା ଦିୟା ତ୍ୟାଗ କରେନ ।"

ଦେଖିବାର କଥା, ଉପରୋକ୍ତ ଦୁଇଟି ସମ୍ବାଦର ପ୍ରଥମାଂଶ ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତରେ ଦେଖିବାକୁ ମିଳେ; କିନ୍ତୁ ଶେଷାଂଶରେ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ପରିତ୍ୟାଗ କରିଥିବା ସମ୍ବାଦଟି ଯେପରି କୁହାଯାଇଛି ତାହା ଠାକୁର ମଜୁମଦାର କିମ୍ବା ତାଙ୍କ ସମ୍ବାଦଦାତାଙ୍କ ସମ୍ପୂର୍ଣ୍ଣ କପୋଳକଳ୍ପିତ । କାରଣ ଏପରି ଏକ ବିକୃତ ତଥ୍ୟ ଆଲୋଚ୍ୟ ପୁସ୍ତକରେ କେଉଁଠି ନାହିଁ ।

ଏହି ବୈଷ୍ଣବ-ବିବାଦ ଉପରେ ଠାକୁର ମଜୁମଦାରଙ୍କ ନିମ୍ନ ବକ୍ତବ୍ୟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । "ଗୌଡ଼ୀୟ ଭକ୍ତଦେର ସଙ୍ଗେ ଉଡ଼ିୟା ଭକ୍ତଦେର ଯେ ବିରୋଧ ଛିଲ, ତାହାତେ ସନ୍ଦେହ ନାଇ । କିନ୍ତୁ ଦିବାକର ଦାସ ଜଗନ୍ନାଥ ଦାସେର ମାହାତ୍ମ୍ୟ ଘୋଷଣାର ଜନ୍ୟ ଯେ ଉପାଖ୍ୟାନ ଲିଖିୟାଛେନ ତାହା ସତ୍ୟ ବଲିୟା ଗ୍ରହଣ କରା ଯାୟନା, କେନ ନା ଶ୍ରୀଚୈତନ୍ୟ ଭକ୍ତଗଣ କଖନଇ ଏରୂପ ମତ ଛିଲେନ ନା ଯେ ଏକଜନେର ପ୍ରାଧାନ୍ୟ ଦେଖିୟା ତାଁହାରା ଈର୍ଷାନ୍ୱିତ ହଇବେନ ।" ଦେଖିବାର କଥା, ଠାକୁର ମଜୁମଦାର ଗୌଡ଼ୀୟ-ଉତ୍କଳୀୟ ବୈଷ୍ଣବମାନଙ୍କ ବିବାଦକୁ ସ୍ୱୀକାର କରନ୍ତି, କିନ୍ତୁ ଦିବାକର-ବର୍ଣ୍ଣିତ ଉପାଖ୍ୟାନକୁ ଅସ୍ୱୀକାର କଲାବେଳେ ଭଦ୍ର ଭାଷାର ଅନ୍ତରାଳରେ ନିଜ ମନର ପ୍ରତିହିଂସାକୁ ସେ ଯେପରି ପ୍ରକାଶ କରିଛନ୍ତି ତାହା ପାଠକ ନିକଟରେ ଅଛପା ରହିପାରି ନାହିଁ । ଏହି ଉପାଖ୍ୟାନଟି ଶୁଦ୍ଧାଭକ୍ତି ଉପାସକ ଜଣେ ବିରକ୍ତ ବୈଷ୍ଣବଙ୍କ ଚିତ୍ତରେ କିପରି ଘୃଣାର ଆଲୋଡ଼ନ ସୃଷ୍ଟି କରିଅଛି ତାହାର ପରିଚୟ ବର୍ତ୍ତମାନ ଆପଣମାନେ ଦେଖନ୍ତୁ ।

୨. 'ମହାମହୋପଦେଶକ' ଶ୍ରୀମତ୍ ସୁନ୍ଦରାନନ୍ଦ ବିଦ୍ୟାବିନୋଦ 'ଶ୍ରୀକ୍ଷେତ୍ର' (୪ର୍ଥ ସଂସ୍କରଣ, ୧୯୬୮ ଖ୍ରୀଷ୍ଟାବ୍ଦ) ପୁସ୍ତକରୁ ପୃ ୩୩-୫୩ରେ ବଡ଼ ଓଡ଼ିଆ ମଠ ଓ ଜଗନ୍ନାଥ ଦାସଙ୍କ ଉପରେ ଏକ ଦୀର୍ଘ ବିବରଣୀ

ଉପସ୍ଥାପନ କରିଅଛନ୍ତି । ବଙ୍ଗଳା 'ଗୌଡ଼ୀୟ' ପତ୍ରିକାର ୮ମ ଖଣ୍ଡ ୧୧ଶ ସଂଖ୍ୟା (ଅକ୍ଟୋବର ୧୯୨୯ ସାଲ) ଓ ୮ମ ଖଣ୍ଡ ୧୨ଶ ସଂଖ୍ୟା (ନଭେମ୍ବର, ୧୯୨୯ ସାଲ)ରେ 'ଅତିବଡ଼ୀ ଜଗନ୍ନାଥ ଦାସ' ନାମକ ଏକ ଦୀର୍ଘ ପ୍ରବନ୍ଧ ପ୍ରକାଶ ପାଇଛି । 'ଶ୍ରୀକ୍ଷେତ୍ର'ରେ ପ୍ରକାଶିତ ପୂର୍ବୋକ୍ତ ବିବୃତି ଏହି ପ୍ରବନ୍ଧର ଏକ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ରୂପ ମାତ୍ର । ଡକ୍ଟର ମଜୁମଦାର ପତ୍ରିକାରେ ପ୍ରକାଶିତ ଏହି ପ୍ରବନ୍ଧ ଅଧ୍ୟୟନ କରିଥିଲେ ହେଁ ଜଣେ ଇତିହାସର ଗବେଷକ ହିସାବରେ ଏଥିରେ ସ୍ଥାନ ପାଇଥିବା ଅଭିମତର ସତ୍ୟାସତ୍ୟରୁ ନିଜକୁ ମୁକ୍ତ ରଖିବାକୁ ଚେଷ୍ଟା କରି ଅଛନ୍ତି । ପୁସ୍ତକରେ ନଥିବା ଗୋଟିଏ ଅଂଶ ପତ୍ରିକାରୁ ବର୍ତ୍ତମାନ ଉଦ୍ଧାର କରାଯାଉଛି —

"ଶୁଣା ଯାଏ, ଜଗନ୍ନାଥ ଦାସ ସ୍ୱୟଂ-ପରବ୍ରହ୍ମ ନାମ-ସଂକୀର୍ତ୍ତନ-ପିତା ଗୌର ନିତ୍ୟାନନ୍ଦ, ଜଗଦ୍‌ଗୁରୁ ନାମାଚାର୍ଯ୍ୟ ଠାକୁର ହରିଦାସ ପ୍ରଭୃତି ଲୋକଶିକ୍ଷକ-ଗଣ ଅପେକ୍ଷା ଓ ଆପଣାକେ ଅଧିକତର ଶାସ୍ତ୍ରଦର୍ଶୀ ଓ ଅଧିକତର ବିଚାରକ ଏବଂ ସିଦ୍ଧାନ୍ତଜ୍ଞ ବିଚାର କରାଯ଼ ନାମାଚାର୍ଯ୍ୟ ଠାକୁର ହରିଦାସ ଜଗନ୍ନାଥ ଦାସକେ 'ସ୍ୱତନ୍ତ୍ର ସ୍ୱମତ-କଳ୍ପନାକାରୀ' ବଲିଯ଼ା ସମ୍ଭାଷଣାଦି ତ୍ୟାଗ କରିଯ଼ା ଛିଲେନ । ଆରଓ ଶୁନାଯାଯ଼ ତାଁହାର ସ୍ତାବକଗଣ ନାକି ଏଇ ସମୟେ ତାହାକେ କଖନଓ ଭଗବଦବତାର, କଖନଓ ବା ଶ୍ରୀରାଧିକାର ଅବତାର ପ୍ରଭୃତି କଳ୍ପିତ ବିଚାରେ ପ୍ରତିଷ୍ଠିତ କରିତେ ସଚେଷ୍ଟ ହନ । ଏଇ ସକଲ କଥା ନାମାଚାର୍ଯ୍ୟ ଠାକୁର ହରିଦାସ ଓ ମହାପ୍ରଭୁର ଭକ୍ତଗଣେର କର୍ଣ୍ଣଗୋଚର ହଇଲେ ତାଁହାରା ଜଗନ୍ନାଥ ଦାସକେ ଶୁଦ୍ଧଭକ୍ତି ସିଦ୍ଧାନ୍ତ ହଇତେ ବିଚ୍ୟୁତ ଓ ଗୁରୁ-ଲଙ୍ଘନକାରୀ ବିବେଚନା କରିଯ଼ା ସର୍ବତୋଭାବେ ଦୂରେ ରାଖେନ ।

"ଏକଦିନ ଜଗନ୍ନାଥ ଦାସ ମହାପ୍ରଭୁର ନିକଟ ଉପସ୍ଥିତ ହଇଯ଼ା ନିଜ ପ୍ରତିଷ୍ଠାର ପସରା ପ୍ରଦର୍ଶନ କରିତେ ଇଚ୍ଛୁକ ହଇଲେନ, ଏବଂ ନିଜ ଭାଗବତେର ଅନୁବାଦ, ମହାମନ୍ତ୍ରେର ସ୍ୱତନ୍ତ୍ରମତେ ଗ୍ରହଣ ପ୍ରଣାଳୀ ଓ ନିଜ ସ୍ୱରୂପେର ପରିଚଯ଼ ପ୍ରଭୃତି ଧନ-ସମ୍ପତ୍ତି ଲଇଯ଼ା ମହାପ୍ରଭୁର ନିକଟ ଉପସ୍ଥିତ ହଇଲେନ । ଅତିବଡ଼-ସମ୍ପ୍ରଦାଯ଼େର ପ୍ରାପ୍ତ ବିବରଣ ହଇତେ

ତାନାଯାସ୍ନ, ଏଇ ସମସ୍ତେ ମହାପ୍ରଭୁ ଜଗନ୍ନାଥ ଦାସକେ ଅତି ଦୂରେ ରାଖିବାର ଜନ୍ୟ ତାଁହାକେ ବହୁ ଧନ୍ଧାନାଦ ଦ୍ୱାରା ବଞ୍ଚନା କରେନ ଏବଂ ତାହାର ଅତି ବଡ଼ଲୋକେର ନ୍ୟାୟ ଭାଗବତାନୁବାଦ ମହାପ୍ରଭୁ ଓ ମହାପ୍ରଭୁର ଭକ୍ତଗଣେର, ନ୍ୟାୟ ଧନଜନଗଣ ଶୁନିବାର ଯୋଗ୍ୟ ନହେନ,—ଇହା ଜ୍ଞାପନ କରେନ । ଜଗନ୍ନାଥ ଦାସ ମହାପ୍ରଭୁକେ 'କୃଷ୍ଣ' ଏବଂ ଆପନାକେ 'ରାଧିକା' ବଲିୟା ବର୍ଣ୍ଣନ କରିଲେ ମହାପ୍ରଭୁ ବଲେନ୍,—"ଦାସ ମହାଶୟ, ଆପନି ଅତିବଡ଼ ହଇୟା ପଡ଼ିୟାଛେନ, ଆମାଦେର ନ୍ୟାୟ ଦୀନ ଓ ସାମାନ୍ୟ ବ୍ୟକ୍ତିର ସହିତ ଆପନାର କୋନ ସମ୍ବନ୍ଧ ଥାକିତେ ପାରେନା ।"

'ଶ୍ରୀକ୍ଷେତ୍ର' ପୁସ୍ତକେର ଗୋଟିଏ ସ୍ଥଳରେ ପ୍ରାସଙ୍ଗିକ ଭାବେ କୁହାଯାଇଛି, "ଏଇ ରୂପ କ୍ଷେତ୍ରେ ଶ୍ରୀଚୈତନ୍ୟଦେବ ବା କୋନ ଶୁଦ୍ଧଭକ୍ତି-ସିଦ୍ଧାନ୍ତବିତ୍ ମହାଜନ ଯଦି କାହାକେଓ 'ଅତିବଡ଼' ଉପାଧି ପ୍ରଦାନଓ କରେନ, ତେବେ ତାହା ନିଶ୍ଚୟଇ ଶ୍ଳେଷବ୍ୟଞ୍ଜକ ବା ବଞ୍ଚନାକାରକ ଆଖ୍ୟା ବିଶେଷ ।"

ଏତ ଗଲ 'ଅତିବଡ଼' ଉପରେ ବିଦ୍ୟାବିନୋଦ ମହାଶୟଙ୍କ ନୂତନ ବ୍ୟାଖ୍ୟା, ଖୋଦ୍ ଜଗନ୍ନାଥ ଦାସଙ୍କୁ ସେ କିପରି ଚିତ୍ରଣ କରିଛନ୍ତି ତାହାର ପରିଚୟ ଦେଉଛୁ । ପତ୍ରିକାରେ ପ୍ରକାଶିତ ପ୍ରବନ୍ଧରେ ଓ ପୁସ୍ତକରେ ସାମାନ୍ୟ ପରିବର୍ତ୍ତନ ସହ ଏହା ଏଇପରି ବର୍ଣ୍ଣିତ ହୋଇଅଛି, "ଅତିବାଡ଼ୀ ସମ୍ପ୍ରଦାୟେର ମଧ୍ୟେ ପ୍ରଚଳିତ ଅନ୍ୟ ଏକ ପ୍ରକାର ବିବରଣ ହଇତେ ଜାନା ଯାୟ ଯେ, ଏଇ ଜଗନ୍ନାଥ ଦାସେର ହୃଦୟେ ଅତି ଅଳ୍ପ ବୟସେଇ ଭବ-ସଂସାର ପାର ହଇବାର ଏକଟା ଅଭିଳାଷେର ଉଦୟ ହୟ । ଐରୂପ ହୈତୁକ-ଅଭିଳାଷେର ବଶବର୍ତ୍ତୀ ହଇୟା ଜଗନ୍ନାଥ ଦାସ ଧର୍ମେ ମନୋନିବେଶ କରିତେ ସଙ୍କଳ୍ପ କରେନ ଏବଂ ଉତ୍କଳ-ଛନ୍ଦୋବଦ୍ଧ ଭାଗବତ ପୁରାଣେର ଗୀତି ରଚନା କରିୟା ସେଇ ସକଲ୍ ଗୀତି ଉତ୍କଳେର ଗ୍ରାମେ ଗ୍ରାମେ ଗାହିୟା ବେଡ଼ାଇତେ ଥାକେନ । ତାହାତେ ସର୍ବସାଧାରଣ ବିଶେଷ ମୁଗ୍ଧ ଓ ଆକୃଷ୍ଟ ହନ । କୋମଳ-ଚିତ୍ତ ରମଣୀଗଣ ଅଧିକ ସଙ୍ଗୀତ ପ୍ରିୟା । ତାହାରା ଜଗନ୍ନାଥ ଦାସେର ଗୀତି ଶ୍ରବଣେ ଅଧିକତର

ବିମୋହିତ ହଇୟା ପଡ଼ିତେନ। ଜଗନ୍ନାଥ ଦାସ ଯଖନ ନାନା ରଙ୍ଗେ-ଭଙ୍ଗେ ସଙ୍ଗୀତେର ତରଙ୍ଗ ଉଠାଇୟା ପଥ ଦିୟା ଚଲିତେ ଥାକିତେନ, ତଖନ ବଡ଼ ବଡ଼ ଘରେର ରମଣୀକୁଲଓ ଜଗନ୍ନାଥେର ପିକନିନ୍ଦିତ କଣ୍ଠସ୍ୱର ଓ ଭାବ ବିମଣ୍ଡିତ ଅଭିନୟେ ଆକୃଷ୍ଟ ହଇୟା ତାହାକେ ବେଷ୍ଟନ କରିୟା ତାହାର ଗୀତାଭିନୟ ଶ୍ରବଣ ଦର୍ଶନ କରିତେନ। ରମଣୀକୁଲ ଅର୍ଘ୍ୟ, ବସନ, ଭୂଷଣ ପ୍ରଭୃତି ଜଗନ୍ନାଥ ଦାସେର ପଦପ୍ରାନ୍ତେ ଉପହାର ପ୍ରଦାନ କରିୟା ବଲିତେନ, 'ଓଗୋ, ତୁମି ପ୍ରତ୍ୟହ ଏକଟିବାର କରିୟା ଆମାଦେର ଆବାସେ ଆସିୟା ତୋମାର ସୁଧା-ସୁମଧୁର-ସଙ୍ଗୀତ ଶ୍ରବଣ କରାଇୟା ଯାଇଓ।' କେହ ବା ଜଗନ୍ନାଥ ଦାସକେ ନାନା ଭାବେ ସେବା କରିବାର ଜନ୍ୟ ବ୍ୟାକୁଳିତା ହଇତେନ। କୋନଓ ରମଣୀ ବା କେଶଦାମ ଦ୍ୱାରା ଜଗନ୍ନାଥ ଦାସେର ପଦଦ୍ୱୟ ବ୍ୟଜନ କରିତେନ। କେହ ସଙ୍ଗୀତ-ଶ୍ରବଣେ ଭାବେ ଗଡ଼ା ଗଡ଼ି ଯାଇତେନ। ଅଭିଭାବକଗଣ ରମଣୀଗଣେର ଏଇ ସକଲ ବ୍ୟବହାରେ ଅସନ୍ତୁଷ୍ଟ ହଇୟା ଏଇ ସକଲ କଥା ମହାରାଜ ପ୍ରତାପରୁଦ୍ରେର କର୍ଣ୍ଣଗୋଚର କରିଲେନ। ପ୍ରତାପରୁଦ୍ର ଜଗନ୍ନାଥ ଦାସକେ ଧରିୟା ଆନିବାର ଜନ୍ୟ ଦୂତଗଣେର ପ୍ରତି ଆଦେଶ ଦିଲେନ। ଜଗନ୍ନାଥ ଦାସ ଧୃତ ହଇୟା ପ୍ରତାପରୁଦ୍ରେର ସନ୍ନିଧାନେ ଉପସ୍ଥିତ ହଇଲେ ମହାରାଜ ଜଗନ୍ନାଥ ଦାସକେ ଜିଜ୍ଞାସା କରିଲେନ,—'କେନହେ ଜଗନ୍ନାଥ ଦାସ, ତୁମି ନାକି ରମଣୀ-ସମାଜେ ନାନାପ୍ରକାର ହାବଭଙ୍ଗୀ ଓ ଅଭିନୟାଦି କରିୟା ଗାନ ଗାହିୟା ବେଡ଼ାଓ ଓ ତାହାଦେର ସହିତ ଯଥେଚ୍ଛଭାବେ ମେଲାମେଶା କର?' ରାଜାର ବାକ୍ୟେର ପ୍ରତ୍ୟୁତ୍ତରେ ଜଗନ୍ନାଥ ଦାସ ବଲିଲେନ,—'ମହାରାଜ, ଆମାକେ ଯେ କେହ ଡାକେନ, ଆମି ତାହାରଇ ନିକଟ ଯାଇ, ଆମାର ସ୍ତ୍ରୀ-ପୁରୁଷେ ଭେଦଜ୍ଞାନ ନାଇ।'"

ମଠରେ ଖାଇ ଖଟରେ ଚଢ଼ି ପ୍ରେମ-ଭକ୍ତିରେ ନିମଜ୍ଜିତ ରହିବା ଅତ୍ୟନ୍ତ ସହଜ ଓ ନିରାପଦ, କିନ୍ତୁ ସାମ୍ପ୍ରଦାୟିକ ବିଚାର-ଦୃଷ୍ଟିରୁ ଶୁଣା-କଥାକୁ ଉପନ୍ୟାସ ପରି ନିଜ ମନମୁତାବକ ରୂପଦେଇ ଅନ୍ୟର ଧର୍ମ ବିଶ୍ୱାସକୁ ବିକୃତ କରିବା, ବିଶେଷତଃ, ଏହାକୁ ଗମ୍ଭୀର ଗବେଷଣା-ପ୍ରସୂତ ଇତିହାସ ବୋଲି ବିଚାର କରିବା ଆଦୌ ସ୍ପୃହଣୀୟ ନୁହେଁ। ଏପରି କର୍ମ

ଭିତରେ ଲେଖକଙ୍କ ମନର ଗୁପ୍ତଭାବ ଆନ୍ଦୋଳନଟି କେବଳ ଫୁଟିଉଠିବାକୁ ସୁବିଧା ପାଇଥାଏ । ମାତ୍ର ଦେଖିବା କଥା, ଡକ୍ଟର ମଜୁମଦାର ଓ ଶ୍ରୀମତ୍ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ଗୌଡ଼ୀୟ-ଉତ୍କଳୀୟ ବୈଷ୍ଣବ ବିବାଦ ଉପରେ ଅଭିମତ ପ୍ରକାଶ କଲାବେଳେ ଦିବାକର ଦାସଙ୍କ ପୁସ୍ତକ ବ୍ୟତୀତ ଅନ୍ୟ କୌଣସି ଓଡ଼ିଆ କିମ୍ବା ବଙ୍ଗଳା ଉପାଦାନ ଦେଖିବାକୁ ପାଇ ନାହାନ୍ତି । ତେଣୁ, ଦିବାକର ଦାସ କହି ନଥିବା କଥାକୁ ମନରୁ ସୃଷ୍ଟି କରିନେବା କିମ୍ବା ତାଙ୍କ କହିଥିବା କଥାରୁ ଭିନ୍ନ ଅର୍ଥ ବାହାର କରିବାରେ ଦିବାକର ଦାସଙ୍କ ଉପାଖ୍ୟାନ ମୂଲ୍ୟହୀନ ହୋଇଯିବା ଆଦୌ ଧର୍ତ୍ତବ୍ୟପର ନୁହେଁ । ଶ୍ରୀଚୈତନ୍ୟ-ପ୍ରଦତ୍ତ 'ଅତିବଡ଼' ଉପାଧି ଶ୍ଳେଷବ୍ୟଞ୍ଜକ— ବିଦ୍ୟାବିନୋଦ ମହାଶୟଙ୍କ ଏଇ ଅର୍ଥ କେବଳ ଜଗନ୍ନାଥ ଦାସ ଓ ତାଙ୍କ ସମ୍ପ୍ରଦାୟ ପ୍ରତି ଏକ ବିଦ୍ରୂପ ନୁହେଁ, ଏହା ସମଗ୍ର ଓଡ଼ିଆଭାଷୀ ଜନତାର ମୂର୍ଖତାର ପରିଚୟକ ମଧ୍ୟ । କାରଣ, ଶ୍ରୀଚୈତନ୍ୟ ଓଡ଼ିଆରେ ଯାହା କହିଥିଲେ ତାକୁ ଓଡ଼ିଆ ଲୋକେ ବୁଝିପାରିଲେ ନାହିଁ, କିନ୍ତୁ ଜଣେ ବଙ୍ଗଭାଷୀ ବୈଷ୍ଣବ, ଅର୍ଦ୍ଧ ଚତୁଶତ ବର୍ଷ ପରେ, ଓଡ଼ିଆଭାଷାରୁ ଅସଲ କଥାଟା ଚଟାପଟ ଧରି ପାରିଲେ !!!

ଦିବାକର ଦାସଙ୍କ ଉପାଖ୍ୟାନର ପ୍ରକୃତ ତାତ୍ପର୍ଯ୍ୟ ପ୍ରବନ୍ଧର ପରବର୍ତ୍ତୀ ବିଭାଗରେ ଆପଣମାନେ ଦେଖିବାକୁ ପାଇବେ ।

(୩)

'ଗୌଡ଼ୀୟ' ପତ୍ରିକାର ଗୋଟିଏ ସ୍ଥଳରେ ଅଛି, "ଅତିବାଡ଼ୀ ସଂପ୍ରଦାୟସ୍ଥ ବ୍ୟକ୍ତିଗଣ ତାଁହାଦେରେ ସଂପ୍ରଦାୟ-ପ୍ରବର୍ତ୍ତକ ଜଗନ୍ନାଥ ଦାସେର ଅଲୌକିକତ୍ୱ ପ୍ରତିପାଦନ କରିବାର ଜନ୍ୟ ନାନା ପ୍ରକାର ଗଳ୍ପ ରଚନା କରିୟାଛେନ, ସେଇ ସକଲ ଗଳ୍ପ ଗୁଲି ମହାପ୍ରଭୁର ଓ ତଦୀୟ ଉତ୍କଳଦେଶୀୟ ଗୌଡ଼ୀୟ ଗଣେର ଲୀଲାର ଅବୈଧ ପ୍ରତିଯୋଗୀ ଅନୁକରଣ ବଲିୟାଇ ମନେହୟ ।" ଏଥିରେ ନିମ୍ନଲିଖିତ ତିନଟି ବିଷୟ ଲକ୍ଷ୍ୟ କରାଯାଇପାରେ । ଯଥା :—(କ) ଜଗନ୍ନାଥ ଦାସଙ୍କର ଅଲୌକିକତା ପ୍ରତିପାଦନ, (ଖ) ଗୌଡ଼ୀୟ ବୈଷ୍ଣବମାନଙ୍କ ଲୀଳାର ଅବୈଧ ପ୍ରତିଯୋଗୀ ଅନୁକରଣ ଓ (ଗ) ଏଇ ଲୀଳାର ରୂପାୟନ ପାଇଁ ନାନା ପ୍ରକାର ଗଳ୍ପର

ରଚନା ଅଥବା ସ୍ୱତନ୍ତ୍ର ନୂତନ ଉପାଦାନର ସଂଯୋଜନ । କିନ୍ତୁ ବିଦ୍ୟା ବିନୋଦ ମହାଶୟ ଅନ୍ୟର ଧର୍ମ ବିଶ୍ୱାସକୁ ଅତି ନିଃସଂକୋଚରେ ଆକ୍ରମଣ କଲାବେଳେ ସ୍ୱଧର୍ମର ବେଦଗ୍ରନ୍ଥ ସ୍ୱରୂପ, "ଚୈତନ୍ୟ ଚରିତାମୃତ"ରେ ଯାହା ଅଛି ସେ କଥା ବୋଧହୁଏ ଭୁଲିଯାଇ ଅଛନ୍ତି ଓ ସେଇ ଗ୍ରନ୍ଥରେ ସ୍ଥାନ ପାଇଥିବା ପ୍ରୀତି ଦର୍ଶନ କେତେ ଦୂର ଶ୍ରୀଚୈତନ୍ୟଙ୍କର ମୁଖର ବାଣୀ ତାହା ମଧ୍ୟ ବିଚାର କରିବାର ଆବଶ୍ୟକତା ଅନୁଭବ କରି ନାହାନ୍ତି । ପ୍ରସଙ୍ଗଟି ପ୍ରଶ୍ନଟି ପୂର୍ଣ୍ଣତଃ ଧର୍ମସମ୍ପର୍କୀୟ ଥିବାରୁ ଓ ସମସ୍ତ ଧର୍ମ ବିଶ୍ୱାସ ପ୍ରତି ଆମର ସମାନ ସମ୍ମାନ ଥିବା ହେତୁ ଆମେ ବାଧ୍ୟବାଧକତାରେ ନିମ୍ନରେ ଯେଉଁ ଆଲୋଚନା କରିବାକୁ ଯାଉଅଛୁ ତାହାକୁ ପାଠକ ପାଠିକାମାନେ କ୍ଷମା ଦେବେ ବୋଲି ଆଶା କରୁଅଛୁ ।

ଅଲୌକିକତା ସମ୍ପର୍କରେ ଡକ୍ଟର ମଜୁମଦାର ମହାଶୟ କହିଛନ୍ତି, "ଏଇ ବିଷୟରେ ଦେଖାଗଲ କୃଷ୍ଣ ଦାସ କବିରାଜଙ୍କର ଅଲୌକିକ ଘଟନା-ବର୍ଣ୍ଣନାର ପ୍ରତି ଝୋଙ୍କ ଅତ୍ୟନ୍ତ ବେଶୀ । ତିନି ପୂର୍ବବର୍ତ୍ତୀ କୌଣସି ଗ୍ରନ୍ଥ ଅନୁସରଣ କରିତେ କରିତେ ସହସା ତାହାର ଆନୁଗତ୍ୟ ଛାଡ଼ିୟା ଅଲୌକିକ ଘଟନାର ସନ୍ନିବେଶ କରିୟାଛେନ ।" ପୃ ୩୯୮ ପୁନଶ୍ଚ, 'ଅବୈଧ ପ୍ରତିଯୋଗୀ ଅନୁକରଣ' ଉପରେ କିଛି ନ କହିବା ବରଂ ଅଧିକ ଶ୍ରେୟସ୍କର । ଶ୍ରୀଚୈତନ୍ୟଙ୍କୁ ଶ୍ରୀକୃଷ୍ଣ ରୂପେ ଗ୍ରହଣ କରି ଶ୍ରୀକୃଷ୍ଣଙ୍କ ଜନ୍ମଠାରୁ ବାଳଲୀଳା ପର୍ଯ୍ୟନ୍ତ ବହୁ ଘଟଣାକୁ ଶ୍ରୀଚୈତନ୍ୟଙ୍କ ଜୀବନରେ ରୂପାୟିତ କରିବା, ଏପରି କି ଲୋଚନ ଦାସଙ୍କ ପରି ଲେଖକ ଶ୍ରୀ ଜଗନ୍ନାଥଙ୍କ କାଞ୍ଚିକାବେରୀ ଉପାଖ୍ୟାନକୁ ଶ୍ରୀଚୈତନ୍ୟଙ୍କ ଜୀବନୀ ଉପରେ ଆରୋପ କରିବା ପୂର୍ଣ୍ଣତଃ ଅନୁକରଣ ବ୍ୟତୀତ ଅନ୍ୟ କିଛି ହୋଇ ନପାରେ । କାରଣ, ଏଇ ଶ୍ରୀକୃଷ୍ଣ-ଚୈତନ୍ୟ ଗୟାରୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଥିଲେ ନବଦ୍ୱୀପର ନିମାଇ ପଣ୍ଡିତ ମାତ୍ର । ଜୀବନର ପ୍ରଥମ ଚବିଶ ବର୍ଷ ମଧ୍ୟରେ ତାହାଙ୍କ ଠାରେ ଐଶ୍ୱରିକ ଶକ୍ତିର ଆରୋପ ସଂପୂର୍ଣ୍ଣ ଅବାସ୍ତବ ମାତ୍ର । ତୃତୀୟ ଅଭିଯୋଗଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଭକ୍ତର ବିଶ୍ୱାସରେ କାଳକ୍ରମେ ଗଢ଼ି ଉଠିଥିବା ନାନା ପ୍ରକାର ଗଳ୍ପ ଓ ବିବିଧ ନୂତନ ଉପାଦାନକୁ ସହୃଦୟତାର ସହିତ ବିଚାର ନ କଲେ ଆଲୋଚନାଟି ଅସନ୍ତୋଷଜନକ ହେବା ଏକାନ୍ତ ସ୍ୱାଭାବିକ । 'ଚୈତନ୍ୟ ଚରିତାମୃତ'ରେ ଥିବା ଶ୍ରୀଚୈତନ୍ୟ-

ମୁଖ-ନିଃସୃତ ଧର୍ମ-ଦର୍ଶନ ଏହାର ଅନ୍ୟତମ ନିଦର୍ଶନ । ଏ ବିଷୟରେ ଡକ୍ଟର ମଜୁମଦାର କହନ୍ତି, "ଆମାର ମନେହୟ, ଭକ୍ତି ରସାମୃତ ସିନ୍ଧୁ, ହରିଭକ୍ତିବିଳାସାଦି ଗ୍ରନ୍ଥର ସଂକ୍ଷିପ୍ତ ସାର ଯେମନ କବିରାଜ ଗୋସ୍ୱାମୀ ସୁକୌଶଳେ ଶ୍ରୀ ଚୈତନ୍ୟ-ସନାତନ ସଂବାଦେ ଦିଯାଛେନ, ଏଖାନେ ତେମନି ତିନି ବିଦଗ୍ଧମାଧବ ଓ ଲଳିତମାଧବେର ସମ୍ମତ ବୈଷ୍ଣବମଣ୍ଡଳୀକେ ପରିଚିତ କରିଇବାର ଉଦ୍ଦେଶ୍ୟ ଓ ନିଜେର ଗ୍ରନ୍ଥକେ ଗୋସ୍ୱାମୀ—ଶାସ୍ତ୍ରେର ମଞ୍ଜୁଷା-ସ୍ୱରୂପ କରିବାର ଜନ୍ୟ ଐରୂପ ଭାବେ ବର୍ଣ୍ଣନା କରିଯାଛେନ ।" (ପୃ. ୩୬) ଶ୍ରୀଚୈତନ୍ୟଙ୍କ ତିରୋଭାବ (୧୫୩୩ସାଲ) ପରେ ଲିଖିତ ଷଡ଼ଗୋସ୍ୱାମୀଙ୍କ ବିଭିନ୍ନ ପୁସ୍ତକରୁ ବହୁ ବିଷୟ ଶ୍ରୀଚୈତନ୍ୟଙ୍କ ମୁଖରେ କବିରାଜ ଗୋସ୍ୱାମୀ ଯେପରି କୁହାଇଛନ୍ତି ତାକୁ ଲକ୍ଷ୍ୟ ରଖି ଡକ୍ଟର ସୁଶୀଲ କୁମାର ଦେ 'ପଦ୍ୟାବଳୀ'ର ଭୂମିକାରେ କହନ୍ତି, "No doubt, Chaitanya is represented as commissioning Sanatan and Rupa to prepare these learned texts as the doctrinal foundations of the faith and suggesting to them elaborate outlines and schemes; but these outlines and schemes are so suspiciously faithful to the actual and much later products of the Goswamins themselves that this fact takes away whatever truth there might have been in the representation. + + + But to hold Chaitanya responsible for every fine point of dogma and doctrine elaborated by Sanatan and Rupa and Jiba would indicate an undoubtedly pious but entirely unhistorical imagination"

ଆମେ ପୂର୍ବରୁ କହି ଦେଇଛୁ ଯେ ଆଲୋଚ୍ୟ ପ୍ରସଙ୍ଗଟି ଅତ୍ୟନ୍ତ ଅପ୍ରୀତିକର । ତେଣୁ ଏ ସଂପର୍କରେ ଆଉ ଅଧିକ ଆଲୋଚନା କରିବାର ଆବଶ୍ୟକତା ଆମେ ଅନୁଭବ କରୁନାହୁଁ । କିନ୍ତୁ ପୂର୍ବ ଉଦ୍ଧୃତିରେ ଥିବା ଅଭିମତ ଯେ ବିଦ୍ୟାବିନୋଦ ମହାଶୟଙ୍କ ଚରିତ୍ରଦୋଷାଦିର ଏକ ଅଭ୍ରାନ୍ତ ନିଦର୍ଶନ ଓ ଏହି ଚରିତ୍ରଦୋଷ ଯେ ଦିବାକର ଦାସଙ୍କ ଦ୍ୱାରା ବର୍ଣ୍ଣିତ ବୈଷ୍ଣବ-ବିବାଦ-ପ୍ରସଙ୍ଗର ଅନ୍ତିମ ପରିଣତି, ଏଥିରେ ତିଳେ ମାତ୍ର ସନ୍ଦେହ

ନାହିଁ । ଗୋଟିଏ ଧର୍ମ ମତବାଦ ପ୍ରଥମେ ପ୍ରଚଳିତ ହେଲା ବେଳେ ତା'ର ପ୍ରଚାରକମାନେ ସାଧାରଣତଃ ଯେଉଁ ଯେଉଁ କୌଶଳର ଆଶ୍ରୟ ନେଇଥାନ୍ତି ଓ ପ୍ରାସଙ୍ଗିକ ଭାବେ ଜଗନ୍ନାଥ ଚରିତାମୃତର ମୌଳିକ ଲକ୍ଷ୍ୟ କ'ଣ ଥିଲା ସେ ବିଷୟରେ ବର୍ତ୍ତମାନ ସାମାନ୍ୟ ଆଲୋଚନା କରାଯାଉଅଛି ।

ପୁରାତନ ବିଷୟର ଆହରଣ ଓ ଅନ୍ୟ କେତେକ ସ୍ଥଳରେ ତା'ର ବର୍ଦ୍ଧନ କିମ୍ବା ନବୀକରଣ ସହିତ ନୂତନ ବିଷୟର ସଂଯୋଜନ – ସଂପ୍ରଦାୟ ବିଶେଷକୁ କେନ୍ଦ୍ର କରି ଗଢି ଉଠିଥିବା ଧର୍ମମତବାଦକୁ ଅନୁଧ୍ୟାନ କଲେ ତା'ର ବିକାଶ- ଇତିହାସରେ ଉପରୋକ୍ତ ଧର୍ମ ବା ବୈଶିଷ୍ଟ୍ୟ ଏକ ଅପରିହାର୍ଯ୍ୟ ଅଙ୍ଗ ରୂପେ ସର୍ବତ୍ର ସମ୍ମାନିତ ହୋଇଥିବାର ଦେଖିବାକୁ ମିଳେ । ପୁନଶ୍ଚ, ଧର୍ମ-ସଂପ୍ରଦାୟ ଯେତେବେଳେ ଦେଶର ପ୍ରାଚୀନ ପରମ୍ପରା ଉପରେ ପ୍ରତିଷ୍ଠିତ ହୁଏ, ସେତେବେଳେ ଏହି ମତ ଏକ ଅବିସମ୍ବାଦିତ ସତ୍ୟର ମାନ୍ୟତା ଲାଭ କରିଥାଏ । ଗୌଡ଼ୀୟ ବୈଷ୍ଣବ ଓ ଅନ୍ତର୍ବର୍ତ୍ତୀ ସଂପ୍ରଦାୟର ଆଧ୍ୟାତ୍ମିକ ଦର୍ଶନ ତଥା ଧର୍ମାଚରଣ ପଦ୍ଧତିରେ ପୂର୍ବୋକ୍ତ ମତର ପ୍ରତିଫଳନ ସମାନଭାବେ ପରିଲକ୍ଷିତ ହେବା ଏକାନ୍ତ ସ୍ୱାଭାବିକ । ତେଣୁ ଗୋଟିଏ ସଂପ୍ରଦାୟ ପ୍ରତି ଅନୁରକ୍ତ ହୋଇ ଅନ୍ୟ ସଂପ୍ରଦାୟ ପ୍ରତି ଅନାଦର ବା ହେୟତା ପ୍ରଦର୍ଶନ କରିବା ଓ ତାକୁ ଅନ୍ୟର 'ଅବିବେକ ପ୍ରତିଯୋଗୀ ଅନୁକରଣ' ରୂପେ ଗ୍ରହଣ କରିବା ପାରସ୍ପରିକ ସହିଷ୍ଣୁତା ଓ ଉଦାର ସହୃଦୟତାର ଆଦୌ ଲକ୍ଷଣ ନୁହେଁ । ଊର୍ଦ୍ଧ୍ୱ ତିନିଶତ ବର୍ଷ ପରେ, ଯଦି ଦିବାକର ଦାସଙ୍କ ବର୍ଣ୍ଣନାଟି ଗୌଡ଼ୀୟ ଧର୍ମସାହିତ୍ୟର ଦୁଇଜଣ ଖ୍ୟାତନାମା ପଣ୍ଡିତଙ୍କ ମନରେ ତୀବ୍ରତର ପ୍ରତିକ୍ରିୟା ସୃଷ୍ଟି କରିପାରେ, ତାହେଲେ ଗୌଡ଼ୀୟ-ଓଡ଼ିଶୀ ବୈଷ୍ଣବ ବିବାଦରେ ଏକ କାଳ୍ପନିକ କାହାଣୀ (ଯଦି ଏହାର କୌଣସି ସତ୍ୟତା ନାହିଁ ବୋଲି ପ୍ରଥମରୁ ସ୍ୱୀକାର କରି ନିଆଯାଏ). ସୃଷ୍ଟି ପାଇଁ ଦିବାକର ଦାସଙ୍କ ମନରେ ଅନୁରୂପ ପ୍ରତିକ୍ରିୟା କେଉଁ କାରଣରୁ ହୋଇଥିଲା ତାହା ଅନୁଧ୍ୟାନ କରିବା ସର୍ବାଦୌ ବାଞ୍ଛନୀୟ । ଜଗନ୍ନାଥ ଚରିତାମୃତ (ଯାହା ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ରଚିତ ବୋଲି ଆମେ ସ୍ୱୀକାର କରୁ) ପୁସ୍ତକ ରଚନାର ଏକଶତ ବର୍ଷ ପୂର୍ବରୁ ଅର୍ଥାତ୍ ଶ୍ରୀଚୈତନ୍ୟଙ୍କ ଅପ୍ରକଟର ଏକଶତ ବର୍ଷ ମଧ୍ୟରେ ଗୌଡ଼ୀୟ ଧର୍ମ ପ୍ରଚାରର ଭିତରେ ନଷ୍ଟପ୍ରାୟ

ଏପରି କରୁ ବିଷୟ ଦେଖାଦେଉଛୁ ଯାହା ଈଶ୍ୱରଚନ୍ଦ୍ର ଦାସଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରେ, ସମ୍ଭବତଃ ଥିଲା ଏକମାତ୍ର ପ୍ରଧାନ କାରଣ। ସେହି ପ୍ରଧାନ କାରଣରେ ସ୍ୱରୂପ ଉପଲବ୍ଧି ପାଇଁ ଆମେ ନିମ୍ନରେ ଗୌଡ଼ୀୟ ବୈଷ୍ଣବ ଭକ୍ତଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ଓ ଶ୍ରୀଚୈତନ୍ୟ ଙ୍କ ରୂପରେ ଧରା ଦେଇଛନ୍ତି ତାହା ଉପସ୍ଥାପନା କରୁଅଛୁ।"

ଶ୍ରୀଚୈତନ୍ୟଙ୍କ ସନ୍ନ୍ୟାସ ଗ୍ରହଣ ପରେ ପୁରୁଷୋତ୍ତମ ଯାତ୍ରା-ପଥରେ ସେ ରେମୁଣାର ଗୋପୀନାଥଙ୍କୁ ଦର୍ଶନ କଲାବେଳେ ଯାହା ଘଟିଥିଲା ତାକୁ ବୃନ୍ଦାବନ ଦାସ ଚୈତନ୍ୟ ଭାଗବତ (୧୫୪୭—୫୦ ସାଲ ମଧ୍ୟରେ ରଚିତ)ରେ ଏଇପରି ବର୍ଣ୍ଣନା କରିଅଛନ୍ତି, "ରେମୁଣାୟ ଦେଖି ନିଜ ମୂର୍ତ୍ତି ଗୋପୀନାଥ। ବିସ୍ତର କରିଲ ନୃତ୍ୟ ଭକ୍ତବର୍ଗ ସାଥ।। (ଅନ୍ତ୍ୟ ୨।୨୭୨) ଲୋଚନ ଦାସ ଚୈତନ୍ୟ ମଙ୍ଗଲ (୧୫୬୦—୬୨ ସାଲ ମଧ୍ୟରେ ରଚିତ)ରେ ସେହି ଦର୍ଶନକୁ ଏଇପରି ରୂପ ଦେଇଛନ୍ତି, "ଦେଖଇ ସମ୍ମୁଖେ ସେଇ ମୂରତି ଗୋପାଲ। ମସ୍ତକ ଉପରେ ପୁଷ୍ପ ମୁକୁଟ ତାହାର।। ଆଚମ୍ବିତେ ମସ୍ତକେର ମୁକୁଟ ଖସିତେ। ଭୂମିତେ ପଡ଼ିବା ମାତ୍ର ତୁଲି, ନିଲ ହାତେ।।" (ମଧ୍ୟଖଣ୍ଡ. ପୃ. ୧୭୨) କବି କର୍ଣ୍ଣପୂର ଚୈତନ୍ୟ ଚନ୍ଦ୍ରୋଦୟ ନାଟକ (୧୫୭୨ ସାଲରେ ରଚିତ)ରେ ଗଙ୍ଗା ଚରଣ ମୁଖରେ ଏହାକୁ ଏଇପରି କୁହାଇଛନ୍ତି, "ବେଣୁଧାରୀ ଭଗବାନଙ୍କ ପ୍ରତିମୂର୍ତ୍ତି ସ୍ୱରୂପ ରେମୁଣା ନଗରବର୍ତ୍ତୀ ଭଗବାନଙ୍କ ପ୍ରାଚୀନ ମୂର୍ତ୍ତି (ଗୋପୀନାଥ) ଏହାଙ୍କୁ (ଶ୍ରୀଚୈତନ୍ୟଙ୍କୁ) ବନ୍ଦନା କରିବା ନିମିତ୍ତ ରାଜପଥ ଉପରେ ଉପସ୍ଥିତ ଥିଲେ।" (୭ମ ଅଙ୍କ ୮ମ ଶ୍ଳୋକର ଅନୁବାଦ) କୃଷ୍ଣଦାସ କବିରାଜ କୃତ ଚୈତନ୍ୟ ଚରିତାମୃତ (୧୬୧୫ ସାଲରେ ରଚିତ)ରେ ଅଛି; "ରେମୁଣାତେ ଗୋପୀନାଥ ପରମ ମୋହନ। ଭକ୍ତି କରି କୈଲ ପ୍ରଭୁ ତାଁର ଦରଶନ।। ତାଁର ପାଦପଦ୍ମ ନିକଟ ପ୍ରଣାମ କରିତେ। ତାଁର ପୁଷ୍ପ ଚୂଡ଼ା ପଡ଼ିଲ ପ୍ରଭୁର ମାଥାତେ" (ମଧ୍ୟ ୦।୧୩—୧୪) ଦେଖିବାର କଥା, ରେମୁଣାର ଗୋପୀନାଥଙ୍କୁ 'ନିଜ ମୂର୍ତ୍ତି' କିମ୍ବା 'ପ୍ରାଚୀନ ମୂର୍ତ୍ତି' ବୋଲି କହିବା ଓ ଶ୍ରୀଚୈତନ୍ୟଙ୍କୁ ବନ୍ଦନା କରିବା ପାଇଁ ପଥ-ପ୍ରାନ୍ତରେ ତାହାଙ୍କର ଦଣ୍ଡାୟମାନ ହେବାର ବର୍ଣ୍ଣନା ଜଣେ ଭକ୍ତର ବିଶ୍ୱାସରେ ସମ୍ଭବପର ହେଲେ ହେଁ ଏହା ସମ୍ପୂର୍ଣ୍ଣ ଅବାସ୍ତବ ଓ ଅସତ୍ୟ ମଧ୍ୟ; କାରଣ

ଏହା ସମ୍ପୂର୍ଣ୍ଣ ବାସ୍ତବ ତଥ୍ୟ ବିବର୍ଜିତ । କିନ୍ତୁ ଏପରି ବର୍ଣ୍ଣନା ଓ କଳ୍ପନାରେ ଗୋପୀନାଥ ଶ୍ରୀଚୈତନ୍ୟଙ୍କ ଅଭେଦତ୍ୱ ସତ୍ତ୍ୱା—କାର୍ମନ୍ଦିଂ ଅତ୍ୟନ୍ତ ସ୍ପଷ୍ଟ । ପୁନଶ୍ଚ, ପୁଷ୍ପକୁ ହସ୍ତରେ ଉତ୍ତୋଳନ କରିବା ଅପେକ୍ଷା ମସ୍ତକ ଉପରେ ତାହା ଦୃଷ୍ଟ ହେବା ଅଧିକ କବିତ୍ୱ ବ୍ୟଞ୍ଜକ ।

କଟକରେ ଶ୍ରୀଚୈତନ୍ୟଙ୍କର ସାକ୍ଷୀଗୋପାଳ ମୂର୍ତ୍ତି ଦର୍ଶନ ସମୟର ଘଟଣାକୁ ବୃନ୍ଦାବନ ଦାସ ଏହିପରି କହି ଅଛନ୍ତି, "ପ୍ରଭୁ, କଲ ନମସ୍କାର କରେନ ସ୍ତବନ । ଅଦ୍ଭୁତ କରେନ ପ୍ରେମ-ଆନନ୍ଦ-କ୍ରନ୍ଦନ ॥" (ଅନ୍ତ୍ୟ ୨।୩୦୪) ଗଙ୍ଗା ଚରଣ ମୁଖରେ କବି କର୍ଣ୍ଣପୁର ଏହିପରି କୁହାଇଛନ୍ତି, "ଭଗବାନ (ଶ୍ରୀଚୈତନ୍ୟ) ପୃଥିବୀ ଉପରେ ଦଣ୍ଡବତ ହୋଇ ନିଜର ପ୍ରାଚୀନ ମୂର୍ତ୍ତିକୁ ବନ୍ଦନା କଲେ । ଏହି ମୂର୍ତ୍ତି ମଧ୍ୟ ଭଗବାନ ଶ୍ରୀ ଚୈତନ୍ୟଙ୍କୁ ଅଭ୍ୟର୍ଥନା କଲେ; ବନ୍ଦନା କରିବା ସମୟରେ ଏହାଙ୍କର ମସ୍ତକ ମଧ୍ୟ ଝୁଙ୍କି ହୋଇଥିଲା ।" (ନାଟକ ୬।୧୯ ଶ୍ଳୋକ) କବିରାଜଙ୍କ ଭାଷାରେ ଏ ଦର୍ଶନଟି ଏହିପରି, "ଗୋପାଲେର ଆଗେ ଯବେ ପ୍ରଭୁର ହୟ ସ୍ଥିତି । ଭକ୍ତଗଣେ ଦେଖେ, ଯେନ ଦୁଁହେ ଏକମୂର୍ତ୍ତି ॥ ଦୁଁହେ— ଏକ ବର୍ଣ୍ଣ, ଦୁଁହେ ପ୍ରକାଣ୍ଡ ଶରୀର । ଦୁଁହେ—ରକ୍ତାମ୍ବର, ଦୁଁହାର ସ୍ୱଭାବ—ଗମ୍ଭୀର ॥ ମହା ତେଜୋମୟ ଦୁଁହେ କମଲ ନୟନ । ଦୁଁହାର ଭାବାବେଶ, ଦୁଁହେ—ଚନ୍ଦ୍ରବଦନ ॥" (ମଧ୍ୟ ୫। ୧୩୫—୩୭) ଦେଖିବାର କଥା, ଶେଷ ଉଦ୍ଧୃତିରେ ଥିବା ଏକତ୍ରିର ଭାବ 'ଦୁଁହେ ଏକମୂର୍ତ୍ତି' କଳ୍ପନା ହେତୁ ଅଧିକ ଜୀବନ୍ତ ହୋଇ ପଡ଼ିଅଛି ।

ପୁରୁଷୋତ୍ତମ କ୍ଷେତ୍ର ନିକଟସ୍ଥ କମଳପୁର ଠାରେ ଶ୍ରୀଚୈତନ୍ୟ ମନ୍ଦିରର ଧ୍ୱଜା ଦର୍ଶନ କରିବାର ଚିତ୍ର ବୃନ୍ଦାବନ ଦାସ ଏହିପରି ଦେଇ-ଅଛନ୍ତି, "ପ୍ରାସାଦାଗ୍ରେ ନିବସତି ପୁରଃ ସ୍ମେରବକ୍ତ୍ରାରବିନ୍ଦେ । ମାମାଲୋକ୍ୟ ସ୍ମିତସୁବଦନୋ ବାଲଗୋପାଲ ମୂର୍ତ୍ତିଃ ॥ ପ୍ରଭୁ ବଲେ,—ଦେଖ ପ୍ରାସାଦେର ଅଗ୍ରମୂଲେ । ହାସେନ ଆମାରେ ଦେଖି' ଶ୍ରୀ ବାଲଗୋପାଲେ ॥" (ଅନ୍ତ୍ୟ ୨।୪୦୯—୧୦) ଏ କ୍ଷେତ୍ରରେ ଲୋଚନ ଦାସଙ୍କ ବର୍ଣ୍ଣନାଟି ଅଧିକ କଳ୍ପନା-ପ୍ରଧାନ । ଯଥା—"ପୁନଃ ତା ସଭାରେ ପ୍ରଭୁ କହନ୍ତେ ଉତ୍ତର । ଦେଉଳ-ଧ୍ୱଜାୟ ଦେଖ ବାଲକ ସୁନ୍ଦର ॥ ପ୍ରସନ୍ନ ବଦନେ ପୂର୍ଣ୍ଣାମୃତ ଯେନ ରୂପ ।

ଆଲୋଲ ଅଙ୍ଗୁଳି କରତଳେ ଅପରୂପ ॥ ଆମାରେ ଡାକରେ କରକମଲ-ଲାବଣ୍ୟ । ସ୍ୱାମୀକରେ ବେଣୁ ଶୋଭେ ନିଜଗତ ଧନ୍ୟ ॥" (ମଧ୍ୟଖଣ୍ଡ ପୃ. ୧୭୧) ଅପର ପକ୍ଷରେ କବିରାଜଙ୍କ ବର୍ଣ୍ଣନା ଅତ୍ୟନ୍ତ ସାଧାସିଧା । ଯଥା— "ଜଗନ୍ନାଥେର ଦେଉଳ ଦେଖି' ଆବିଷ୍ଟ ହୈଲା । ଦଣ୍ଡବତ୍ କରି ପ୍ରେମେ ନାଚିତେ ଲାଗିଲା ॥" (ମଧ୍ୟ ୫।୧୦୪) ଦେଖିବାର କଥା, ବାଳ-ଗୋପାଳଙ୍କର ହସିବା (ପ୍ରଥମ ଉଦ୍ଧୃତ) କିମ୍ବା ଡାକିବା (ଦ୍ୱିତୀୟ ଉଦ୍ଧୃତ)କୁ ପରିତ୍ୟାଗ କରି କବିରାଜ ଗୋସ୍ୱାମୀ ବର୍ଣ୍ଣନାକୁ ଅଧିକ ସ୍ୱାଭାବିକ କରି ନାହାନ୍ତି କି ?

ଏ ପର୍ଯ୍ୟନ୍ତ ଯାହା କିଛି କୁହାଗଲା ତାହା ସହିତ ଶ୍ରୀଚୈତନ୍ୟଙ୍କ ସାକ୍ଷାତ୍ ଜଗନ୍ନାଥ-ଦର୍ଶନ ବର୍ଣ୍ଣନା ତୁଳନା କଲେ ତାହାଙ୍କ ଭାବାବେଶର ନିବିଡ଼ତା ତଥା ତଜ୍ଜନ୍ୟ ସହିତ ଶ୍ରୀଜଗନ୍ନାଥ-ଶ୍ରୀଚୈତନ୍ୟଙ୍କ ଅଭେଦତ୍ୱ ପ୍ରତିଷ୍ଠା-ଅଭିଳାଷର ଆଧିକ୍ୟ ବେଶ୍ ଉପଲବ୍ଧି କରିହୁଏ । ବୃନ୍ଦାବନ ଦାସ ଏହାକୁ ଏହିପରି ବର୍ଣ୍ଣନା କରିଅଛନ୍ତି, "ହେନ କାଲେ ଗୌରଚନ୍ଦ୍ର ଜଗତଜୀବନ । ଦେଖିଲେନ ଜଗନ୍ନାଥ-ସୁଭଦ୍ରା-ସଙ୍କର୍ଷଣ ॥ ଦେଖିମାତ୍ର ପ୍ରଭୁ କରେ ପରମ ହୁଙ୍କାରେ । ଇଚ୍ଛା ହୈଲ ଜଗନ୍ନାଥ କୋଲେ କରିବାରେ ॥ ଲମ୍ଫ ଦେନ ବିଶ୍ୱମ୍ଭର ଆନନ୍ଦେ ବିହ୍ୱଲ । ଚତୁର୍ଦ୍ଦିଗେ ଛୁଟେ ସବ ନୟନେର ଜଲ ॥" (ଅନ୍ତ୍ୟ ୨।୪୨୭—୨୯) ଏହି ଦର୍ଶନ ବେଳେ ଶ୍ରୀଚୈତନ୍ୟ ଯେପରି ଅଚେତ ହୋଇ ପଡ଼ିଲେ, ତାହା ସାର୍ବ-ଭୌମଙ୍କ ମୁଖରେ ଏହିପରି ପ୍ରକାଶ ପାଇଅଛି, "ପ୍ରଭୁ ସେ ହଇୟା ଆଛେନ ଅଚେତନ ପ୍ରାୟ । ଦେଖି' ମାତ୍ର ଜଗନ୍ନାଥ-ନିଜ ପ୍ରିୟ କାୟ ॥" (ଅନ୍ତ୍ୟ ୨।୪୩୭) ସାର୍ବଭୌମଙ୍କ ଗୃହରେ ଚେତନା ଲାଭ କଲାପରେ ଏହି ଦର୍ଶନ-ଜନିତ ଦିବ୍ୟାନୁଭୂତିକୁ ଶ୍ରୀଚୈତନ୍ୟ ନିଜେ ଏହିପରି ବ୍ୟକ୍ତ କରିଅଛନ୍ତି, "ପ୍ରଭୁ କହେ— ଶୁନ ଆଜ ଆମାର ଆଖ୍ୟାନ । ଜଗନ୍ନାଥ ଆସି' ଦେଖିଲାଙ୍ ବିଦ୍ୟମାନ ॥ ଜଗନ୍ନାଥ ଦେଖି' ଚିତ୍ତେ ହଇଲ ଆମାର । ଧରି' ଆଣି' ବକ୍ଷ ମାଝେ ଥୁଇ ଆପନାର ॥ ଧରିତେ ଗେଲାମ ମାତ୍ର ଜଗନ୍ନାଥ ଆମି । ତବେ କି ହଇଲ ଶେଷେ ଆର ନାହି ଜାନି ॥" (ଅନ୍ତ୍ୟ ୨।୫୮୩—୮୫) ଯାହାଙ୍କୁ ଶ୍ରୀଚୈତନ୍ୟ ହସ୍ତ ପ୍ରସାରଣ ପୂର୍ବକ କୋଳାଗତ କରୁଥିଲେ, ସାର୍ବଭୌମଙ୍କ ମତରେ, ସେ ଜଗନ୍ନାଥ ହେଉଛନ୍ତି ଶ୍ରୀଚୈତନ୍ୟଙ୍କ

'ନିଜପ୍ରିୟ କାନ୍ତ' ମାନ । ଶ୍ରୀଚୈତନ୍ୟ ପେ ସ୍ୱୟଂ ଶ୍ରୀଜଗନ୍ନାଥ ତାହା ସାର୍ବଭୌମଙ୍କ ଭାଷାରେ ଏଇପରି ପ୍ରକଟିତ ହୋଇଅଛି, "ଦେଖ ପ୍ରଭୁ ଗୌରଚନ୍ଦ୍ର ଚତୁର୍ବ୍ୟୂହ-ରୂପ । ଆପନେ ବସିୟା ଆଛେ ସିଂହାସନେ ସୁଖେ ॥" (ଅନ୍ତ୍ୟ ୬।୪୩) ଶ୍ରୀଚୈତନ୍ୟ ଶ୍ରୀ ଜଗନ୍ନାଥଙ୍କ ଅଭେଦତ୍ୱ ବୃନ୍ଦାବନ ଦାସ ସାର୍ବ-ଭୌମଙ୍କ ମୁଖରେ ଅନ୍ୟତ୍ର ଏଇପରି ଚମତ୍କାର ଭାବେ ପ୍ରକାଶ କରିଅଛନ୍ତି, "ଆପନେଇ ଦାରୁବ୍ରହ୍ମ ରୂପେ ନୀଳାଚଲେ । ବସିୟା ଆଛହ ଭୋଜନେର କୁତୂହଲେ ॥ ଆପନ ପ୍ରସାଦ ଏର, ଆପନେ ଭୋଜନ । ଆପନେ ଆପନା ଦେଖି' କରହ କ୍ରନ୍ଦନ ॥ ଆପନେ ଆପନା ଦେଖି' ହଓ ମହାମତ୍ତ । ଏତେକେ କେ ବୁଝିବେ ପ୍ରଭୁ, ତୋମାର ମହତ୍ତ୍ୱ ॥" (ଅନ୍ତ୍ୟ. ୩।୧ ୩୫—୩୭)

ଲୋଚନ ଦାସ ଏଇ ଦର୍ଶନକୁ ଏମିତି କହିଅଛନ୍ତି, "ପୁନରପି ଜଗନ୍ନାଥ ମନ୍ଦିର ଦେଖିୟା । ପୁନଃ ପରଣାମ କରେ ଭୂମିତେ ପଡ଼ିୟା ॥ ଅଝର ଝରୟେ ଦୁଇ ନୟନେର ନୀର । ବିହ୍ୱଳ ହଇୟା କାନ୍ଦେ ଆରତି ଗମ୍ଭୀର ॥ ଏଇମତେ ଗୋରାଚାନ୍ଦେର ଆରତି ଦେଖିୟା । ଦେଖା ଦିଲ ଜଗନ୍ନାଥ ପାଣି ପସାରିୟା ॥ 'ଆଇସ ଆଇସ' ବଲି' ଡାକେ ନିକଟେ ରାୟ ॥ ଦେଖିୟା ବିହ୍ୱଳ ପ୍ରଭୁ ଭୂମିତେ ଲୋଟାୟ ॥" (ମଧ୍ୟଖଣ୍ଡ ପୃ-୧୭୧) ପ୍ରାସଙ୍ଗିକ ଭାବେ ଲୋଚନ ଦାସ ଅନ୍ୟ ଏକ ଦର୍ଶନର ଯେଉଁ ଚିତ୍ର ଦେଇଛନ୍ତି ତାହା ବର୍ତ୍ତମାନ ଅନୁଧ୍ୟାନ କରନ୍ତୁ । "ଗୌରାଙ୍ଗ-କାରଣେ ଜଗନ୍ନାଥ ହୈଲ୍ ଗୋରା । ଭାବମୟ ହୈଲ ଦେହ ପରମ ଚତୁରା ॥ ଗୌରମୟ ବଲରାମ ଆର ପାଣ୍ଡାଗଣ । ଭାବମୟ ଦେହ ସଭାର ହଇଲ ତଖନ ॥ ଗୌରାଙ୍ଗ ଭୁଲିୟା ପାଣ୍ଡା କରିଲ ଆରତି । ଅଚଲ ବ୍ରହ୍ମେର କାଛେ ସଚଲ ମୂରତି ॥ ଜଗନ୍ନାଥ ପ୍ରକାଶ ହଇଲ ନ୍ୟାସି ରୂପ । ହେନ ଅପରୂପ ନା ଦେଖିଲ କାରେ ବାପ ॥", (ମଧ୍ୟଖଣ୍ଡ, ପୃ-୧୭୩) ଅପର ପକ୍ଷରେ କବି କର୍ଣ୍ଣପୂରଙ୍କ ପ୍ରଦତ୍ତ ଚିତ୍ରଟି ଗୋଟିଏ ଦୃଷ୍ଟିରୁ ଏକାନ୍ତ ଚମତ୍କାର ଓ ମୁଗ୍‌ଧକର । ସେ ଲେଖିଛନ୍ତି, "ଗୋଟିଏ ପାର୍ଶ୍ୱରେ ଦାରୁବ୍ରହ୍ମ ଓ ଅପର ପାର୍ଶ୍ୱରେ ନରବ୍ରହ୍ମ ପରସ୍ପର ପରସ୍ପରଙ୍କୁ ମଗ୍ନ ଓ ଲୀନ ହୋଇ ଅନୁରାଗ-ରଞ୍ଜିତ ଓ ଅପଲକ ନୟନରେ ରହି ଦଣ୍ଡାୟମାନ ହୋଇ ରହିଗଲେ । ଏହି ଉଭୟ ଜଗତି ପତିଙ୍କର ସର୍ବାଙ୍ଗ

ମଧ୍ୟ ନଷ୍ଟନ ହୋଇଗଲ । ଦାରୁବ୍ରହ୍ମରେ ନରବ୍ରହ୍ମ ଓ ନରବ୍ରହ୍ମରେ ଦାରୁବ୍ରହ୍ମ ଲୀନ ହୋଇ ଯାଇଅଛନ୍ତି, ତାହା ବୁଝି ହେଲନାହିଁ ।"

ନାଟକ, ୭ମ ଅଙ୍କ ୨୦ ଶ୍ଲୋକ

ସାର୍ବଭୌମଙ୍କ ମୁଖରେ ଶ୍ରୀଚୈତନ୍ୟଙ୍କୁ 'ଜଗନ୍ନାଥ-ନିଜ ପ୍ରିୟ କାୟ' କିମ୍ବା "'ଗୌରଚନ୍ଦ୍ର ଚତୁର୍ବ୍ୟୂହ ରୂପେ, ଆପନେ ବସିଛ୍ନା ଆଛେ ସିଂହାସନେ ସୁଖେ' କିମ୍ବା 'ଆପନେଇ ଦାରୁବ୍ରହ୍ମ ରୂପେ ମିଲାଚଲେ' କହିବା କିମ୍ବା ସ୍ୱୟଂ ଶ୍ରୀଚୈତନ୍ୟଙ୍କ ମୁଖରେ 'ଜଗନ୍ନାଥ ଆମି' ବୋଲି ପ୍ରକାଶ କରିବା କିମ୍ବା ଲୋଚନ ଦାସଙ୍କ ଭାଷାରେ 'ଜଗନ୍ନାଥ ପ୍ରକାଶ ହଇଲ ନ୍ୟାସି ରୂପେ'—ଆମର ପୂର୍ବ ଉଦ୍ଧୃତିଗୁଡ଼ିକରେ ଥିବା ଏଇ ଭାବ ଶ୍ରୀଚୈତନ୍ୟ-ଶ୍ରୀଜଗନ୍ନାଥଙ୍କ ଅଭେଦତ୍ୱ ପ୍ରତିଷ୍ଠା ପାଇଁ ଉଦ୍ଦିଷ୍ଟ ହୋଇଥିଲେ ହେଁ ରତ୍ନ ସିଂହାସନୋପରି ଉପବିଷ୍ଟ ଏ ଦେବତା ଯେ ପ୍ରକୃତରେ କିଏ (ଶ୍ରୀଚୈତନ୍ୟ ନା ଶ୍ରୀଜଗନ୍ନାଥ) ସେ ବିଷୟରେ ସ୍ପଷ୍ଟ ଧାରଣା ଏଇ ଉଦ୍ଧୃତିରୁ କରିହୁଏ ନାହିଁ । ରାଜା ପ୍ରତାପରୁଦ୍ରଙ୍କୁ କେନ୍ଦ୍ର କରି ଏଇ ଭାବ କପରି ପ୍ରକାଶ ପାଇଛି ତା'ର ଆମେ ବର୍ତ୍ତମାନ ଉପ-ସ୍ଥାପନା କରୁଅଛୁଁ ।

କବିରାଜ ଗୋସ୍ୱାମୀ କହିଛନ୍ତି, "ଏକ ଦିନ କରେନ ପ୍ରଭୁ ଜଗନ୍ନାଥ ଦରଶନ । ଜଗନ୍ନାଥେ ଦେଖେ ସାକ୍ଷାତ୍ ବ୍ରଜେନ୍ଦ୍ର ନନ୍ଦନ ॥" (ଅନ୍ତ୍ୟ, ୧୪।୭) ଏହାର ଅନ୍ୟ ଏକ ଉଦାହରଣ ଦେଖନ୍ତୁ, "ଏକ ଦିନ ପ୍ରଭୁ ଗେଲା ଜଗନ୍ନାଥ-ଦରଶନେ । ସିଂହଦ୍ୱାରେ ଦଲଇ ଆସି' କରିଲ ବନ୍ଦନେ ॥ ତାରେ ବଲେ—କୋଥା କୃଷ୍ଣ, ମୋର ପ୍ରାଣନାଥ ? ମୋରେ କୃଷ୍ଣ ଦେଖାଓ' ବଲି ଧରେ ତାର ହାତ ॥ ସେହ କହେ—ଇଁହାହୟ ବ୍ରଜେନ୍ଦ୍ର ନନ୍ଦନ । ଆଇସ ତୁମି ମୋର ସଙ୍ଗେ, କରହ ଦରଶନ ॥ ତୁମି ମୋର ସଖା ଦେଖାହ, କାହାଁ ପ୍ରାଣନାଥ ? ଏତ ବଲି' ଜଗମୋହନ ଗେଲା ଧରି' ତାର ହାତ ॥ ସେହ ବଲେ,—ଏଇ ଦେଖ ଶ୍ରୀପୁରୁଷୋତ୍ତମ । ନେତ୍ର ଭରିୟା ତୁମି କରହ ଦରଶନ ॥ ଗରୁଡ଼େର ପାଛେ ରହି' କରେନ ଦରଶନ । ଦେଖେନ,—ଜଗନ୍ନାଥ ହୟ ମୁରଲୀ ବଦନ ॥" (ଅନ୍ତ୍ୟ. ୧୪।୮୦—୮୫) ଶ୍ରୀଜଗନ୍ନାଥ ଏ ଦେଶର ଧର୍ମ-

ପରମ୍ପରାରେ ଶ୍ରୀକୃଷ୍ଣଙ୍କ ଅବତାର ଥିବା ହେତୁ ଏଠାରେ ବର୍ଣ୍ଣିତ ତାହାଙ୍କର ମୁରଲୀ ବାଦନ ରୂପ ଆଦୌ ଅସ୍ୱାଭାବିକ ନୁହେଁ । କିନ୍ତୁ ଗୌଡ଼ୀୟ ଭକ୍ତ ଗଣରେ ଶ୍ରୀଜଗନ୍ନାଥଙ୍କର କପରି ଏକ ସମ୍ପୂର୍ଣ୍ଣ ଭିନ୍ନ ଚିନ୍ତାଧାରା ଘଟିଅଛି, ତାହାର ପରିଚୟ ଦେଉଛନ୍ତି ।

ଶ୍ରୀଚୈତନ୍ୟଙ୍କ ଈଶ୍ୱରତ୍ୱ ସମ୍ପର୍କରେ ପ୍ରତାପରୁଦ୍ରଙ୍କର ଯେଉଁ ସନ୍ଦେହ ଜାତ ହୋଇଥିଲା ତାହା ଜଗନ୍ନାଥଙ୍କ ମାଧ୍ୟମରେ ଦୂର ହୋଇ ଯାଇଥିଲା । ସ୍ୱପ୍ନରେ ମହାରାଜା ଦେଖିଲେ ଯେ ସ୍ୱର୍ଣ୍ଣ ସିଂହାସନରେ ଭଗବାନ ବିରାଜମାନ କରୁଛନ୍ତି ସ୍ୱୟଂ ଶ୍ରୀଚୈତନ୍ୟ । ବୃନ୍ଦାବନ ଦାସ ଏହାକୁ ଏଇପରି ବର୍ଣ୍ଣନା କରିଅଛନ୍ତି, "ସେଇ କ୍ଷଣେ ଦେଖେ ରାଜା ସେଇ ସିଂହାସନେ । ଚୈତନ୍ୟ ଗୋସାଇଁ ବସି' ଆଛେନ ଆପନେ ॥" (ଚୈ. ଭାଗବତ ଅନ୍ତ୍ୟ ୫।୧୨୭) ଶ୍ରୀଚୈତନ୍ୟ ମଧ୍ୟ ରାଜାଙ୍କୁ କହୁ ଅଛନ୍ତି, "ତୁମି ଯେ ଆମାରେ ଘୃଣା କରି' ଗେଲା ମନେ । ତବେ ତୁମି ଆମାରେ ସ୍ପର୍ଶିବେ କି କାରଣେ ॥ ଏଇମତେ ପ୍ରତାପରୁଦ୍ରେର କୃପା କରି । ସିଂହାସନେ ବସି' ହାସେ ଗୌରାଙ୍ଗ-ଶ୍ରୀହରି ॥" (ଅନ୍ତ୍ୟ. ୫।୧୨୯—୮୨) ପ୍ରତାପରୁଦ୍ରଙ୍କ ଅନୁତାପରେ ମଧ୍ୟ ଆମେ ଦେଖୁଁ, "ଆପନେ ହୁଁ ଜଗନ୍ନାଥ ଚୈତନ୍ୟ ଗୋସାଇଁ । ରାଜା ଜାନିଲେନ, ଇଥେ କିଛୁ ଭେଦ ନାଇ ॥ (ଅନ୍ତ୍ୟ ୫।୧୮୫) ସିଂହାସନରେ ଉଭୟ ଚୈତନ୍ୟ ଓ ଜଗନ୍ନାଥ, କି କେବଳ ଚୈତନ୍ୟ ଅବସ୍ଥାନ କରନ୍ତି ତାହା ପ୍ରଥମ ଦୃଷ୍ଟିରୁ ଏ ନାହିଁ । କିନ୍ତୁ ଲୋଚନ ଦାସଙ୍କ ନିମ୍ନଲିଖିତ ଉକ୍ତିରେ ମନୋହର ପ୍ରକୃତି ଅତିଶୟ ସ୍ପଷ୍ଟ ହୋଇ ଯାଇଅଛି । ଯଥା—"ଏକଦିନ ଗେଲା ଜଗନ୍ନାଥ ଦେଖିବାରେ । ଜଗନ୍ନାଥ ନା ଦେଖୟେ—ଦେଖେ ନ୍ୟାସିବରେ ॥ କି ହେ ବଲି' ମନେ ଗୁଣେ ବସି ତ ବିସ୍ମୟ । ପଣ୍ଡିତେରେ ପୁଛେ ରାଜା—କି ଦେଖହ ତୁମି ॥ ପଣ୍ଡିତ କହୟେ—ଦେଖ ଜଗନ୍ନାଥ ଦେଖି' । ରାଜା କହେ—ତୋ ହସିରେ ବ୍ୟର୍ଥ ଆମି ରାଖି' ॥ ଜଗନ୍ନାଥ ସ୍ଥାନେ ନ୍ୟାସୀ ବସି ଅଛେ ହେଥା । ମୋର ଦଣ୍ଡଭୟେ କିଛୁ ନା ଦେଖିଯେ ବୋଲ ॥ ଆଁଖି ଆଛିନୁ ଯେନ ହେନ ନହେ କଭୁ । ନହେ ବା କି ଦେଖ, ସତ୍ୟ କରି' କହ ତୁମ୍ଭ ॥ ଏ ବୋଲ ଶୁନିଞା ପଣ୍ଡିତ ବୋଲେ ପୁନର୍ବାର । ଜଗନ୍ନାଥ ବହି ମୋଇଁ ନାହି ଦେଖି' ଆର' ॥ ତବେ ତ' ପ୍ରତାପରୁଦ୍ର ଗୁଣେ ମନେ

ମନେ । ସନ୍ନ୍ୟାସୀ କେ କେନେ ଦେଖି' ଆମାର ନୟନେ ।।' (ଚୈ: ମଙ୍ଗଲ: ଶେଷଖଣ୍ଡ ପୃ ୧୯୬) ଦୁଇ ଜଣଙ୍କ ଦେଖାରେ ନ୍ୟାସୀବର ସନ୍ୟାସୀ ଶ୍ରୀ ଚୈତନ୍ୟଙ୍କ ଅବସ୍ଥାନ ଯଦି ସତ୍ୟ, ତାହାହେଲେ ରତ୍ନ ସିଂହାସନ ଉପରେ ଶ୍ରୀ ଜଗନ୍ନାଥଙ୍କ ଅବସ୍ଥାନର ପ୍ରଶ୍ନ ସଂପୂର୍ଣ୍ଣ ଅପ୍ରଧାନ, ଅବାନ୍ତର ମଧ୍ୟ । ଚୈତନ୍ୟ-ଜଗନ୍ନାଥଙ୍କ ଅଭେଦତ୍ତ୍ୱ ପ୍ରତିପାଦନ ଅପେକ୍ଷା ରତ୍ନସିଂହାସନର ଏକମାତ୍ର ଈଶ୍ୱରୀ ରୂପେ ଶ୍ରୀ ଚୈତନ୍ୟ, ଗୌଡ଼ୀୟ ଭକ୍ତର ବିଶ୍ୱାସରେ, ସଂପୃକ୍ତ ହେବାର ଏହା ହେଉଛି ଏକ ନିର୍ଭରଯୋଗ୍ୟ ପ୍ରମାଣ ।

ଏପରି ଏକ ବିଶ୍ୱାସର ପରିଣତି ଯାହା ହେଲା; ତାହା ନିମ୍ନ ଆଲୋଚନାରେ ଦେଖାଇ ଦିଆଯାଉଅଛି ।

ଶ୍ରୀକ୍ଷେତ୍ର-ଦର୍ଶନର ଏକ ପାରମ୍ପରିକ ପ୍ରାଥମିକ ପ୍ରଥା ହେଉଛି ମୁଣ୍ଡନ ପରେ ସମୁଦ୍ର-ସ୍ନାନ ଓ ଶ୍ରୀ ଜଗନ୍ନାଥ ଦର୍ଶନ । ଗୌଡ଼ୀୟ ବୈଷ୍ଣବ—ବିଶ୍ୱାସରେ ଶ୍ରୀ ଚୈତନ୍ୟ ଶ୍ରୀ କ୍ଷେତ୍ରରେ ସର୍ବଶ୍ରେଷ୍ଠ ଦେବତା ରୂପେ ଗୃହୀତ ହେବା ଫଳରେ ଗୌଡ଼ୀୟ ଯାତ୍ରୀମାନଙ୍କ ପକ୍ଷରେ ଶ୍ରୀ ଜଗନ୍ନାଥଙ୍କ ପ୍ରଥମ ଦର୍ଶନର ଆଉ ଆବଶ୍ୟକତା ନ ରହିବା ଏକାନ୍ତ ସ୍ୱାଭାବିକ । ଲୋଚନ ଦାସଙ୍କ ଚୈତନ୍ୟ ମଙ୍ଗଳର ଶେଷାଂଶରେ ବାଣୀଷଣ ଓ ଜନୈକ ଦରିଦ୍ର ବ୍ରାହ୍ମଣର କଥୋପକଥନରେ ଆମର ପୂର୍ବୋକ୍ତ ସିଦ୍ଧାନ୍ତଟି ଅତି ସୁନ୍ଦର ଭାବେ ରୂପାୟିତ ହୋଇଅଛି । ଏଇ ଦରିଦ୍ର ବ୍ରାହ୍ମଣ ବାଣୀଷକୁ ପ୍ରଶ୍ନ କରନ୍ତି, "ଜଗନ୍ନାଥ ଦେବ ତୁମି ନା ଦେଖିଲେ କେନେ ?" ଏହାର ଉତ୍ତରରେ ବାଣୀଷଣ ମୁଖରୁ ଆମେ ଶୁଣୁ, "ଜଗନ୍ନାଥ ଦେଖ ଏକ ସାକ୍ଷାତ୍ ନୟନ ।' ସେମାନଙ୍କ ନୟନରେ ସାକ୍ଷାତ୍‌ରେ ଥିଲେ କାନୁ ସଚୀ ନନ୍ଦନ ଶ୍ରୀ ଚୈତନ୍ୟ; ରତ୍ନ ସିଂହାସନୋପବିଷ୍ଟ ଯୁଗ-ପୁରୁଷ ଧରି ସଂପୃକ୍ତ ଶ୍ରୀ ଜଗନ୍ନାଥ ନୁହନ୍ତି । ଏହାର ଅନ୍ୟ କେତେକ ଦୃଷ୍ଟାନ୍ତ ଦେଖନ୍ତୁ । କବି କର୍ଣ୍ଣପୁର ନିଜ ନାଟକରେ ପରମାନନ୍ଦ ପୁରୀଙ୍କ ମୁଖରେ ଏଇପରି କୁହାଇଛନ୍ତି, "ହେ ପ୍ରଭୁ ଜଗନ୍ନାଥ, କ୍ଷମା କରିବେ । ମୁଁ ଆପଣଙ୍କ ଦର୍ଶନକୁ ନ ଯାଇ (ଶ୍ରୀ ଚୈତନ୍ୟଙ୍କ ଦର୍ଶନ ପାଇଁ) ଯେପରି ଆଗକୁ ପାଦ ପକାଉଛି ସେଥିରେ ମୋ ମନର ପ୍ରବଳ ଉତ୍କଣ୍ଠାକୁ ଆପଣ ଜାଣନ୍ତି, ଯେ ହେତୁ ଆପଣ ସର୍ବଜ୍ଞ ।' (ନାଟକ ଷଷ୍ଠ ଅଙ୍କ ୪ର୍ଥ ଶ୍ଳୋକ ପରେ କଥିତ) ଏଇପରି ବଙ୍ଗଦେଶୀୟ ଯାତ୍ରୀଙ୍କର ଅନୁରୂପ ଆଚରଣରେ

ସ୍ୱୟଂ ମହାରାଜ ପ୍ରତାପରୁଦ୍ର ମଧ୍ୟ ଅତିଶୟ ବିସ୍ମିତ ହୋଇ ସାର୍ବଭୌମଙ୍କୁ ପଚାରିଥିଲେ, "ଏଇ ଲୋକମାନେ ଜଗନ୍ନାଥ ମନ୍ଦିରକୁ ପଛରେ ପକାଇ ଶ୍ରୀଚୈତନ୍ୟଙ୍କ ବାସସ୍ଥଳୀ ଆଡ଼କୁ କାହିଁକି ଯାଉଛନ୍ତି ? ଏହାର ଉତ୍ତରରେ ସାର୍ବଭୌମ କହିଲେ, "ସ୍ୱାଭାବିକ ପ୍ରେମହର ଏହାହିଁ ହେଉଛି ପ୍ରଭାବ ।" କିନ୍ତୁ କୃଷ୍ଣଦାସ କବିରାଜ ଏଇ ଘଟଣାକୁ ଏଇପରି ଉପସ୍ଥାପନ କରିଅଛନ୍ତି, "ରାଜା କହେ—ସବେ ଜଗନ୍ନାଥ ନା ଦେଖିୟା । ଚୈତନ୍ୟେର ବାସା-ଗୃହେ ଚଲିଲ ଧାଞା ॥ ଭଟ୍ଟ କହେ—ଏଇତ ସ୍ୱାଭାବିକ ପ୍ରେମ-ରୀତ । ମହାପ୍ରଭୁ ମିଲିବାରେ ଉତ୍କଣ୍ଠିତ ଚିତ୍ତ ॥ ଆଗେ ତାଁହାରେ ମିଲି ସବେ ତାଁହାରେ ସଙ୍ଗେ ଲଞା ତାଁର ସଙ୍ଗେ ଜଗନ୍ନାଥ ଦେଖିବେନ ଗିୟା ॥' (ଚୈ: ଚ: ମଧ୍ୟ ୧୧।୧୦୫—୭) ଦେଖିବାର କଥା, ଶ୍ରୀ ଚୈତନ୍ୟଙ୍କୁ ସଙ୍ଗରେ ଧରି ଜଗନ୍ନାଥ-ଦର୍ଶନ କରିବାରୁ କୈଫିୟତ ହେଉଛି କବିରାଜ ମହାଶୟଙ୍କ ମୂଳ ବିଷୟ ସହିତ ଅଧିକ ସଂଯୋଜନ; ଏହାଦ୍ୱାରା ମୂଳରେ ଥିବା ଜଗନ୍ନାଥ-ଉପେକ୍ଷାରେ ଭାବଟି ଲୁକ୍କାୟିତ ହୋଇଅଛି । କବି କର୍ଣ୍ଣପୂର ପରମାନନ୍ଦ ପୁରୀଙ୍କ ମୁଖରେ ଯାହା କୁହାଇଛନ୍ତି; କବିରାଜ ଗୋସ୍ୱାମୀ ଠିକ୍ ସେହି କଥାକୁ ଅତି ସ୍ୱାଭାବିକ ଭାବେ ରାୟ ରାମାନନ୍ଦଙ୍କ କ୍ରିୟା କଳାପରେ ଫୁଟାଇ ଅଛନ୍ତି । ଯଥା—"ପ୍ରଭୁ କହେ, ରାୟ ତୁମି କି କାର୍ଯ୍ୟ କରିଲେ ? ଈଶ୍ୱରେ ନା ଦେଖି' କେନେ ଆଗେ, ଏଥା ଆଇଲେ ? ରାୟ କହେ, ଚରଣ – ରଥ, ହୃଦୟ-ସାରଥି । ଯାହାଁ ଲଞା ଯାୟ, ତାହାଁ ଯାୟ ଜୀବ-ରଥୀ ॥ ଆମି କି କରିବ, ମନ ଇହାଁ ଲଞା ଆଇଲ । ଜଗନ୍ନାଥ ଦରଶନେ ବିଚାର ନ କୈଲ ॥ ପ୍ରଭୁ କହେ,—ଶୀଘ୍ର ଗିୟା କର ଦରଶନ । ଐଛେ ଘର ଯାଇ' କର କୁଟୁମ୍ବ ମିଲନ ॥" (ମଧ୍ୟ ୧୧।୩୭—୩୯) ଶ୍ରୀ ଚୈତନ୍ୟଙ୍କ ପ୍ରଥମ ଓ ଶେଷ ଉକ୍ତି ଭିତରେ କବିରାଜ ଗୋସ୍ୱାମୀଙ୍କ ପ୍ରୌଢ଼ ଓ ମାର୍ଜିତ ବିଚାରବୋଧ ଥିଲେ ହେଁ ରାମାନନ୍ଦଙ୍କ ଆତ୍ମ କଥନ (ଜଗନ୍ନାଥ ଦରଶନେ ବିଚାର ନା କୈଲ) ଭିତରେ ତଦାନୀନ୍ତନ ଗୌଡ଼ୀୟ ଭକ୍ତ ଚିତ୍ତର ଯେଉଁ ଗଭୀର ବିଶ୍ୱାସ ଥିଲା, ତାହା ଆଉ ଅଛପା ହୋଇ ରହିପାରି ନାହିଁ ।

ଶ୍ରୀ ଜଗନ୍ନାଥ ଓ ଶ୍ରୀ ଚୈତନ୍ୟଙ୍କ ଭଗବତ୍ତାର ଏକ ତୁଳନାତ୍ମକ ଚିତ୍ର ମାଧ୍ୟମରେ ପୂର୍ବୋକ୍ତ ଗଭୀର ବିଶ୍ୱାସ ଯେଉଁ ଅକ୍ରମ ପର୍ଯ୍ୟାୟରେ

ଉପନୀତ ହୋଇଥିଲ, ତାହାର ପରିଚୟ ବର୍ତ୍ତମାନ ଦେଖନ୍ତୁ । ରେମୁଣା ନିକଟସ୍ଥ ଜନୈକ ଘଟପାଳ ଯାତ୍ରୀ ଶିବାନନ୍ଦଙ୍କ ଠାରୁ ବର୍ଦ୍ଧିତ 'ଘାଟ କର' ନ ପାଇବାରୁ ତାଙ୍କୁ ବନ୍ଦୀ ଭାବରେ ଅଟକାଇ ରଖିଥିଲ । ଗଳ୍ପିରେ ଏ ଉଭୟଙ୍କ ମଧ୍ୟରେ ଏଇପରି କଥାବାର୍ତ୍ତା ହୋଇଥିବାର ଆମେ ଶୁଣୁ । "ପୁଣି ସେ (ଘଟପାଳ) ପଚାରିଲ—ତୁମେ କାହାର ଲୋକ ? ସେ (ଶିବାନନ୍ଦ) ଉତ୍ତର ଦେଲେ—ଶ୍ରୀକୃଷ୍ଣ ଚୈତନ୍ୟଙ୍କର । ତତ୍ପରେ ସେ (ଘଟପାଳ) କହିଲ—ତମେ ଚୈତନ୍ୟଙ୍କର ଲୋକ, ଆଉ ମୁଁ ଜଗନ୍ନାଥଙ୍କର । ଜଗନ୍ନାଥ ଓ ଚୈତନ୍ୟଙ୍କ ମଧ୍ୟରେ କିଏ ବଡ଼ ? (ଜଗନ୍ନାଥ—ଚୈତନ୍ୟୟୋଃ କୋ ମହାନ୍) ସେ (ଶିବାନନ୍ଦ) କହିଲେ— ମୋ ମତରେ କୃଷ୍ଣ ଚୈତନ୍ୟ ହିଁ ବଡ଼ ? (ମମ ତୁ କୃଷ୍ଣ ଚୈତନ୍ୟ ଏବ ମହାନ) । ଚୈ. ଚ. ନାଟକ ୧୦ମ ଅଙ୍କ ଗନ୍ଧର୍ବ ମୁଖରେ ଅଭିବ୍ୟକ୍ତ) ଶ୍ରୀ ଜଗନ୍ନାଥଙ୍କ ଅପେକ୍ଷା ଶ୍ରୀ ଚୈତନ୍ୟଙ୍କ ପ୍ରତି ତଦାନୀନ୍ତନ ଗୌଡ଼ୀୟ ଭକ୍ତ ଚିତ୍ତର କିପରି ଗଭୀର ସ୍ୱାଭାବିକ ଅନୁରକ୍ତି ଓ ଆକର୍ଷଣ ଥିଲ ଓ ଏହାର ପରିଣତି ସ୍ୱରୂପ ଏମାନେ ଶ୍ରୀ ଚୈତନ୍ୟଙ୍କୁ ଶ୍ରୀ ଜଗନ୍ନାଥଙ୍କ ଅପେକ୍ଷା କିପରି ଉଚ୍ଚାସନ ଅର୍ପଣ କରିଥିଲେ ତାହା ଅନୁଭବ କରିବା ଆଦୌ କଷ୍ଟକର ନୁହେଁ ।

ଶ୍ରୀ ଚୈତନ୍ୟଙ୍କ ଭଗବତ୍ତାର ପ୍ରତିଷ୍ଠା ତଥା ପ୍ରତିପାଦନ ଓ ଗୌଡ଼ୀୟ ଭକ୍ତପ୍ରାଣରେ ତାହାର ସ୍ଥାୟୀକରଣ ପାଇଁ ପ୍ରସିଦ୍ଧ ଗୁରୁଜନ-ଚରିତ-ଗ୍ରନ୍ଥ ଲେଖକ ଯେଉଁ ସୁବ୍ୟବସ୍ଥିତ ଯୋଜନା ବା କୌଶଳର ଆଶ୍ରୟ ନେଇଥିଲେ, ଆମର ପୂର୍ବପ୍ରଦତ୍ତ ସମସ୍ତ ଉଦ୍ଧୃତିର ବିଷୟ ବସ୍ତୁ ନିମ୍ନ ନ୍ୟାୟରେ ଅଧ୍ୟୟନ ଓ ତନ୍ନିହିତ ଭାବଧାରାକୁ ଗଭୀରଭାବେ ଅନୁଧ୍ୟାନ କଲେ ସେଇ ଯୋଜନାର ବିବିଧ ରୂପ ଭିତରୁ ଗୋଟିକର ସ୍ପଷ୍ଟ ଚିତ୍ର ଆମେ ଉପଲବ୍ଧି ନକରି ରହିପାରିବୁ ନାହିଁ । ପ୍ରଥମତଃ ରେମୁଣା-ଗୋପୀନାଥଙ୍କ ଠାରୁ କମଳପୁରରେ ଦେଉଳ ଧ୍ୱଜା ଦର୍ଶନ ପର୍ଯ୍ୟନ୍ତ ଵାଭିନ୍ନ ଦେବତାଙ୍କୁ ଶ୍ରୀ ଚୈତନ୍ୟଙ୍କ ପ୍ରାଚୀନ ମୂର୍ତ୍ତି କହିବା ଭିତରେ ଯେଉଁ ଭଗବଦ୍ ବିଶ୍ୱାସର ଅସ୍ପୁମାରମ୍ଭ ହୋଇଥିଲ, ତାହା ସାକ୍ଷାତ୍ ଦର୍ଶନ ବେଳେ ଶ୍ରୀ ଜଗନ୍ନାଥ-ଶ୍ରୀ ଚୈତନ୍ୟଙ୍କ ବାସ୍ତବ ଅଭେଦତ୍ୱରେ ରୂପାନ୍ତରିତ ହୋଇ ଯାଇଥିଲ । ଦ୍ୱିତୀୟ ପର୍ଯ୍ୟାୟରେ ଭକ୍ତର ବିଶ୍ୱାସରେ

ଆମେ ଶ୍ରୀ ଚୈତନ୍ୟଙ୍କୁ ଦେଖୁଁ ଖୋଦ ରତ୍ନ ସିଂହାସନ ଉପରେ । ତୃତୀୟ ପର୍ଯ୍ୟାୟରେ ଶ୍ରୀ ଜଗନ୍ନାଥ ହେଲେ ଅସ୍ୱୀକୃତ—ସିଂହାସନରେ ସମ୍ପୃକ୍ତ ତଥା ସମ୍ମାନିତ ହେଲେ କେବଳ ଶ୍ରୀ ଚୈତନ୍ୟ ମାତ୍ର । ଚତୁର୍ଥ ପର୍ଯ୍ୟାୟରେ ଆମେ ଶ୍ରୀ ଚୈତନ୍ୟଙ୍କୁ ହିଁ ଶ୍ରୀ କ୍ଷେତ୍ରର ଏକମାତ୍ର ସର୍ବମାନ୍ୟ ମହାପ୍ରଭୁ ରୂପେ ଗୃହୀତ ହୋଇଥିବାର ଦେଖୁଁ—ସେ ହେଲେ ଭକ୍ତର ବିଶ୍ୱାସରେ ଶ୍ରୀ ଜଗନ୍ନାଥଙ୍କ ଅପେକ୍ଷା ଶ୍ରେଷ୍ଠ ଦେବତା ।"

ନବଦ୍ୱୀପର ନିମାଇ ପଣ୍ଡିତଙ୍କ ଏପରି ଶ୍ରୀ ଜଗନ୍ନାଥରେ ରୂପାନ୍ତରିତ ହେବାର ରହସ୍ୟ ଅନୁଧ୍ୟାନ କଲେ ସେଥିରେ ଦୁଇଟି ବିଷୟ ସ୍ପଷ୍ଟ ବାରି ହୋଇ ପଡ଼େ । ପ୍ରଥମ, ଦେବ-ଦର୍ଶନରେ ଶ୍ରୀ ଚୈତନ୍ୟଙ୍କ ଭଗବତ୍ ତନ୍ମୟତା । ପୁନଶ୍ଚ, ଶ୍ରୀ ଜଗନ୍ନାଥଙ୍କ ଦର୍ଶନରେ ଏ ତନ୍ମୟତା ମଧ୍ୟ ସମୟ ସମୟେ ଏକ ଦିବ୍ୟ ଉନ୍ମାଦନାରେ ପରିଣତ ହୋଇ ଯାଇଥିଲା । ନବଦ୍ୱୀପରେ କିମ୍ବା ଛଅ ବର୍ଷର ତୀର୍ଥଯାତ୍ରା-କାଳୀନ ଦେବ-ଦର୍ଶନରେ ଶ୍ରୀ ଚୈତନ୍ୟଙ୍କ ଏପରି ଅନୁରୂପ ଦିବ୍ୟ ଉନ୍ମାଦନାର ରହସ୍ୟ ଆମେ ସାଧାରଣତଃ ଅତି କମ ସ୍ଥଳରେ ଦେଖିବାକୁ ପାଉଁ । ଏହାର ଅସଲ କାରଣ ହେଉଛି ଯେ ଶ୍ରୀ ଚୈତନ୍ୟଙ୍କ ଏଇ ନିବିଡ଼ ଭାବାବେଗର ପଶ୍ଚାତ୍‌ରେ ଥିଲେ ସ୍ୱୟଂ ଶ୍ରୀ ଜଗନ୍ନାଥ । ଏହାହିଁ ହେଉଛି ଆମ ପୂର୍ବ ଉଦ୍ଧୃତିଗୁଡ଼ିକ ଭିତରେ ଥିବା ଭାବଧାରାର ବାସ୍ତବ ରହସ୍ୟ ବା ସ୍ୱାଭାବିକ ଭିତ୍ତିଭୂମି । ଦ୍ୱିତୀୟ ଏଇ ଭିତ୍ତି ଉପରେ କିନ୍ତୁ ଦଣ୍ଡାୟମାନ ହୋଇଛି ଭକ୍ତର ଅଖଣ୍ଡ ବିଶ୍ୱାସ । ଏ ବିଶ୍ୱାସରେ ଶ୍ରୀ ଚୈତନ୍ୟଙ୍କ ରତ୍ନ ସିଂହାସନରେ ଅବସ୍ଥାନ କିମ୍ବା ଶ୍ରୀକ୍ଷେତ୍ରରେ ଏକମାତ୍ର ସର୍ବମାନ୍ୟ ଶ୍ରେଷ୍ଠ ଦେବତା ରୂପେ ତାଙ୍କର ସମ୍ମାନ ଲାଭ ଯେ ହୋଇଅଛି ତାହା ନୁହେଁ, ସେ ନିଜେ ମଧ୍ୟ ନିଜ ତତ୍ତ୍ୱକୁ ଏଇପରି ଘୋଷଣା କରିଅଛନ୍ତି, "ମୁଞି କୃଷ୍ଣ, ମୁଞି ରାମ, ମୁଞି, ନାରାୟଣ । ମୁଞି ମତ୍ସ୍ୟ, ମୁଞି କୂର୍ମ, ବରାହ, ବାମନ ॥ ମୁଞି ବୁଦ୍ଧ, କଲ୍‌କି, ହଂସ, ମୁଞି ହଲଧର । ମୁଞି ପୃଶ୍ନିଗର୍ଭ, ହୟଗ୍ରୀବ, ମହେଶ୍ୱର ॥ ମୁଞ ନୀଳାଚଳ ଚନ୍ଦ୍ର, କପିଳ, ନୃସିଂହ । ଦୃଶ୍ୟାଦୃଶ୍ୟ ସର୍ବ ମୋର ଚରଣେର ଭୃଙ୍ଗ ॥" (ଚୈ ଭାଗବତ, ଅନ୍ତ୍ୟ, ୧।୨୫୧—୫୩)

ଚରିତ ଗ୍ରନ୍ଥଗୁଡ଼ିକର ଲେଖକ, ସେମାନଙ୍କ ପୁସ୍ତକ ନିହିତ ଅନ୍ୟ ଭକ୍ତ-ଚରିତ୍ର କିମ୍ବା ଶ୍ରୀଚୈତନ୍ୟଙ୍କ ମୁଖରେ ଶଚୀ-ନନ୍ଦନ ଶ୍ରୀକୃଷ୍ଣ

ଚୈତନ୍ୟ ନୀଳାଚଳଚନ୍ଦ୍ର ଶ୍ରୀ ଜଗନ୍ନାଥ ରୂପେ ବିଘୋଷିତ ହେବା ସମ୍ପୂର୍ଣ୍ଣ ଧର୍ମ-ବିଶ୍ୱାସ ପ୍ରତି ଆମର ସମ୍ମାନ ଥିବା ହେତୁ ଗୌଡ଼ୀୟ ଭକ୍ତଙ୍କ ଏପରି ବିଶ୍ୱାସ ଉପରେ ଆମର କିଛି ମାତ୍ର କହିବାର ଅଧିକାର ନାହିଁ । କିନ୍ତୁ ଏ କଥା ମଧ୍ୟ ସ୍ପଷ୍ଟ ବୁଝାଯାଇ ପାରେ ଯେ ଏ ଦେଶର ମାଟି, ପାଣି, ପବନ, ଭକ୍ତ ତଥା ସାଧାରଣ ଜନତାର ଜୀବନ ସ୍ରୋତ ଉପରେ ଯୁଗ ଯୁଗ ଧରି ଶ୍ରୀକ୍ଷେତ୍ରରୁ ସ୍ୱୟଂଜାତ ଶ୍ରୀ ଜଗନ୍ନାଥ ଯେପରି ଗଭୀର ପ୍ରଭାବ ପକାଇ ଆସିଛନ୍ତି, ସେଥିରେ ଗୌଡ଼ୀୟ ଭକ୍ତର ପୂର୍ବୋକ୍ତ ଧର୍ମ-ବିଶ୍ୱାସ ସେମାନଙ୍କ ପ୍ରାରମ୍ଭିକ ଧର୍ମ-ବିଶ୍ୱାସରେ ନିଶ୍ଚୟ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିବ । ଶ୍ରୀ ଜଗନ୍ନାଥ ଶ୍ରୀ ଚୈତନ୍ୟଙ୍କ ଅଭେଦତ୍ୱ-ପ୍ରତିଷ୍ଠା ଉଦ୍ୟମର ଅନ୍ୟତମ ପରିଣତି ସେମାନଙ୍କ ଆଖିରେ ଓ ପ୍ରତିଷ୍ଠିତ ବିଶ୍ୱାସ ଧାରାରେ ଏକାନ୍ତ ବିସ୍ମୟକର ରୂପେ ପ୍ରତିଭାତ ହେବା ମଧ୍ୟ ସମ୍ପୂର୍ଣ୍ଣ ସ୍ୱାଭାବିକ । ସେଇ ପରିଣତି ଥିଲା ଜଗନ୍ନାଥ-କୈନ୍ଦ୍ରିକ ସେମାନଙ୍କ ଆଧ୍ୟାତ୍ମିକ ଜୀବନ-ଦର୍ଶନ ପ୍ରତି ଏକ ଅତର୍କିତ ଆକ୍ରମଣ । ଏଇ ପରିବେଶର ଚିତ୍ର ବର୍ତ୍ତମାନ ଦେଖନ୍ତୁ । ଶ୍ରୀ ଜଗନ୍ନାଥ ଓ ଶ୍ରୀ ଚୈତନ୍ୟ ଯେତେବେଳେ ଭକ୍ତର ବିଶ୍ୱାସରେ ଏକ ଏବଂ ଅଭିନ୍ନ ସେତେବେଳେ ଶ୍ରୀ ଚୈତନ୍ୟଙ୍କ ଜୀବନୀ-ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ ପରକୀୟା-ପ୍ରୀତିସମ୍ବଳିତ ଗୌଡ଼ୀୟ ପ୍ରେମ-ଦର୍ଶନ, ଶ୍ରୀଜଗନ୍ନାଥ-ତତ୍ତ୍ୱ ଠାରୁ ମଧ୍ୟ ପୃଥକ୍ ନୁହେଁ । କାରଣ ଏ ଦୁହେଁ ଯେତେବେଳେ ଏକ ଈଶ୍ୱର, ସେମାନଙ୍କ ତତ୍ତ୍ୱରେ ଅଭିନ୍ନତା ଦେଖାଯିବା ଏକାନ୍ତ ବିଶ୍ୱାସ ଯୋଗ୍ୟ । ଶ୍ରୀ ଜଗନ୍ନାଥ ଶ୍ରୀ ଚୈତନ୍ୟଙ୍କ ଅଭେଦତ୍ୱର ମାନଦଣ୍ଡରେ ଏ ଦେଶ ଲୋକଙ୍କ ନିକଟରେ ଗୌଡ଼ୀୟ ପ୍ରେମ-ଦର୍ଶନର ଏହିରୂପ ଗ୍ରହଣ ଯୋଗ୍ୟତା ପ୍ରତିଷ୍ଠା, ଧର୍ମ-ପ୍ରଚାରର ବହୁବିଧ କୌଶଳ ଭିତରୁ ଅନ୍ୟତମ ରୂପେ ଏ ଦେଶର ଭକ୍ତଙ୍କ ଆଖିରେ ବିବେଚିତ ହେବାରେ ଅନ୍ୟାୟ କିଛି ହେବ ନାହିଁ ।

ଶ୍ରୀ କ୍ଷେତ୍ରରେ ଶ୍ରୀ ଚୈତନ୍ୟଙ୍କୁ ସର୍ବଶ୍ରେଷ୍ଠ ଦେବତା ରୂପେ ସ୍ୱୀକାର ଓ ଶ୍ରୀ ଜଗନ୍ନାଥ ତତ୍ତ୍ୱ-ବିଶ୍ୱାସୀ ଏ ଦେଶ ଲୋକଙ୍କ ନିକଟରେ ଗୌଡ଼ୀୟ ପ୍ରେମ ଦର୍ଶନର ଗ୍ରହଣ-ଯୋଗ୍ୟତା ପାଇଁ ପ୍ରୟାସ—ଏ ଉଭୟ ହିଁ ମନେହୁଏ ଥିଲେ ଦିବାକର ଦାସଙ୍କ ମାନସିକ ପ୍ରତିକ୍ରିୟାର ଯଥାର୍ଥ କାରଣ ବା ଭିତ୍ତି ଭୂମି । ଜଗନ୍ନାଥ-ଚରିତାମୃତ ଗ୍ରନ୍ଥ ଭକ୍ତ କବି ଜଗନ୍ନାଥ

ଦାସଙ୍କ ଜୀବନୀ ପାଇଁ ଉଦ୍ଦିଷ୍ଟ କିମ୍ବା ଅନ୍ତର୍ବର୍ତ୍ତୀ ସମ୍ପ୍ରଦାୟର ଏହା ହେଉଛି ଏକ ସମ୍ପ୍ରଦାୟ-ସୁଲଭ ବ୍ୟବସ୍ଥା ଗ୍ରନ୍ଥ—ଯେଉଁମାନେ ଏଭଳି କେତୋ ଉକ୍ତିରେ ବିଶ୍ୱାସ କରନ୍ତି, ସେମାନେ ଏହି ପୁସ୍ତକର ବିଷୟ ଗତ-ଧାରା-କଳ୍ପନା, ତା'ର ରୂପାୟନ-କୌଶଳ, ସର୍ବୋପରି ଛନ୍ଦୋବଦ୍ଧ ସ୍ୱର-ସମ୍ପଦର ପ୍ରକୃତ ରୂପ ଯଥାର୍ଥ ଭାବେ ଉପଲବ୍ଧି କରିନାହାନ୍ତି ବୋଲି ବିଶ୍ୱାସ ହୁଏ ନାହିଁ । କାରଣ, ଏଥିରେ ଜଗନ୍ନାଥ ଦାସଙ୍କର ଜୀବନୀ ଯେପରି ସଂକ୍ଷିପ୍ତ, ଅନ୍ତର୍ବର୍ତ୍ତୀ-ସମ୍ପ୍ରଦାୟର ସମ୍ପ୍ରଦାୟଗତ କୌଣସି ବୈଶିଷ୍ଟ୍ୟ ଆଭିମୁଖ୍ୟ ମଧ୍ୟ ସେହିପରି ଅତି ଅଳ୍ପ । ସମଗ୍ର ଗ୍ରନ୍ଥର ଆକାର ଦୃଷ୍ଟିରୁ ବିଚାର କଲେ ଏ ଉଭୟ ହିଁ ଏକାନ୍ତ ଅପ୍ରଧାନ—ଏ ପୁସ୍ତକର ଲେଖା ଯଥାର୍ଥ ଲକ୍ଷ୍ୟ, ଦେଖି ବସିଲେ, ଏ ଉଭୟ ହିଁ ସେହି ଲକ୍ଷ୍ୟର ଭିତ୍ତି ଭୂମି ମାତ୍ର । ଆଲୋଚ୍ୟ ପୁସ୍ତକର ଲକ୍ଷ୍ୟ ହେଉଛି ଦୁଇଟି । ଯଥା—(କ) ଶ୍ରୀକ୍ଷେତ୍ରର ସର୍ବମାନ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ (ଖ) ଏହି ଅର୍ଚ୍ଚା-ଦେବତାଙ୍କ ଅର୍ଚ୍ଚା ବିଧିର ସ୍ୱରୂପ ପ୍ରଖ୍ୟାପନ ମାଧ୍ୟମରେ ତାହାଙ୍କ ତତ୍ତ୍ୱର ସ୍ୱରୂପ ଉଦ୍‌ଘାଟନ । ଆମ ପ୍ରବନ୍ଧର ଆରମ୍ଭରେ ଦିବାକର ଦାସ କପରି ବ୍ରହ୍ମସଂହିତାର ଅବଲମ୍ବନରେ ଆଦ୍ୟପୁରୁଷ ଶ୍ରୀ ଜଗନ୍ନାଥଙ୍କର ସର୍ବମାନ୍ୟତା ପ୍ରତିଷ୍ଠା କରିଅଛନ୍ତି ତାହାର ଆଭାସ ଦିଆଯାଇଅଛି ଓ ଶ୍ରୀ ଚୈତନ୍ୟଙ୍କ ମୁଖରେ ତାହା ଘୋଷଣା କରିବା ସଙ୍ଗେ ସଙ୍ଗେ ଜଗନ୍ନାଥ ତତ୍ତ୍ୱକୁ ମଧ୍ୟ ପୁସ୍ତକର ବିଭିନ୍ନ ସ୍ଥଳରେ ସେ ପ୍ରଚାର କରିଅଛନ୍ତି । ଏଠାରେ ସ୍ପଷ୍ଟ ସ୍ୱୀକାର କରାଯାଇପାରେ ଯେ ଶ୍ରୀ ଚୈତନ୍ୟଙ୍କ ମୁଖରେ ଏହି ଉଭୟ କାର୍ଯ୍ୟ ସମ୍ପାଦନ, ଠିକ୍ ଗୌଡ଼ୀୟ ପ୍ରଚାରର ଅନୁରୂପ-ଏକ ପ୍ରଚାର କୌଶଳ ବୋଲି ବିଶ୍ୱାସ କରିବାକୁ ଇଚ୍ଛା ହୁଏ । କାରଣ, ଶ୍ରୀ ଚୈତନ୍ୟଙ୍କ ନାମୋଚ୍ଚାରଣ ମାଧ୍ୟମରେ ଏ ଦେଶ ଲୋକଙ୍କ ନିକଟରେ ଜଗନ୍ନାଥ ତତ୍ତ୍ୱର ଗ୍ରହଣଯୋଗ୍ୟତା ଅତି ସହଜରେ ସମ୍ପାଦିତ ହୋଇ ପାରିବାର ସମ୍ଭାବନା ଥିଲା ଅଧିକ । ପରକୀୟା ପ୍ରୀତି ସମ୍ବଳିତ ଗୌଡ଼ୀୟ ପ୍ରେମ ଦର୍ଶନର ବହୁଳ ପ୍ରଚାର ଯୁଗରେ ଶ୍ରୀ ଜଗନ୍ନାଥ ବୈଦିକ ଓ ଯୌଗିକ ଜ୍ଞାନ ତନ୍ତ୍ର ମନ୍ତ୍ର ଯନ୍ତ୍ର ସମନ୍ୱିତ ଧର୍ମ ଧାରଣାର ଅନୁଗାମୀ ଭକ୍ତ ଶରୀରେ ପୂର୍ବ କଥିତ ପ୍ରେମ ଦର୍ଶନ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଥିବ, ତାହାର ସ୍ପଷ୍ଟ ଇତିହାସ କେଉଁଠି ଲିପିବଦ୍ଧ ହୋଇ ନ ଥିଲେ ହେଁ, ଦିବାକର ଦାସଙ୍କ ପ୍ରଦତ୍ତ ଗୌଡ଼ୀୟ-ଓଡ଼ିଶୀ ବୈଷ୍ଣବ

ବିବାଦର ନେପଥ୍ୟରେ ଏପରି ଏକ ଷାବ୍ରନ୍ତର ପ୍ରତିକ୍ରିୟା ଅନୁଭବ କରିବା ଆଦୌ କଷ୍ଟକର ନୁହେଁ । ଏଇ ପ୍ରତିକ୍ରିୟାର ରୂପାୟନ କୌଶଳ ଉପରେ ଆମେ ବର୍ତ୍ତମାନ କିଛି ଆଲୋଚନା କରିବାକୁ ଯାଉଅଛୁ ।

ଜଗନ୍ନାଥ ଦାସଙ୍କୁ ଶ୍ରୀ ଚୈତନ୍ୟଙ୍କର 'ଅତିବଡ଼ୀ' ଉପାଧି ପ୍ରଦାନ ଓ ଏହାର ପରିଣତିରେ ଗୌଡ଼ୀୟ-ଓଡ଼ିଶୀ ବୈଷ୍ଣବଙ୍କ ମଧ୍ୟରେ ବିବାଦ— କାର୍ଯ୍ୟ-କାରଣ ରୂପ ଗୃହୀତ ଏ ଉଭୟ ଘଟଣା ପର୍ଯ୍ୟାଲୋଚନା କଲେ ଆମେ ଜାଣିପାରୁ ଯେ ଉପାଧି-ଦାନ (କାରଣ) ଯଦି ଏକ ବାସ୍ତବ ଘଟଣା, ତାହାହେଲେ ବୈଷ୍ଣବ-ବିବାଦ (କାର୍ଯ୍ୟ)ଟିକୁ ତାହା ସହିତ ସଂଶ୍ଳିଷ୍ଟ କରିଦେବାରେ କୌଣସି ଭବ୍ୟତା, କିମ୍ବା ଉନ୍ନତ ରୁଚିବୋଧ, ଏପରିକି ଯୌକ୍ତିକତା ଅଛି ବୋଲି ମନେ ହୁଏନାହିଁ । ଏ କାର୍ଯ୍ୟଟି କେତେକାଂଶରେ ସତ୍ୟ ହୋଇଥିଲେ ହେଁ ଏହାକୁ ଉଲ୍ଲେଖ ନକରି ଉପାଧି-ଦାନଟିକୁ ବର୍ଣ୍ଣନା କରିଥିଲେ କୌଣସି ଦିଗରୁ କିଛିମାତ୍ର କ୍ଷତି ଘଟି ନ ଥାନ୍ତା । ଅପର ପକ୍ଷରେ ବୈଷ୍ଣବ ବିବାଦର କୌଣସି ଆନୁଷଙ୍ଗିକ ତଥ୍ୟ ବଳରେ ଖଣ୍ଡନ ନ କରି ତା'ର କାରଣ ଉପାଧି-ଦାନ ଘଟଣାକୁ ବିକୃତ ରୂପ ପ୍ରଦାନ କରିବାରେ ତଥା ଗୋଟିଏ ସମ୍ପ୍ରଦାୟକୁ ବିଦ୍ରୂପ କରିବାରେ ସମାଲୋଚକମାନଙ୍କ ପାଣ୍ଡିତ୍ୟ ଛଳମାତ୍ର ପ୍ରକାଶ ପାଇଛି ବୋଲି ମନେ ହୁଏ ନାହିଁ । ଏହାଦ୍ୱାରା ସେମାନଙ୍କର ସଂପ୍ରଦାୟ ସୁଲଭ ଏକଦେଶଦର୍ଶିତା ତଥା ଅନ୍ୟର ଧର୍ମ-ବିଶ୍ୱାସ ପ୍ରତି ବିଷାକ୍ତ ବିଦ୍ୱେଷ ହିଁ ଆତ୍ମପ୍ରକାଶ କରିବାର ସୁବିଧା ପାଇଅଛି ମାତ୍ର । ଆମର ଯେତେଦୂର ବିଶ୍ୱାସ, ଶ୍ରୀ ଚୈତନ୍ୟ-ଜଗନ୍ନାଥ ଦାସଙ୍କ ପ୍ରଥମ ସାକ୍ଷାତ୍ ବେଳେ ଏପରି କିଛି ନା କିଛି ଘଟଣା ଘଟିଛି, ଯାହାର ସ୍ମାରକୀ ସ୍ୱରୂପ ନିଜ ସଂପ୍ରଦାୟକୁ ମଧ୍ୟ ସେହି ଅନୁସାରେ ନାମିତ କରାଯାଇଅଛି । ଶ୍ରୀ ଚୈତନ୍ୟଙ୍କ ତିରୋଭାବର ଶତାଧିକ ବର୍ଷ ପରେ ପରମ୍ପରାକ୍ରମେ ସେଇ ଘଟଣା କଳ୍ପନାରେ ଅନୁରଞ୍ଜିତ ହୋଇ ଦିବାକର ଦାସଙ୍କ ହସ୍ତରେ ଆଜିର ରୂପରେ କେବଳ ଅଭିବ୍ୟକ୍ତି ଲାଭ କରିଅଛି । ଯଥାର୍ଥ ବିଚାରରେ ପୂର୍ବୋକ୍ତ ଦୁଇଟି ଘଟଣା ଦିବାକର ଦାସଙ୍କ ଗ୍ରନ୍ଥ-ପରିକଳ୍ପନାରେ ଥିଲେ ସମ୍ପୂର୍ଣ୍ଣ ଅପ୍ରଧାନ । ତାହାଙ୍କ ମୌଳିକ ଲକ୍ଷ୍ୟର ଏ ଉଭୟ ହେଉଛନ୍ତି ଉପଲକ୍ଷ ମାତ୍ର । ଆଦି ପୁରୁଷ ଶ୍ରୀ ପୁରୁଷୋତ୍ତମଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ ତଥା ତାହାଙ୍କ ତତ୍ତ୍ୱ ପ୍ରଖ୍ୟାପନ,

ଏ ଉଭୟ ଥିଲେ ସେଇ ପରିକଳ୍ପନାର ଯଥାର୍ଥ ଭାବକେନ୍ଦ୍ର—ଏଇ ଭାବ କେନ୍ଦ୍ରର ସୁପ୍ରତିଷ୍ଠା ବିଗରେ ଉପାଧି-ଦାନ ଓ ବୈଷ୍ଣବ-ବିବାଦ କେବଳ ଭିତ୍ତିଭୂମି ରୂପେ ପରିକଳ୍ପିତ ହୋଇ ଅଛନ୍ତି ।

ଜଗନ୍ନାଥ-ଚରିତାମୃତ ଗ୍ରନ୍ଥ ବାରମ୍ବାର ଅଧ୍ୟୟନ କଲେ ଦିବାକର ଦାସ ନିଜର ସମସ୍ତ ପାଣ୍ଡିତ୍ୟ ଓ ଶକ୍ତି ପୂର୍ବୋକ୍ତ ଭାବକେନ୍ଦ୍ରର ଯଥାର୍ଥ ସ୍ୱରୂପ ଉଦ୍‌ଘାଟନ ଦିଗରେ ବିନିଯୋଗ କରି ଓଡ଼ିଶାର ଜନଜୀବନର ଆଧ୍ୟାତ୍ମିକ ତଥା ସାଂସ୍କୃତିକ ଆଭିମୁଖ୍ୟର ବିକାଶ ଓ ଅଭିବୃଦ୍ଧି ପାଇଁ କିପରି ଏକ ସୁପ୍ରଶସ୍ତ ମାର୍ଗ ପ୍ରସ୍ତୁତ କରିଦେଇ ଅଛନ୍ତି ତାହା ଆମେ ଅନୁଭବ କରିବାକୁ ସମର୍ଥ ହୋଇଥାଉଁ । ସାମ୍ପ୍ରଦାୟିକ ଆଭିମୁଖ୍ୟରୁ ଏ ପୁସ୍ତକର ବିଷୟବସ୍ତୁ ପ୍ରଥମେ ଉଦ୍‌ଭୂତ ହୋଇଥିଲେ ହେଁ ପୂର୍ବକଥିତ ଭାବ-କେନ୍ଦ୍ରର ସୁମହାନ ବୈଶିଷ୍ଟ୍ୟ ହେତୁ ଆଲୋଚ୍ୟ ପୁସ୍ତକ କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଗଣ୍ଡି ମଧ୍ୟରେ ସୀମିତ ନ ହୋଇ ଗୋଟାଏ ବିଶାଳ ଜାତିର ଆଧ୍ୟାତ୍ମିକ ଓ ସାଂସ୍କୃତିକ ଜୀବନ-ଧାରାର ଦିଗ୍‌ଦର୍ଶକ ରୂପେ ସମ୍ମାନିତ ହେଉଅଛି । ଉପାଧି-ଦାନ ଓ ବୈଷ୍ଣବ-ବିବାଦ, ଏ ଉଭୟ ଘଟଣାର ସପକ୍ଷ ଓ ବିପକ୍ଷ ସମାଲୋଚକମାନଙ୍କ ମଧ୍ୟରୁ କେହି ଜଣେ ମଧ୍ୟ ଏ ପୁସ୍ତକରେ ଥିବା ଜଗନ୍ନାଥ-ତତ୍ତ୍ୱ-ଚର୍ଚ୍ଚିତ ଭାବକେନ୍ଦ୍ର ପ୍ରତି ସମୁଚିତ ଗୁରୁତ୍ୱ ଦେଇ ତାହାର ଯଥାର୍ଥ ବିଶ୍ଳେଷଣ ଆମକୁ ପରିବେଷଣ କରିନାହାନ୍ତି ।

ସ୍ଥୂଳଦୃଷ୍ଟିରେ ବିଚାର କଲେ ଏଇ ବୈଷ୍ଣବ-ବିବାଦ ଭିତରୁ ସାଧାରଣତଃ ଦୁଇଟି ସମ୍ପ୍ରଦାୟର ଭକ୍ତଙ୍କ ସାଧାରଣ ବିବାଦର ଭାବ ଆତ୍ମ-ପ୍ରକାଶ କରିଥାଏ । ଆମର ସମ୍ପୂର୍ଣ୍ଣ ବିଶ୍ୱାସ, ଏହାହିଁ ଏପରି ଏକ ବିବାଦର ଅସଲ ରୂପ ନୁହେଁ । ଦୁଇଜଣ ଭକ୍ତଙ୍କ ବ୍ୟକ୍ତିଗତ ବା ସମ୍ପ୍ରଦାୟ-ମୂଳକ ବିବାଦ ଅପେକ୍ଷା ସେଇ ଭକ୍ତଙ୍କ ଚିତ୍ତ-ରାଜ୍ୟରେ ଦେଖା ଦେଇଥିବା ଦୁଇ ଦେବତାଙ୍କ ଆସନ ଗତ ଦ୍ୱନ୍ଦ୍ୱହିଁ ଏ ବିବାଦର ଯଥାର୍ଥ ରୂପ । ଅର୍ଥାତ୍, ଭକ୍ତର ଦ୍ୱନ୍ଦ୍ୱାତ୍ମକ ଚିତ୍ତରେ ଶ୍ରୀ ଜଗନ୍ନାଥ ଓ ଶ୍ରୀ ଚୈତନ୍ୟଙ୍କୁ କେନ୍ଦ୍ର କରି ଯେଉଁ ଆସନ-ଗତ ଦ୍ୱନ୍ଦ୍ୱ ପରିଲକ୍ଷିତ ହୋଇଥିଲା, ଦିବାକର ଦାସଙ୍କ କଥିତ ବୈଷ୍ଣବ-ବିବାଦ ହେଉଛି ତାହାର ସ୍ଥୂଳରୂପ ମାତ୍ର । ସାଧାରଣ କଥାରେ କହିଲେ ଏହା ହେଉଛି ଜଗନ୍ନାଥ-ଚୈତନ୍ୟ-ସମ୍ପର୍କିତ ଧର୍ମ-

ଧାରଣା ଓ ବିଶ୍ୱାସ ମଧ୍ୟରେ ଦେଖା ଦେଇଥିବା ଦ୍ୱନ୍ଦ୍ୱ ବ୍ୟକ୍ତିତ ଅନ୍ୟ କିଛି ନୁହେଁ । ଏକ ଦିଗରେ, ଗୋପୀନାଥ-ସାକ୍ଷୀଗୋପାଳ-ଜଗନ୍ନାଥଙ୍କୁ ଶ୍ରୀ ଚୈତନ୍ୟଙ୍କ ପ୍ରାଚୀନ ମୂର୍ତ୍ତି ବୋଲି କହିବା ଠାରୁ ଆରମ୍ଭ କରି ଜଗନ୍ନାଥ ଚୈତନ୍ୟଙ୍କ ଅଭେଦତତ୍ତ୍ୱ ପ୍ରତିଷ୍ଠା ମାଧ୍ୟମରେ ଶ୍ରୀ ଚୈତନ୍ୟଙ୍କୁ ରତ୍ନ ସିଂହାସନର ଅଧିକାରୀ ଶ୍ରୀକ୍ଷେତ୍ରର ସର୍ବଶ୍ରେଷ୍ଠ ଦେବତା ରୂପେ ପ୍ରସ୍ତୁତ କରିବା ପ୍ରଭୃତି ବିବିଧ ଘଟଣାବଳୀ ଭକ୍ତର ବିଶ୍ୱାସରେ ଯେପରି ସତ୍ୟ ଓ ସମ୍ଭବ, ଅପର ପକ୍ଷରେ ଅନ୍ୟଜଣେ ଭକ୍ତର ଦୃଷ୍ଟିରେ ସତ୍ୟ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ସଂପୃକ୍ତ ସତ୍ୟ ଦେବତା ଶ୍ରୀ ଜଗନ୍ନାଥ ଅବତାରୀ ଓ ଶ୍ରୀ ଚୈତନ୍ୟ ତାଙ୍କର ଅବତାର କହିବା ଭିତରେ ଥିବା ବିଶ୍ୱାସ ମଧ୍ୟ ତତୋଽଧିକ ସ୍ୱାଭାବିକ । ଏ ଉଭୟ ବିଶ୍ୱାସର ନେପଥ୍ୟରେ ଅଛନ୍ତି ଦୁଇଟି ଦେବତା—ଶ୍ରୀ ଚୈତନ୍ୟ ଓ ଶ୍ରୀ ଜଗନ୍ନାଥ । ଯଥାର୍ଥତଃ, ଏ ଦୁଇ ଦେବତାଙ୍କ ଦ୍ୱନ୍ଦ୍ୱ ହିଁ ବୈଷ୍ଣବ-ବିବାଦର ସ୍ଥୂଳରୂପ ଆହରଣ କରି ଆତ୍ମପ୍ରକାଶ କରିଅଛି ମାତ୍ର । ଆମ ପ୍ରବନ୍ଧର ପ୍ରଥମ ବିଭାଗର ଆରମ୍ଭରେ ଓ ତୃତୀୟ ବିଭାଗର ସ୍ୱଳ୍ପ ଚରିତ-ଗ୍ରନ୍ଥର ଆହୃତ ଉଦ୍ଧୃତ ଅନୁଧ୍ୟାନ କଲେ ଆମର ଏପରି ଏକ ସିଦ୍ଧାନ୍ତର ସମୀଚୀନତା ଆପଣମାନେ ଉପଲବ୍ଧି କରିପାରିବେ ।

ପୂର୍ବୋକ୍ତ ସ୍ଥଳରେ ଆଲୋଚ୍ୟ ବୈଷ୍ଣବ ବିବାଦକୁ ଏକାନ୍ତ କାଳ୍ପନିକ ବୋଲି ଗ୍ରହଣ କରି ନେଲେ ମଧ୍ୟ ଏହାର କାଳ୍ପନିକତାକୁ ସର୍ବାଂଶରେ ଭିତ୍ତିହୀନ ଓ ଅନ୍ତଃସାର ଶୂନ୍ୟ ବୋଲି କୁହାଯାଇ ପାରିବ ନାହିଁ । କାରଣ, ଏପରି କାଳ୍ପନିକତା ସୃଷ୍ଟି ପାଇଁ ଚରିତ ଗ୍ରନ୍ଥଗୁଡ଼ିକର ବହୁ ଉପାଦାନ ଏକମାତ୍ର ଦାୟୀ ବୋଲି ବିଶ୍ୱାସ କରିବାକୁ ଇଚ୍ଛାହୁଏ । ଏପରି ଉପାଦାନ-ଗୁଡ଼ିକ ଭିତରେ ଥିବା ଅସଙ୍ଗତିର ସମାଧାନ ପାଇଁ ସେହି ଗ୍ରନ୍ଥମାନଙ୍କରେ କୌଣସି ସନ୍ତୋଷଜନକ କୈଫିୟତ ଆମେ ଦେଖିବାକୁ ପାଉନାହିଁ । ୧୯୬୫ ସାଲରେ ପ୍ରକାଶିତ 'ସଖାହୀନ ପଞ୍ଚସଖା' ପୁସ୍ତକର ପୃ. ୬୭ରେ ଏ ସମ୍ପର୍କରେ ଥିବା ଆମର ସନ୍ଦେହକୁ ଏଇପରି ପ୍ରକାଶ କରିଥିଲୁ, "ଶ୍ରୀ ଚୈତନ୍ୟଙ୍କ ପୁରୀ କ୍ଷେତ୍ରରେ ରହିବାର ପ୍ରକୃତ କାରଣ ଉପରେ ଆମେ ଏପରି ପ୍ରାଧାନ୍ୟ ଯେ କାହିଁକି ଦେଉଛୁ ତାହା ବୁଝାଇ ଦେଉଛୁ । ଶ୍ରୀକୃଷ୍ଣ ଶ୍ରୀ ଜଗନ୍ନାଥ ଶ୍ରୀ ଚୈତନ୍ୟ ତିନି ଅଭିନ୍ନ, ତା'ହେଲେ ଶ୍ରୀ

ଜଗନ୍ନାଥ ଓ ଶ୍ରୀ ଚୈତନ୍ୟଙ୍କ ଠାରୁ ଦୂରରେ ବୃନ୍ଦାବନ ଓ ନବଦ୍ୱୀପରେ ଏଇ ବୈଷ୍ଣବମାନେ ରହିଲେ କାହିଁକି ? ବୃନ୍ଦାବନ ଯଦି ଶ୍ରୀକୃଷ୍ଣଙ୍କ ଲୀଳାକ୍ଷେତ୍ର, ତା'ହେଲେ ଅନ୍ୟ ବୈଷ୍ଣବମାନଙ୍କ ପରି ଶ୍ରୀ ଚୈତନ୍ୟ ପ୍ରେମ-ସାଧନା ପାଇଁ ବୃନ୍ଦାବନକୁ ନିର୍ବାଚନ ନ କଲେ କାହିଁକି ? ସର୍ବୋପରି କୃଷ୍ଣ-ରାଧା-ପ୍ରୀତି ଯଦି ଗୌଡ଼ୀୟ ପ୍ରେମ-ଦର୍ଶନର କେନ୍ଦ୍ର ବିନ୍ଦୁ, ତା'ହେଲେ ସେଇ କେନ୍ଦ୍ର ବିନ୍ଦୁରୁ ଶ୍ରୀ ଚୈତନ୍ୟ-ସେବିତ ଶ୍ରୀ ଜଗନ୍ନାଥ ବାଦ ପଡ଼ିଲେ କିପରି ? ଏଇପରି ତିନୋଟି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଗୌଡ଼ୀୟ ବୈଷ୍ଣବ ସାହିତ୍ୟର ଉପାଦାନରୁ ମିଳିବା ଆଦୌ ସମ୍ଭବ ନୁହେଁ । ତେଣୁ ମନେହୁଏ ଶ୍ରୀ ଚୈତନ୍ୟଙ୍କ ପୁରୀ ତ୍ୟାଗ ନ କରିବାର ଅନ୍ୟ କୌଣସି କାରଣ ଅଛି ଯାହାକି ଦିବାକର ଦାସଙ୍କ ରଚନାରେ ଆମେ ଦେଖିବାକୁ ପାଇଥାଉଁ ।" ଦିବାକର ଦାସ କଥିତ କାରଣ ଜାଣିବା ପୂର୍ବରୁ ଶ୍ରୀ ଚୈତନ୍ୟଙ୍କ ପୁରୀ-ନିର୍ବାଚନର କାରଣ ଗୌଡ଼ୀୟ ବୈଷ୍ଣବ ସାହିତ୍ୟରୁ କିଛି ଶୁଣନ୍ତୁ ।

ମାତାଙ୍କ ଆଦେଶରେ ଶ୍ରୀ ଚୈତନ୍ୟ ପୁରୁଷୋତ୍ତମ କ୍ଷେତ୍ରରେ ସନ୍ନ୍ୟାସଜୀବନ ଅତିବାହିତ କରିଥିଲେ ବୋଲି କବିରାଜ କୃଷ୍ଣ ଦାସ ଗୋସ୍ୱାମୀ କହିଅଛନ୍ତି । ଦେଖିବାର କଥା, ମାତାଙ୍କ ଆଦେଶଟି ଯଦି ଏକାନ୍ତ ସତ୍ୟ, ତାହେଲେ ଯତି ବେଶଧାରୀ ଜଣେ ଭକ୍ତର ସନ୍ନ୍ୟାସଜୀବନ-ଯାପନ ସ୍ଥଳରେ କ୍ଷେତ୍ର-ଦେବତା ସାଧନା ପ୍ରଣାଳୀ ସମ୍ପୂର୍ଣ୍ଣ ଅପ୍ରଧାନ ହୋଇ ପଡ଼ନ୍ତି । କିନ୍ତୁ ବିଚାର କରି ବସିଲେ ଏ ତିନୋଟି ସାଧାରଣତଃ ସେ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ତେଣୁ, ଶ୍ରୀଚୈତନ୍ୟଙ୍କ ପୁରୁଷୋତ୍ତମ କ୍ଷେତ୍ର ନିର୍ବାଚନ ପ୍ରସଙ୍ଗରେ ମାତାଙ୍କ ଆଦେଶ ଥିବା କାରଣଟି କୌଣସି ବଳିଷ୍ଠ ବା ସନ୍ତୋଷଜନକ ଯୁକ୍ତିର ପରିଚୟ ଦିଏ ନାହିଁ । ଏ ପ୍ରସଙ୍ଗରେ ବୃନ୍ଦାବନ ଦାସଙ୍କ ବର୍ଣ୍ଣନା ଆମେ ଏଠାରେ ଉପସ୍ଥାପନା କରୁଅଛୁ ।

ସନ୍ନ୍ୟାସ ଜୀବନ ଅତିବାହିତ କରିବା ପାଇଁ ଗୃହତ୍ୟାଗ ପରେ ସେ ପ୍ରଥମେ ପଶ୍ଚିମାଭିମୁଖୀ ହୋଇ ହଠାତ୍ ଗତି ପରିବର୍ତ୍ତନ ସହ କହି ଉଠିଛନ୍ତି, "ଆମି ଚଲିଲାମ ନୀଳାଚଲେ ॥ ଜଗନ୍ନାଥ ପ୍ରଭୁର ହଇଲ ଆଜ୍ଞା ମୋରେ । ନୀଳାଚଲେ ତୁମି ଝାଟ ଆଇସ ସତ୍ୱରେ ॥"

(ଅନ୍ତ୍ୟ ୧।୮୯—୯୦) ଏଇ ଯାହା ପାଇଁ ଅଦ୍ୱୈତଙ୍କର ଅନୁମୋଦନ (ଅନ୍ତ୍ୟ ୨।୪୮), "ପଥ ମଧ୍ୟରେ 'ହାହା ଜଗନ୍ନାଥ, ପ୍ରଭୁ ବଲେ ଘନ ଘନ ।' (ଅନ୍ତ୍ୟ ୨।୮୭) କହିବା ଭିତରେ ଶ୍ରୀ ଜଗନ୍ନାଥ-ଦର୍ଶନ ପାଇଁ ଗଭୀର ବ୍ୟାକୁଳିତା ପ୍ରକାଶ, ନୀଳାଚଳ-ପଥରେ 'ନିରବଧି ଜଗନ୍ନାଥ ପ୍ରତି ଆର୍ତ୍ତି କରି' (ଅନ୍ତ୍ୟ ୨।୧୯୦) କହିବା ଭିତରେ ନିଜର ଚପଳପ୍ରେମୋନ୍ମାଦ ପ୍ରକାଶ—ଏ ସବୁପରେ ରାମଚନ୍ଦ୍ର ଖାଁ—ପ୍ରେରିତ ନୌକାରେ ଶ୍ରୀ ଚୈତନ୍ୟ ଆରୋହଣ କଲେ ଆମେ ଶୁଣୁ, 'ଚଳିଲେନ ପ୍ରଭୁ ନୀଳାଚଳ-ନିଜପୁରେ ।' (ଅନ୍ତ୍ୟ ୨।୧୮୧) ନୀଳାଚଳ କ୍ଷେତ୍ରକୁ ଶୀଘ୍ର ଗମନ କରିବା ପାଇଁ ସନ୍ନ୍ୟାସୀ ଶ୍ରୀ ଚୈତନ୍ୟଙ୍କ ପ୍ରତି ଯେଉଁ ଶ୍ରୀ ଜଗନ୍ନାଥଙ୍କର ଥିଲା 'ଆଜ୍ଞା' ତଥା ପଥ ମଧ୍ୟରେ ଯାହାଙ୍କର ନାମୋଚ୍ଚାରଣ କରି ସେ ଗଭୀର ଆର୍ତ୍ତି ପ୍ରକାଶ କରିଥିଲେ ଓ ଯେଉଁ ନୀଳାଚଳ" ଏଇ ଯତିଙ୍କର ଥିଲା 'ନିଜ ଘର' ନାହ ବାସ୍ତବର ବଚନ ବର୍ତ୍ତମାନରେ, ସେଇ ଦେବତା ଶ୍ରୀ ଜଗନ୍ନାଥ ଓ ସେଇ କ୍ଷେତ୍ର ନୀଳାଚଳ ଧାମ ହୋଇଛନ୍ତି ଗୌଡ଼ୀୟ ବୈଷ୍ଣବ-ଦର୍ଶନରେ ସମ୍ପୂର୍ଣ୍ଣ ଉପେକ୍ଷିତ !!

ଏହାର ସମ୍ପର୍କ ଦିବାକର ଦାସ ଯାହା କହିଛନ୍ତି ତାହା ମିଳାଇ ଅନୁଧ୍ୟାନ କରନ୍ତୁ ।

"ବୈଷ୍ଣବ ବୃନ୍ଦ ସଙ୍ଗେ ଘେନି । ବିଶେଷ ଭ୍ରମିଲେ ମେଦିନୀ ॥
ବହୁତ କ୍ଷେତ୍ର ତୀର୍ଥ କଲେ । ଗୟା କାଶୀ ଆଦି ଭ୍ରମିଲେ ॥
ନ ପାଇ ପ୍ରେମ ଭକ୍ତି ରସ । ପୁରୁଷୋତ୍ତମରେ ପ୍ରବେଶ ॥"
(ଜ: ଚ: ୨ୟ ଅଧ୍ୟାୟ)

ଶ୍ରୀ ଚୈତନ୍ୟଙ୍କ ମୁଖରେ ଶ୍ରୀକ୍ଷେତ୍ର ଓ ଶ୍ରୀ ଜଗନ୍ନାଥ ମହିମା ପ୍ରଖ୍ୟାପନ ମାଧ୍ୟମରେ ଏଇ କ୍ଷେତ୍ର-ନିର୍ବାଚନର ସମୀଚୀନତା କିପରି ଘୋଷିତ ହୋଇଅଛି, ତାହାଁ ଦେଖନ୍ତୁ ।

"ମତ୍ସ୍ୟ କୂର୍ମ ବରାହ ମୂର୍ତ୍ତି । ନୃସିଂହ ବାମନ ମୂରତି ॥
ପରଶୁରାମ ରଘୁନାଥ । ସେ କୃଷ୍ଣ ଗୋପୀଙ୍କର ନାଥ ॥
ଏହି କ୍ଷେତ୍ରରେ ଛନ୍ତି ରହି । ଅନ୍ୟ ଭ୍ରମୁଛ କାହିଁ ପାଇଁ ॥
ମାନଧାତା ସତ୍ୟ ଯୁଗରେ । ଦର୍ଶନ କଲେ ଏହି ସ୍ଥାନ ॥
ତ୍ରେତା ଯୁଗରେ ରଘୁପତି । ଦର୍ଶନ କଲେ ଏହି ମୂର୍ତ୍ତି ॥

ଦ୍ୱାପରେ କୃଷ୍ଣ ଯେ ଅର୍ଜୁନ । ଆସି ମିଳିଲେ ଏହି ସ୍ଥାନ ॥
ଶ୍ରୀ ଜଗନ୍ନାଥଙ୍କ ଦର୍ଶନ । କଲେ କାମନା କଲେ ପୂର୍ଣ୍ଣ ॥
ବ୍ରାହ୍ମଣ ଦଶ ପୁତ୍ର ନେଲେ । ନିଜ ମହିମା ଦେଖାଇଲେ ॥
ଏବେ କଳିଯୁଗରେ ମୁହିଁ । ଜଗନ୍ନାଥ ଆଶ୍ରା କଲଇଁ ॥
ତୁମ୍ଭେ ନ ଛାଡ଼ ଏହି ପୁର । ଭଜ ଜଗନ୍ନାଥ ପୟର ॥
କ୍ଷେତ୍ର ଛାଡ଼ି ମୋ କାର୍ଯ୍ୟ ନାହିଁ । ଏ କ୍ଷେତ୍ର ନ ଛାଡ଼ିବି ମୁହିଁ ॥
ମହାପ୍ରଭୁ ଏହା କହିଲେ । ଶୁଣି ସେ (ବୈଷ୍ଣବେ) ମଉନ ହୋଇଲେ ॥”

(ଜ: ଚ: ୩୨ୟ ଅଧ୍ୟାୟ)

କେତେକ ବୈଷ୍ଣବ ଭକ୍ତଙ୍କୁ ବୃନ୍ଦାବନରେ ରହିବାର ଆଦେଶ ଦେଇ ଶ୍ରୀ ଚୈତନ୍ୟ ନିଜେ ଅନ୍ୟ କେତେକ ଭକ୍ତଙ୍କ ସହିତ କେବଳ ମାତାଙ୍କ ଆଦେଶରେ ଶ୍ରୀ କ୍ଷେତ୍ରରେ ରହିଥିଲେ—ଏହା ବାସ୍ତବ ପରିସ୍ଥିତି ସହିତ ଆଦୌ ସାମଞ୍ଜସ୍ୟ ରକ୍ଷା କରିପାରୁ ନାହିଁ । ଫଳରେ ଯଥାର୍ଥ ସତ୍ୟଟି ଏହାଦ୍ୱାରା ଲୁକ୍‌କାୟିତ ହୋଇ ପଡ଼ିଥିବାର ଅନୁଭୂତ ହୋଇଥାଏ । ପୁନଶ୍ଚ, ଅନ୍ୟ କେତେକ ଭକ୍ତଙ୍କୁ ନବଦ୍ୱୀପକୁ ଫେରିଯାଇ ପ୍ରତିବର୍ଷ ରଥଯାତ୍ରାକୁ ଆସିବା ପାଇଁ ସାଙ୍କେତିକ ଭାଷାରେ ଇଙ୍ଗିତ ଦେବା ଅଣ୍ଡାକ ରହସ୍ୟଜନକ ଘଟଣା ବୋଲି ମନେହୁଏ । ପୂର୍ବୋକ୍ତ ଉଭୟ ବିଷୟ ଦିବାକର ଦାସଙ୍କ ମନର ପ୍ରବୃତ୍ତିକୁ ଯଥେଷ୍ଟ ଇନ୍ଧନ ଯୋଗାଇ ବୈଷ୍ଣବ-ବିବାଦର ଚିତ୍ରକୁ ଯଦି ଏକ କଳ୍ପନା-ରଞ୍ଜିତ ରୂପ ଦେଇଥାଏ, ତାହାହେଲେ ଏହା ସର୍ବାଂଶରେ କାଳ୍ପନିକ ଓ ଅନ୍ତଃସାରଶୂନ୍ୟ ବୋଲି ଆଦୌ କୁହାଯାଇ ନପାରେ । ଦେଖିବାର କଥା, ଆଲୋଚ୍ୟ ପୁସ୍ତକର ଯାହା ପ୍ରକୃତ ଲକ୍ଷ୍ୟ—ଶ୍ରୀ ଜଗନ୍ନାଥଙ୍କ ତତ୍ତ୍ୱ ପ୍ରଖ୍ୟାପନ—ଏ ବିବାଦ ହେଉଛି ତାହାର ପୃଷ୍ଠଭୂମି ମାତ୍ର । ଏଇ ପୃଷ୍ଠଭୂମି ଉପରେ ଦିବାକର ଦାସ ଗୌଡ଼ୀୟ ପ୍ରେମ-ଦର୍ଶନଠାରୁ ଜଗନ୍ନାଥ ତତ୍ତ୍ୱ-ଗର୍ଭିତ ଓଡ଼ିଶୀ ବୈଷ୍ଣବ ଧର୍ମର ଆଧ୍ୟାତ୍ମିକ ଭାବନାକୁ ପୃଥକ୍ କରିଦେଇ ଏ ଦେଶର ପାରମ୍ପରିକ ଧର୍ମ ବିଶ୍ୱାସକୁ ସୁପ୍ରତିଷ୍ଠା କରିବାରେ ସମର୍ଥ ହୋଇଅଛନ୍ତି ।

ଆମେ ଏ ପର୍ଯ୍ୟନ୍ତ ଯାହା ସବୁ ଆଲୋଚନା କଲୁଁ ତା'ର ପ୍ରକୃତ ଉଦ୍ଦେଶ୍ୟ ପ୍ରବନ୍ଧର ପର ବିଭାଗରେ ଆପଣମାନେ ଦେଖିବାକୁ ପାଇବେ ।

( ୪ )

ଓଡ଼ିଆ ଧର୍ମ-ପୁସ୍ତକମାନଙ୍କ ମଧ୍ୟରେ ଈଶ୍ୱରଦାସଙ୍କ ଜଗନ୍ନାଥ ଚରିତାମୃତ ଏକ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏପରି ଏକ ବରିଷ୍ଠ ଓ ଗୁରୁତ୍ୱପୂର୍ଣ୍ଣ ରଚନାର ସମସ୍ତ ବିଭାଗକୁ ଦୃଷ୍ଟିରେ ରଖି ପୂର୍ଣ୍ଣ ବିଚାର ଓ ବିଶ୍ଳେଷଣ କରିବା ଆମର ଲକ୍ଷ୍ୟ ନୁହେଁ । ସେଥିପାଇଁ ଏକ ସ୍ୱତନ୍ତ୍ର ବୃହତ୍ ଗ୍ରନ୍ଥ ରଚନା ଏକାନ୍ତ ପ୍ରୟୋଜନ । ଆମେ କିନ୍ତୁ ଗୋଟିଏ ପ୍ରବନ୍ଧର ସୀମିତ ପରିସର ମଧ୍ୟରେ ଚିନ୍ତିତ ବହୁ ବିଷୟ ମଧ୍ୟରୁ କେବଳ ବୈଷ୍ଣବ ବିବାଦକୁ ନିର୍ବାଚନ କରି ସେହି ବିବାଦର ବାସ୍ତବତା ଓ ତା'ର ଯଥାର୍ଥତା ଉପରେ ବର୍ତ୍ତମାନ ସାମାନ୍ୟ ଆଲୋକପାତ କରିଅଛୁଁ । ଏହା ବ୍ୟତୀତ ଆଲୋଚ୍ୟ ପୁସ୍ତକର ରୂପାୟନ-କୌଶଳ ଓ ତା'ର ଲକ୍ଷ୍ୟ ଉପରେ ସାମାନ୍ୟସୂଚନା ମଧ୍ୟ ପ୍ରାସଙ୍ଗିକ ଭାବେ ଉପସ୍ଥାପିତ ହୋଇଅଛି । ଆଲୋଚ୍ୟ ପୁସ୍ତକର ସମସ୍ତ ଉପାଦାନକୁ ଐତିହାସିକ ଦୃଷ୍ଟିରୁ ବିଚାର-କଲେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ସାଧାରଣତଃ ଦୃଷ୍ଟି ଆକର୍ଷଣ କରିଥାନ୍ତି । ଯଥା—(କ) ବହୁ ବୈଶିଷ୍ଟ୍ୟପୂର୍ଣ୍ଣ ଏ ପୁସ୍ତକର ଜନ୍ମଜନ୍ମ ବା ଆବିର୍ଭାବ ଇତିହାସ ଓ (ଖ) ପରବର୍ତ୍ତୀ ଓଡ଼ିଆ ଧର୍ମ ସାହିତ୍ୟ ଉପରେ ଆଲୋଚ୍ୟ ପୁସ୍ତକର ଗଭୀରତର ପ୍ରଭାବ । ଆମେ ନିମ୍ନରେ ଏ ଉଭୟ ବିଷୟର ସାମାନ୍ୟ ପରିଚୟ ଉପସ୍ଥାପନା କରୁଅଛୁଁ ।

ବର୍ତ୍ତମାନ ଜଗନ୍ନାଥ ମନ୍ଦିର ନିର୍ମାଣ (୧୨ ଶ ଶତାବ୍ଦୀ) ପୂର୍ବରୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ପରି ଉଚ୍ଚକୋଟୀର ପଣ୍ଡିତ ଦାର୍ଶନିକ ସନ୍ନ୍ୟାସୀ ଓ ମନ୍ଦିର ନିର୍ମାଣ ପରେ ଚତୁଃସମ୍ପ୍ରଦାୟର ପ୍ରବର୍ତ୍ତକମାନଙ୍କ ମଧ୍ୟରୁ କେହି କେହି, ଏପରି କି ଗୋରକ୍ଷନାଥଙ୍କ ଠାରୁ ଆରମ୍ଭ କରି କବୀର, ନାନକ ଓ ତୁଳସୀ ଦାସଙ୍କ ପର୍ଯ୍ୟନ୍ତ ବିଭିନ୍ନ ସାଧୁ ସନ୍ନ୍ୟାସୀ ଭିନ୍ନ ଭିନ୍ନ ସମୟରେ ଶ୍ରୀ କ୍ଷେତ୍ରକୁ ଆଗମନ କରିଥିବାର ସମ୍ବାଦ ଆମେ ଶୁଣିଥିଲେ ହେଁ ଏମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଏ କ୍ଷେତ୍ରର ସର୍ବମାନ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କୁ ଆତ୍ମସ୍ଥ କରିଦେବାର ଅପଚେଷ୍ଟା କେବେ କରିଥିବାର କିଛି ସଙ୍କେତ କେଉଁଠି ଦେଖିବାକୁ ପାଉନାହିଁ । ସେମାନଙ୍କ ଆଗମନ ଜମ୍ମା ଚିହ୍ନାଧାରର ସଙ୍କେତ ବହନ କରି ରହିଛନ୍ତି ସେମାନଙ୍କ ପ୍ରତିଷ୍ଠିତ ବିଭିନ୍ନ ମଠ ବା ଆଶ୍ରମ ।

ଶ୍ରୀ ଜଗନ୍ନାଥଙ୍କୁ ରତ୍ନ ସିଂହାସନ-ଚ୍ୟୁତ କରିବା ଓ ଦୂରେଇ ଦେବା କଥା, ସେମାନଙ୍କ ଆଧ୍ୟାତ୍ମିକ ଦର୍ଶନର କି କି ପ୍ରଭାବ ଜଗନ୍ନାଥ-ତତ୍ତ୍ୱ ଓ ତାହାଙ୍କ ଅର୍ଚ୍ଚା-ପଦ୍ଧତି ଉପରେ ପଡ଼ିଅଛି, ତାହା ଅବଧାରଣା କରିବାକୁ ହେଲେ ସ୍ୱତନ୍ତ୍ର ଗବେଷଣା ଏକାନ୍ତ ଆବଶ୍ୟକ । କିନ୍ତୁ ଭାରତର ଶତ ଶତ ଭକ୍ତ ଯୁଗ ଯୁଗ ଧରି ଶ୍ରୀ ଜଗନ୍ନାଥଙ୍କ ମହତ୍ତ୍ୱ ପ୍ରତି ଆକୃଷ୍ଟ ହୋଇ ଶ୍ରୀ କ୍ଷେତ୍ରକୁ ଆଗମନ କରି ଆସୁଥିଲେ ପରି ଯେଉଁ ଶ୍ରୀ ଚୈତନ୍ୟ ସନ୍ନ୍ୟାସ ଗ୍ରହଣ କଲାପରେ ଶ୍ରୀ ଜଗନ୍ନାଥଙ୍କ ଆଜ୍ଞାରେ ଏଠାକୁ ଆକୃଷ୍ଟ ହୋଇ ଆସିଥିଲେ, ସେହି ଗୁପ୍ତ ବେଶଧାରୀ ସନ୍ନ୍ୟାସୀ ଗୌଡ଼ୀୟ ଭକ୍ତର ବିଶ୍ୱାସରେ ରତ୍ନ ସିଂହାସନର ଅଧିକାରୀ ଶ୍ରୀ କ୍ଷେତ୍ରର ସର୍ବଶ୍ରେଷ୍ଠ ଦେବତାରେ ରୂପାନ୍ତରିତ ହୋଇଗଲେ । ଶ୍ରୀ ଚୈତନ୍ୟଙ୍କ ଏହି ନବୀନ ରୂପାନ୍ତର ମାଧ୍ୟମରେ ଶ୍ରୀ କ୍ଷେତ୍ରର ମୌଳିକ ଦେବତାଙ୍କ ନିତ୍ୟ ସ୍ଥିତିର ଅଶ୍ରୁତପୂର୍ବ ପରିବର୍ତ୍ତନ ଶ୍ରୀ ଜଗନ୍ନାଥ-ବିଶ୍ୱାସୀ ଏ ଦେଶର ଭକ୍ତ ଓ ସାଧାରଣ ଜନତା ଚକ୍ଷୁରେ ସଙ୍ଗତ ଓ ସ୍ୱାଭାବିକ ବୋଲି ବିବେଚିତ ନ ହେବା ଏକାନ୍ତ ସମ୍ଭବପର । ପୁନଶ୍ଚ, ଗୌଡ଼ୀୟ ଭକ୍ତଙ୍କ ଏପରି ପ୍ରଚାରକୁ ପରକୀୟା-ପ୍ରୀତି ଭିତ୍ତିକ ପ୍ରେମ-ଦର୍ଶନର ପାରମ୍ପରିକ ଜଗନ୍ନାଥ-ବିଶ୍ୱାସ ଉପରେ ଏକ ପ୍ରଚଣ୍ଡ ଆକ୍ରମଣ ବୋଲି ଏ ଦେଶ ଲୋକଙ୍କ ବିଚାରରେ ଯେପରି ସମ୍ଭବ, ଜାତିର ମୌଳିକ ସାଂସ୍କୃତିକ ଜୀବନକୁ ଏହି ଘୋର ସଙ୍କଟରୁ ରକ୍ଷା କରିବା ପାଇଁ ଶ୍ରୀ ଜଗନ୍ନାଥ-ତତ୍ତ୍ୱର, ଯଥାର୍ଥ ବିଶ୍ଳେଷଣ ମାଧ୍ୟମରେ ତାଙ୍କୁ ଶ୍ରୀ କ୍ଷେତ୍ରର ଏକମାତ୍ର ସର୍ବଶ୍ରେଷ୍ଠ ଅର୍ଚ୍ଚା-ଦେବତା ରୂପେ ପ୍ରତିଷ୍ଠିତ କରିବା ସେହିପରି ହୋଇ ପଡ଼ିଥିଲା ସେମାନଙ୍କ ଆଗରେ ଏକ ଗୁରୁତର ଜାତୀୟ କର୍ତ୍ତବ୍ୟ ।

ଦୁଇ ଦେବତାଙ୍କୁ କେନ୍ଦ୍ର କରି ଦୁଇ ଶ୍ରେଣୀର ଭକ୍ତଙ୍କ ବିଶ୍ୱାସ-ରାଜ୍ୟରେ ଯେଉଁ ଦ୍ୱନ୍ଦ୍ୱ ଦେଖା ଦେଇଥିଲା ତାହା ଜଗନ୍ନାଥ-ଚରିତାମୃତ ଗ୍ରନ୍ଥ ରୂପରେ ହିଁ ଆତ୍ମ ପ୍ରକାଶ କରିଛି ମାତ୍ର । ଏହାର ବିଷୟବସ୍ତୁ ଓ ରୂପାୟନ-କୌଶଳ ପ୍ରତି ଦୃଷ୍ଟି ଦେଲେ ସେଥିରେ ଝଙ୍କୃତ ଭକ୍ତର ମାନସିକ ଆଭିମୁଖ୍ୟ, ଆମର ଏହି ଅଭିମତର ଭିତ୍ତି ବୋଲି ଆପଣମାନେ ସହଜରେ ଅନୁଭବ କରିପାରିବେ । ଯେଉଁ ବୈଷ୍ଣବ ବିବାଦ ରୂପକ ଏକ ସଂପ୍ରଦାୟ-ମୂଳକ ଅବାଞ୍ଛନୀୟ ଉପାଦାନକୁ ଭିତ୍ତି କରି ଜଗନ୍ନାଥ ତତ୍ତ୍ୱଭିତ୍ତିକ

ଆଧ୍ୟାତ୍ମିକ ଭାବନାର ସୁରମ୍ୟ ସୌଧ ଦିବାକର ଦାସ ନିର୍ମାଣ କରିଦେଲେ ସେଥିରେ ଭକ୍ତି ଶତ୍ରର ଦାନ୍ତ ସହିତ ନିଜ ପ୍ରାଣର ଦେବତାଙ୍କ ପ୍ରତି ଅବମାନନା ଓ ତତ୍ ସଞ୍ଜାତ କ୍ରୋଧ ହିଁ ଅଧିକ ପରିସ୍ଫୁଟ ହୋଇ ଉଠୁଅଛି । ଜଗନ୍ନାଥ ଚରିତାମୃତ ଗ୍ରନ୍ଥର ବିଷୟ ପରିକଳ୍ପନା ଏକ ଗଭୀରତର ଚିତ୍ତ ସଂଘର୍ଷିଳ ପୃଷ୍ଠଭୂମିରୁ ଉଦ୍‌ଭୂତ ହୋଇ ଜାତିର ଆରାଧ୍ୟ ଦେବତାଙ୍କ ସ୍ୱରୂପ ପ୍ରତିଷ୍ଠାପନ ସଙ୍ଗେ ସଙ୍ଗେ ସମଗ୍ର ଜାତିକୁ ଏକ ପବିତ୍ର ଆଧ୍ୟାତ୍ମିକ ଗଠନ ଧାରାରେ ସେମାନେ ସଚେତନ କରାଇ ଦେଇଛି, ସମଗ୍ର ଓଡ଼ିଆ ଧର୍ମ ସାହିତ୍ୟ ରାଜ୍ୟରେ ଗୋଟିଏ ପୁସ୍ତକର ଏଭଳି ଅନୁରୂପ ଜନ୍ମ ଇତିହାସ ତଥା ଜାତି ଗଠନର ବଳିଷ୍ଠ ଭୂମିକା ଅଛି ବୋଲି ବିଶ୍ୱାସ କରି ହେଉନାହିଁ ।

ପୁରୁଷୋତ୍ତମ କ୍ଷେତ୍ର ତଥା ଶ୍ରୀକ୍ଷେତ୍ରସ୍ଥ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କ ମହିମା ପ୍ରତିଷ୍ଠାପନ ସଙ୍ଗେ ସଙ୍ଗେ ଏହି ଦେବତାଙ୍କର ଅର୍ଚ୍ଚନା ପଦ୍ଧତି ବା ସାଧନ ପ୍ରଣାଳୀ 'ହରେ ରାମ କୃଷ୍ଣ' ମହାମନ୍ତ୍ର ଜପର ଶ୍ରେଷ୍ଠତ୍ୱ ଉପରେ ମଧ୍ୟ ଦିବାକର ଦାସ ପ୍ରାଧାନ୍ୟ ଦେଇଅଛନ୍ତି । କୃଷ୍ଣ ପ୍ରଧାନ 'ହରେ କୃଷ୍ଣ ରାମ' ମହାମନ୍ତ୍ର ପରିବର୍ତ୍ତେ ରାମ ପ୍ରଧାନ 'ହରେ ରାମ କୃଷ୍ଣ' ମହାମନ୍ତ୍ରର ଅନୁସରଣ ଶ୍ରୀ ମନ୍ଦିରରେ ସଂପୂଜିତ ତ୍ରି ମୂର୍ତ୍ତିଙ୍କ ଅବସ୍ଥାନର ବାସ୍ତବ ସତ୍ୟ ଉପରେ ପ୍ରତିଷ୍ଠିତ । ବଳଭଦ୍ର (ଚନ୍ଦ୍ରାବଳୀ); ସୁଭଦ୍ରା (ରାଧା) ଓ ଜଗନ୍ନାଥ (ଶ୍ରୀକୃଷ୍ଣ)—ଏହି ଦେବତାଙ୍କ ଅବସ୍ଥାନର କ୍ରମକୁ ଦୃଷ୍ଟିରେ ରଖି ଦିବାକର ଦାସ ନିଜ ନାମର ଧ୍ୟାନକୁ ଏହିପରି ପ୍ରକାଶ କରିଅଛନ୍ତି ।

ବାମେ ନାୟିକା ଚନ୍ଦ୍ରାବଳୀ । ଗୁରୁ ହାସିନୀ ରୂପଶାଳୀ ॥
ଦକ୍ଷିଣେ ଦକ୍ଷିଣ ନାୟିକା । ଶୁଭଦା ସୁଭଦ୍ରା ରାଧିକା ॥
ମଧ୍ୟେ ଶ୍ୟାମସୁନ୍ଦର କୃଷ୍ଣ । ନୀଳ ଘନ ପରାୟେ ବର୍ଣ୍ଣ ॥
କୃଷ୍ଣ ଯେ ରାଧାଙ୍କ ସଙ୍ଗତେ । ରସ କରୁଛନ୍ତି ନିରତେ ॥
ମନ୍ତ୍ର ଯେ ହରେ ରାମ କୃଷ୍ଣ । ନିତ୍ୟେ ଭାବେ ଲହିଁ ଯେଣ ॥

(ଅଷ୍ଟମ ପରିଚ୍ଛେଦ)

'ହରେ ଟି ବଳଦେବ ଦେଖି,, 'ମାତୃ ସ୍ୱରୂପ ରାମ ଜାଣ । ରାମ ସୁଭଦ୍ରା ସୁଦର୍ଶନ ॥' ଓ 'ଶ୍ରୀକୃଷ୍ଣ ନାମ ଜଗନ୍ନାଥ'—ଶ୍ରୀ ମନ୍ଦିରର ଏହି

ନିମୂର୍ତ୍ତି ସହିତ ମହାମନ୍ତ୍ରର ନି ନାମକୁ କିପରି ସାମିଲ କରାଯାଇ ପାରିଅଛି, ତାହା ଏଠାରେ ଲକ୍ଷ୍ୟ କରାଯାଇ ପାରେ । 'ହରେ ରାମ କୃଷ୍ଣ' ମହାମନ୍ତ୍ରରେ ନିମୂର୍ତ୍ତିର ଧ୍ୟାନ ହେଉଛି ସଖୀ (ଚନ୍ଦ୍ରାବଳୀ) ସେବିତ ନିତ୍ୟ ରାଧା କୃଷ୍ଣଙ୍କ ନିତ୍ୟ ରାସର ସଂଦର୍ଶନ ମାତ୍ର । ଏ ଯୁଗଳ କିଶୋରଙ୍କ ନିତ୍ୟ ରାସରେ ପରକୀୟା ଭାବ ସଂପୂର୍ଣ୍ଣ ସ୍ପଷ୍ଟ । ମହାମନ୍ତ୍ର ଜପ ମାଧ୍ୟମରେ ଶ୍ରୀ ମନ୍ଦିରର ନିମୂର୍ତ୍ତି ଉପାସନା ଓ ସେଇ ମୂର୍ତ୍ତି ଭିତରେ ନିତ୍ୟ ରାଧା କୃଷ୍ଣଙ୍କ ନିତ୍ୟ ରାସ ଲୀଳାର ପରିକଳ୍ପନା—ଏ ସବୁଥିରେ ଓଡ଼ିଶୀ ବୈଷ୍ଣବ ଭାବନାର ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟତା ସ୍ପଷ୍ଟତଃ ସ୍ୱୀକୃତ ।

ଜଗନ୍ନାଥ ଚରିତାମୃତର ବୈଶିଷ୍ଟ୍ୟପୂର୍ଣ୍ଣ ଜନ୍ମ-ଇତିହାସ ପରି ତା'ର ପ୍ରଚାରିତ ଧର୍ମ-ଆତ୍ମମୁଖ୍ୟ ମଧ୍ୟ ତତୋଽଧିକ ବଳିଷ୍ଠ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ଧାମ (ପୁରୁଷୋତ୍ତମ କ୍ଷେତ୍ର), ଦେବତା (ଶ୍ରୀ ଜଗନ୍ନାଥ) ଓ ସାଧନ-ପ୍ରଣାଳୀ ('ହରେ ରାମ କୃଷ୍ଣ' ମହାମନ୍ତ୍ର)—ସାଧାରଣ ବୈଷ୍ଣବ-ଭାବନାର ଏଇ ତିନୋଟି ବଶିଷ୍ଟ ଆଙ୍ଗିକ ଦିବାକର ଦାସଙ୍କ ହସ୍ତରେ ଏକ ମହତ୍ତ୍ୱପୂର୍ଣ୍ଣ ରୂପ ଆହରଣ କରି ଏ ଦେଶର ଜନତାଠାରୁ ସର୍ବାଧିକ ସମ୍ମାନ ଲାଭ କରିବାରେ ସମର୍ଥ ହୋଇଥିଲେ । ଦିବାକର ଦାସଙ୍କ ପରବର୍ତ୍ତୀ ଧର୍ମପ୍ରଚାରକ ଓ ଧର୍ମ ପୁସ୍ତକ ଲେଖକଙ୍କ ଉପରେ ପୂର୍ବୋକ୍ତ ତିନୋଟି ଆଙ୍ଗିକର ପ୍ରଭାବ ଅନୁସନ୍ଧାନ କରିବା କଷ୍ଟକର ନୁହେଁ । ଉଦାହରଣ ସ୍ୱରୂପ ଅଚ୍ୟୁତାନନ୍ଦଙ୍କ 'ପଞ୍ଚସଖା' —ଧାରଣାକୁ ବିଶ୍ଳେଷଣ କଲେ ଏଥିରେ ଏଇ ପ୍ରଭାବ କିପରି ଅତ୍ୟନ୍ତ ଗଭୀର ଓ ବ୍ୟାପକ ତାହା ଆମେ ହୃଦୟଙ୍ଗମ କରିପାରିବୁ ।

ନିତ୍ୟ ଧାମ ଶ୍ରୀ ନୀଳାଚଳସ୍ଥ ସର୍ବଶ୍ରେଷ୍ଠ ଦେବତା ଶ୍ରୀ ଜଗନ୍ନାଥ ହେଉଛନ୍ତି ଅବତାରୀ, ଶ୍ରୀଚୈତନ୍ୟ ତାଙ୍କର ଅବତାର ମାତ୍ର; ପଞ୍ଚସଖା ଜଗନ୍ନାଥଙ୍କ ମହିମା ଗାନପାଇଁ ତାଙ୍କର ଠାରୁ ଆଦେଶ ପାଇଥିଲେ, ଏ ଦେଶରେ ଏଇ ପଞ୍ଚସଖା ହିଁ ମହାମନ୍ତ୍ର ପ୍ରଚାର କରିଥିଲେ ତାହା ହେଉଛି 'ହରେ ରାମ କୃଷ୍ଣ'—ଶୂନ୍ୟ ସଂହିତାରେ ଲିପିବଦ୍ଧ ଏ ସମସ୍ତ ଆଧ୍ୟାତ୍ମିକ ଭାବନା ଜଗନ୍ନାଥ ଚରିତାମୃତର ସ୍ପଷ୍ଟ ଅନୁସରଣ ମାତ୍ର । ଦେଖିବାର କଥା, ଏ ଦେଶର ଜନତା-ଗ୍ରହଣୋପଯୋଗୀ ସମସ୍ତ ଧାର୍ମିକ ଚିନ୍ତା-ଧାରା ହିଁ ଜଗନ୍ନାଥ-କେନ୍ଦ୍ରିକ ।

ଶୂନ୍ୟ-ସଂହିତାର ପଞ୍ଚସଖା-ପରିକଳ୍ପନାରେ ଯେଉଁ ପଞ୍ଚସଖା ଅନ୍ତର୍ଭୁକ୍ତ ସେମାନେ ଯଥାର୍ଥତଃ ସମ୍ମାନିତ ହେଲେ ହେଁ ଅଚ୍ୟୁତାନନ୍ଦଙ୍କ ଏପରି କଳ୍ପିତ ପରିକଳ୍ପନା ଶ୍ରୀ ଜଗନ୍ନାଥ କେନ୍ଦ୍ରିକ ଥିବା ହେତୁ ତାହା ଜନତା-ଚିତ୍ତରେ ବାସ୍ତବ ସତ୍ୟ ରୂପେ ସମ୍ମାନିତ ହୋଇ ଆସୁଅଛି । କିନ୍ତୁ 'ଗୁରୁଭକ୍ତି ଗୀତା'ର ପଞ୍ଚସଖାରେ ଏପରି ପ୍ରଧାନ ବୈଶିଷ୍ଟ୍ୟ ନ ଥିବା ହେତୁ ତାହା ଶ୍ରୀ ଚୈତନ୍ୟ-କେନ୍ଦ୍ରିକ ଭାବନାର ରୂପ ନେଇ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଲୋକଙ୍କ, କ୍ଷୁଦ୍ର ପରିସର ଭିତରେ ସୀମିତ ହୋଇ ରହି ଯାଇଅଛି । ପଞ୍ଚସଖା ପରିକଳ୍ପନାର ପ୍ରଥମ ଓ ଦ୍ୱିତୀୟ ରୂପ ଯଥାକ୍ରମେ ଶୂନ୍ୟସଂହିତା ଓ ଗୁରୁଭକ୍ତି ଗୀତାରେ ରୂପାୟିତ ହୋଇଥିଲେ ହେଁ ତାହାର ବିକାଶ ଭୂମି ଜଗନ୍ନାଥ ଚରିତାମୃତରେ ଉପଲବ୍ଧ ହୋଇଥାଏ । 'ପଞ୍ଚସଖା' ପରିକଳ୍ପନାର ଯଥାର୍ଥ ରୂପ ଅନୁଧ୍ୟାନ ଦିଗରେ ଦିବାକର ଦାସଙ୍କ ପୁସ୍ତକ ଅନୁଶୀଳନ ଏକ ସର୍ବପ୍ରଥମ ଆବଶ୍ୟକତା । ଆମର ବର୍ତ୍ତମାନ ପ୍ରବନ୍ଧ 'ଜଗନ୍ନାଥ ଚରିତାମୃତ: ଏକ ଅଧ୍ୟୟନ' ସେଇ ଆବଶ୍ୟକତାର ପରିପୂରଣ ପାଇଁ କେବଳ ଉଦ୍ଦିଷ୍ଟ ।

(ଅକ୍ଟୋବର, ୧୯୮୦)

ଲେ ଡଃ ନଟବର ସାମନ୍ତରାୟ



# ଅତିବଡ଼ି ଜଗନ୍ନାଥ ଦାସ

"ଜୀବନ ଦର୍ଶନରେ ଭାଗବତ" ପ୍ରବନ୍ଧଟି ୧୮ । ୭ । ୯୦ ତାରିଖ ସୋମବାର ଦିନ 'ପ୍ରଜାତନ୍ତ୍ର'ରେ ପ୍ରକାଶିତ ହୋଇଥିଲା । ଲେଖକ ଅଧ୍ୟାପକ ଡକ୍ଟର ସନାତନ ନାୟକ ଭାଗବତରୁ କେତେଗୁଡ଼ିଏ ସରଳ ସୁନ୍ଦର ପଦାବଳୀ ଉଦ୍ଧାର କରିଛନ୍ତି । ତାହାର ତର୍ଜମା ମଧ୍ୟ କରିଛନ୍ତି । ଏଗୁଡ଼ିକ ପଢ଼ିବାବେଳେ ଆନନ୍ଦ ଲାଗିଲା । ସେ ମୁଗ୍ଧ ହୋଇ ଏ ପ୍ରବନ୍ଧଟି ଲେଖିଛନ୍ତି । ପ୍ରବନ୍ଧରେ ନିର୍ଦ୍ଦେଶ ଦିଆଯାଇଛି, ଏ ନୀତିଗୁଡ଼ିକ ପାଳନ କଲେ ବ୍ୟକ୍ତିଗତ ଓ ସାମାଜିକ ଜୀବନ ସଂଯତ ଏବଂ ଅନାବିଳ ହୋଇ ପାରିବ ।

× × × ×

ପାଞ୍ଚଶହ ବର୍ଷ ତଳେ ୧୪୯୦ ମସିହାରେ ଜଗନ୍ନାଥ ଦାସଙ୍କର ଜନ୍ମ ହୋଇଥିଲା । ପୁରୀଠାରୁ ଚାରି ମାଇଲ ଦୂରରେ କପିଳେଶ୍ୱରପୁର ଶାସନରେ ତାଙ୍କର ଜନ୍ମ । ଗଜପତି କପିଳେନ୍ଦ୍ର ଦେବ ଏ ଶାସନଟି ପ୍ରତିଷ୍ଠା କରିଥିଲେ । ଜଗନ୍ନାଥ ଦାସଙ୍କର ଥିଲା ଅସାଧାରଣ ପାଣ୍ଡିତ୍ୟ । ସେ ବ୍ୟାସଦେବଙ୍କ ପ୍ରଣୀତ ବାରସ୍କନ୍ଧ ଯାକ ସଂସ୍କୃତ ଭାଗବତ ଅଧ୍ୟୟନ କରିଥିଲେ । ତାହାର ଆବୃତ୍ତି କରୁଥିଲେ ଏବଂ ତର୍ଜମା ମଧ୍ୟ କରୁଥିଲେ । ଏଥିରେ ସେ ମନୋନିବେଶ କରିଥିଲେ । ସେ ଆବୃତ୍ତି କଲାବେଳେ ତାଙ୍କର ମାଆ ପାଖରେ ବସି ଶୁଣୁଥିଲେ । ମାତ୍ର ସେ କିଛି ବୁଝିପାରୁ ନଥିଲେ । ତେଣୁ ମାଆଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ଓଡ଼ିଆ ଭାଷାରେ ଭାଗବତ ଲେଖିଲେ । ଅତି ସରଳ ଭାଷାରେ ଏବଂ ମଧୁର ଛନ୍ଦରେ ଭାଗବତ ଲେଖାଗଲା । ଜଗନ୍ନାଥ ଦାସ ଶାସନୀ ବ୍ରାହ୍ମଣ ହୋଇ ଓଡ଼ିଆ

ଭାଷାରେ ଭାଗବତ ଲେଖିବାରୁ କପିଳେଶ୍ୱରପୁରର ବ୍ରାହ୍ମଣମାନେ ତାଙ୍କୁ ଧ୍ୱାପନ କଲେ । କିନ୍ତୁ ଉପାୟ ନପାଇ ଜଗନ୍ନାଥ ଦାସ ଗ୍ରାମ ଛାଡ଼ି ଶ୍ରୀକ୍ଷେତ୍ର ପୁରୀଧାମକୁ ବାହାରି ଗଲେ । ଏ ଧାମରେ ସମସ୍ତଙ୍କ ପାଇଁ ସ୍ଥାନ ରହିଛି ।

ଏ ବକ୍ତୃତାରୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଆତ୍ମଜୀବନୀର ତଥ୍ୟ ସହାୟକ ହେବ । ଏ କଥା ସେ ବିସ୍ତୃତ ଭାବରେ ଉଲ୍ଲେଖ କରିଛନ୍ତି । ସେ ସବୁ ତାଙ୍କର ଛାତ୍ର ଜୀବନର ଅନୁଭୂତି । ସେ ପୁରୀଜିଲ୍ଲା ସ୍କୁଲରେ ପଢ଼ୁଥିବା ବେଳେ ଗୋପବନ୍ଧୁ ବାବୁଙ୍କୁ ପ୍ରଥମେ ଦେଖିଲେ । ସେ ମାଇନର ଶ୍ରେଣୀରେ ଥିଲେ ଏବଂ ଗୋପବନ୍ଧୁ ଥିଲେ ଏଣ୍ଟ୍ରାନ୍ସ ଶ୍ରେଣୀରେ । ସେ ବଡ଼ ନୈଷ୍ଠିକ ଥାନ୍ତି ଏବଂ ପ୍ରତିଦିନ କିଛି ଓଡ଼ିଆ ଭାଗବତ ପଢ଼ନ୍ତି । ଭାଗବତ ପଢ଼ିଲା ବେଳେ ସେ ତନ୍ମୟ ହୋଇଯାନ୍ତି । ଭାଗବତକୁ ଜୀବନର ବ୍ରତ କରିଥାନ୍ତି । ତାଙ୍କ ସାଙ୍ଗରେ ନୀଳକଣ୍ଠଙ୍କର ଘନିଷ୍ଠତା ହେଲା ।

ସତ୍ୟବାଦୀ ନିକଟରେ ଶ୍ରୀରାମଚନ୍ଦ୍ରପୁର ଶାସନ । ସେ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ନୀଳକଣ୍ଠ ଏବଂ ହରିହର । ଅଗ୍ରଜ ହରିହରଙ୍କୁ ସେ ହରିଭାଇନା ବୋଲି ଡାକୁଥିଲେ । ନୀଳକଣ୍ଠ ସ୍କୁଲଛାତ୍ର ଥିଲାବେଳେ ଅଗ୍ରଜ ହରିହର କଟକ କଲେଜର ଛାତ୍ର ଥିଲେ । ସେତେବେଳେ ଗୋପ-ବନ୍ଧୁ ବାବୁ ବି. ଏ. ଶ୍ରେଣୀର ଛାତ୍ର ଥିଲେ । ବି. ଏ. ପୂର୍ବରୁ ହରିହର ଏଫ୍. ଏ. ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ପରବର୍ତ୍ତୀ କାଳରେ ଏଫ୍. ଏ. ହେଲା ଆଇ. ଏ. ଏବଂ ଏବେ ହୋଇଛି, ଉଚ୍ଚ ମାଧ୍ୟମିକ ପାଠ୍ୟକ୍ରମ । ଗୋପବନ୍ଧୁ ବାବୁଙ୍କ ସହିତ ହରି ଭାଇନାଙ୍କର ଖୁବ୍ ପରିଚୟ ଏବଂ ଘନିଷ୍ଠତା ହୋଇଥିଲା । ସେ ଛୁଟିରେ ଆସିଲେ ଦାସ ଆପଣଙ୍କ କଥା ସବୁବେଳେ କହନ୍ତି ।

୧୯୦୨ ମସିହା ଗ୍ରୀଷ୍ମ ଅବକାଶରେ ନୀଳକଣ୍ଠ ହରିଭାଇନାଙ୍କ ସାଙ୍ଗରେ ଗୋପବନ୍ଧୁ ବାବୁଙ୍କୁ ଦେଖା କରିବାକୁ ଗଲେ । ତାଙ୍କ ଗ୍ରାମର ନାମ ସୁଆଣ୍ଡୋ । ଭାର୍ଗବୀ ନଦୀ କୂଳରେ ସତ୍ୟବାଦୀରୁ ପ୍ରାୟ ପାଞ୍ଚମାଇଲ ବାଟ । ସେଠାରେ ତାଙ୍କ ଘରକୁ ଯାଇ ଶୁଣିଲେ, ସେ ଗାଆଁ ମୁଣ୍ଡ

ଠାକୁରାଣୀଙ୍କ ପାଖରେ ସସ୍ତ୍ରୀକରେ ବସିଛନ୍ତି । ଘରକୁ ଆସୁନାହାନ୍ତି । ସାନ୍ଧ୍ୟବନ୍ଦନ ହବନ କରୁଛନ୍ତି । ଜଗନ୍ନାଥ ଦାସଙ୍କ ବାରସ୍କନ୍ଧଯାକ ଓଡ଼ିଆ ଭାଗବତ ପାରାୟଣ କରୁଛନ୍ତି । ସେଦିନ ଶେଷତିଥି । ଗୋବର୍ଦ୍ଧନ ବାବୁ ପ୍ରାତଃସ୍ନାନ ସାରି ମଠାସିଦ୍ଧ ପୋଥି ଆସନରେ ତାଳପତ୍ର ପୋଥିଟି ଥୋଇ ଆବୃତ୍ତି କରୁଛନ୍ତି । ଚୂଡ଼ାଘଷା ବାଳିଭଜା ହୋଇଥିଲା । ସେଥିରୁ କିଛି ବଳିଥିଲା । ତହିଁରୁ ପ୍ରସାଦ ମିଳିଲା । କେବଳ ଦୁଇଘଡ଼ି ଥାଇ ଭାଗବତ ପଢ଼ା ସରିଲା । ଅଁରୁଆ ଅନ୍ନ ବେତାଳ୍ରେ ଏବଂ ଡାଲମା ହାଣ୍ଡିରେ ସେଇ ଓଡ଼ିଆ ଭାଗବତ ପୋଥିକୁ ସମର୍ପଣ କରାଗଲା । ଦାସେ ଆପଣେ କଦଳୀ ପତ୍ର ଖଣ୍ଡିଏ ପକାଇ ଡବଷରେ ବସିଲେ । ମାନକଣ୍ଠ, ହରିଭାଇନା ଏବଂ ଆଉ ଯେଉଁମାନେ ଥିଲେ, ସମସ୍ତେ ଖଣ୍ଡିଏ ଖଣ୍ଡିଏ କଦଳୀପତ୍ର ପକାଇ ବସିଲେ ।

ପଣ୍ଡିତ ମାନକଣ୍ଠ ଲେଖିଛନ୍ତି, "ସେଦିନର ଅନୁଭୂତି ମୋର ନୂଆ । ଆମେ ଶାସନୀ ବ୍ରାହ୍ମଣ । ଗୋବର୍ଦ୍ଧନ ବାବୁ ଶାସନୀ ନଥିଲେ । ସେକାଳର ମତ ଅନୁସାରେ ସେ ଆମଠାରୁ ଶ୍ରେଷ୍ଠ ବ୍ରାହ୍ମଣ । ପୁଣି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତକୁ ଭୋଗ ଦିଆଯାଉଛି । ମୁଁ ପତ୍ର ପକାଇ ବସିଲି; କିନ୍ତୁ ମୋର ମନେଅଛି, ଅଧାଅଧି ପର୍ଯ୍ୟନ୍ତ ମୋ ପେଟକୁ ଅନ୍ନ ଯାଉ ନଥାଏ । ଶାସନମାନଙ୍କରେ ଓଡ଼ିଆ ଭାଗବତ କେହି ପଢ଼ୁ ନଥିଲେ ।"

ସେ ପୁଣି ଲେଖିଛନ୍ତି, ଜଗନ୍ନାଥ ଦାସ ଶାସନୀ ବ୍ରାହ୍ମଣ ଥିଲେ । ଓଡ଼ିଆରେ ଭାଗବତ ଲେଖିଲେ ବୋଲି କପିଳେଶ୍ୱରପୁର ଶାସନଟି ପୁରୀ ଜିଲ୍ଲାର ଶାସନ ଭିତରେ ଅସ୍ପୃଶ୍ୟ ଏବଂ ଅପାଂକ୍ତେୟ ହୋଇଗଲା । ଏବେ ମଧ୍ୟ କୌଣସି ବ୍ରାହ୍ମଣ ଶାସନରେ ଭାଗବତ ଟୁଙ୍ଗି ନାହିଁ ।

ପଣ୍ଡିତ କୃପାସିନ୍ଧୁ ମିଶ୍ର ତାଙ୍କ 'ବାରବାଟି ଦୁର୍ଗ' ପୁସ୍ତକରେ ଓଡ଼ିଆ ଭାଗବତର ଟରଣିତି ବିଷୟ ଉଲ୍ଲେଖ କରିଛନ୍ତି—

ଓଡ଼ିଶାର ରାଜଧାନୀ ଥିଲା କଟକ । ଅନଙ୍ଗଭୀମଦେବ ବାରବାଟି ଦୁର୍ଗ ନିର୍ମାଣ କରିଥିଲେ । ତାଙ୍କ ରାଜତ୍ୱକାଳ ମଧ୍ୟରେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା । କାଞ୍ଚି ରାଜାଙ୍କର ଅଧିକାର ଏବଂ ଆସ୍ଫାଳନ

ବାର୍ଦ୍ଧକ୍ୟରେ ଗଜପତି ପୁରୁଷୋତ୍ତମଦେବ କାଞ୍ଚୀ ଆକ୍ରମଣରେ ଯାଇଥିଲେ । କବିବର ରାଧାନାଥଙ୍କ ଭାଷାରେ—"କାଞ୍ଚୀ ଅଭିଯାନେ ଏ ଦୁର୍ଗ ପ୍ରାଚୀର, ବାଦ୍ୟନାଦେ ଦେଇଥିଲା ପ୍ରତିଗୀର ।" ପୁରୁଷୋତ୍ତମଦେବ କାଞ୍ଚୀରାଜାଙ୍କୁ ପରାସ୍ତ କଲେ । କାଞ୍ଚୀ ରାଜକୈମା ପଦ୍ମାବତୀଙ୍କୁ ବିବାହ କଲେ । ସାଙ୍ଗରେ ଆଣିଥିଲେ ଏକ ଅଭିନବ ଗୋପାଳ ମୂର୍ତ୍ତି । ସେ ରମଣୀୟ ମୂର୍ତ୍ତିକୁ ବାରବାଟି ଦୁର୍ଗରେ ସ୍ଥାନ ଦେଇଥିଲେ । ତାଙ୍କ ଅନ୍ତେ ତାଙ୍କ ପୁତ୍ର ପ୍ରତାପରୁଦ୍ରଦେବ ହେଲେ ଓଡ଼ିଶାର ଗଜପତି ମହାରାଜା ।

ଚୈତନ୍ୟ ବଙ୍ଗଦେଶର ବୈଷ୍ଣବ ଧର୍ମପ୍ରଚାରକ । ସେ ନବଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ପିତା ଜଗନ୍ନାଥ ମିଶ୍ର ଓଡ଼ିଆ ଏବଂ ବାଲେଶ୍ୱର ତାଙ୍କର ଜନ୍ମସ୍ଥାନ । ସେ ନବଦ୍ୱୀପରେ ନ୍ୟାୟଶାସ୍ତ୍ର ଅଧ୍ୟୟନ କରିବାକୁ ଯାଇଥିଲେ । ସେହିଠାରେ ଚୈତନ୍ୟଙ୍କର ଜନ୍ମ । ସେ ବୈଷ୍ଣବ ଧର୍ମ ପ୍ରଚାର କରି ସବୁ ସମ୍ପ୍ରଦାୟର ଲୋକଙ୍କୁ ଶିଷ୍ୟ କଲେ ।

କିଛିବର୍ଷ ପରେ ସେ ଶୁଣିବାକୁ ପାଇଲେ, ବାରବାଟୀ ଦୁର୍ଗରେ ଅଛନ୍ତି ଅନୁପମ ଗୋପାଳ ମୂର୍ତ୍ତି । ସେ ଗଜପତି ପ୍ରତାପରୁଦ୍ରଙ୍କୁ ଖବର ଦେଲେ । ସେତେବେଳକୁ ନବତଳ ପ୍ରାସାଦ ନିର୍ମିତ ହୋଇ ନ ଥିଲା । ଚୌଦ୍ୱାର ଦୁର୍ଗ ସୁନ୍ଦର ହୋଇଥିବାରୁ ଗଜପତି ଚୈତନ୍ୟଙ୍କ ପାଇଁ ସେଠାରେ ରହିବା ଲାଗି ବ୍ୟବସ୍ଥା କଲେ । ସେଠାରୁ ଚୈତନ୍ୟ ନୌକାରେ ମହାନଦୀ ପାର ହୋଇ ଆସିଲେ । ବାରବାଟୀ ଦୁର୍ଗ ବାଲି ପ୍ରାନ୍ତରରେ ପ୍ରତାପରୁଦ୍ରଦେବ ତାଙ୍କର ସମ୍ବର୍ଦ୍ଧନା କଲେ । ଏଠାରୁ ଯାଇ ବାରବାଟୀ ଦୁର୍ଗ ମଧ୍ୟରେ ଗୋପାଳଙ୍କୁ ଦର୍ଶନ କଲେ । ଏହାପରେ କିଛିଦିନ ଚୌଦ୍ୱାର ଏବଂ କଟକ ମଧ୍ୟରେ ନୌକାରେ ଯାତାୟାତ କଲେ । ଏଠାରେ ପ୍ରତାପରୁଦ୍ରଦେବ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ଏହାର ସ୍ମାରକ ସ୍ୱରୂପ ଗଡ଼ଗଡ଼ିଆ ଘାଟରେ ଚୈତନ୍ୟଙ୍କର ପଦଚିହ୍ନ ଅଙ୍କିତ ହୋଇଛି ।

ପ୍ରତାପରୁଦ୍ରଦେବ ଚୈତନ୍ୟଦେବଙ୍କୁ ସାଙ୍ଗରେ ନେଇ ପୁରୁଷୋତ୍ତମ ଶ୍ରୀକ୍ଷେତ୍ରକୁ ଗମନ କଲେ । ପ୍ରଥମେ ଶ୍ରୀମନ୍ଦିରରେ ପ୍ରବେଶ କରି ଦେଖିଲେ, କଳ୍ପବଟ ତଳେ ଜଗନ୍ନାଥ ଦାସ ସରଳ ନବାକ୍ଷରୀ ଛନ୍ଦରେ

ଭାଗବତ ଆବୃତ୍ତି କରୁଛନ୍ତି । ବହୁ ଲୋକ ରୁଣ୍ଡ ହୋଇ ବସିଛନ୍ତି ମୁଗ୍ଧ ହୋଇ ଶୁଣୁଛନ୍ତି । ଚୈତନ୍ୟ ଏହା ଦେଖି ଅଭିଭୂତ ହୋଇଗଲେ ଜଗନ୍ନାଥ ଦାସଙ୍କୁ ଅତିବଡ଼ ଆଖ୍ୟା ପ୍ରଦାନ କଲେ ।

ପ୍ରତାପରୁଦ୍ରଦେବ ଶୁଣିଲେ ଅତିବଡ଼ ଜଗନ୍ନାଥ ଦାସ କପିଳେଶ୍ୱରପୁର ଶାସନରୁ ବାହାର ଆସିଛନ୍ତି । ସେ ପୁରୀ ଧାମରେ ତାଙ୍କୁ ଗୋଟିଏ ମଠ ପ୍ରଦାନ କଲେ । ତାହାର ନାମ ହେଲା ଓଡ଼ିଆ ମଠ । ଏବେ ମଧ୍ୟ ସେଇ ମଠ ଅଛି । ସେଇ ନାମ ମଧ୍ୟ ରହିଛି ।

ଚୈତନ୍ୟଦେବ, ଅତିବଡ଼ ଜଗନ୍ନାଥ ଏବଂ ପ୍ରତାପରୁଦ୍ରଦେବ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟରେ ଅନ୍ତର୍ଭୁକ୍ତ ହେଲେ । ଜଗନ୍ନାଥ ଦାସଙ୍କ ସହିତ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଏବଂ ଅନନ୍ତ ଦାସ ପଞ୍ଚସଖା ରୂପେ ଖ୍ୟାତ ହେଲେ । ଓଡ଼ିଶାରେ ବୈଷ୍ଣବ ଧର୍ମର ଅଭ୍ୟୁଦୟ ହେଲା । ଏ ପଞ୍ଚସଖା ସମସ୍ତେ କବି । ଏମାନେ ଯୋଗ, ଜ୍ଞାନ ଏବଂ ଭକ୍ତି ବିଷୟରେ ଶକ୍ତିଶାଳୀ ସାହିତ୍ୟ ସୃଷ୍ଟି କଲେ । ଏମାନଙ୍କର ମହନୀୟ ଅବଦାନ ଦ୍ୱାରା ଓଡ଼ିଆ ଭାଷା ଏବଂ ସାହିତ୍ୟ ସମୃଦ୍ଧ ହେଲା ।

ଲେ : ଡଃ ସଦାଶିବ ମିଶ୍ର

